# ନିଶିଥେ ନୂପୁର
# ଓ
# ଅନ୍ୟାନ୍ୟ ଗଳ୍ପ

ପାର୍ଲ ଏସ୍. ବକ୍

# ନିଶିଥେ ନିସ୍ତାର

ଓ

## ଅନ୍ୟାନ୍ୟ ଗଳ୍ପ

ମୂଳ ରଚନା

ପାର୍ଲ୍ ଏସ୍. ବକ୍

ଅନୁବାଦ

ଶ୍ରୀ ଚିନ୍ତାମଣି ମିଶ୍ର

# ESCAPE AT MIDNIGHT AND OTHER STORIES

BY

**PEARL S. BUCK**



*Originally published by*
**Dragonfly Books, Hong Kong**

ଓଡ଼ିଆ ସଂସ୍କରଣର ପ୍ରକାଶନ ସମୟ, ଡିସେମ୍ବର, ୧୯୬୪

ମୂଲ୍ୟ—ଚାରିଟଙ୍କା

ପ୍ରକାଶକ :

**କଟକ ଟ୍ରେଡ଼ିଂ କମ୍ପାନୀ**
ବାଲୁବଜାର, କଟକ-୨

ମୁଦ୍ରାକର :
**ନବଜୀବନ ପ୍ରେସ,**
କଟକ-୨

# ସୂଚିପତ୍ର



---

# ନିଶିଥେ ନିସ୍ତାର

"ହଁ, ଆଜି ଗୋଟିଏ କଥା, ବନ୍ଧୁଗଣ" ବାଲବାଲ୍ କହୁଥାନ୍ତି, "ଆମର ଆଶା, ଏଥର ଆପଣମାନେ ଆମ ଏଠାରେ ଏକାଠି ଦୁଇହପ୍ତା ରହିବେ। ଆପଣମାନେ ନିଶ୍ଚିନ୍ତ ରହିବେ—ଏଇ ଉଦ୍ଦେଶ୍ୟରେ ଆମେ ଗୋଟିଏ ବଡ଼ ଜୁଆର ଉପକୂଳକୁ ମାଡ଼ି ଆସିବାର ବ୍ୟବସ୍ଥା କରିଛୁ। ଖୁବ୍ ବଡ଼ ଜୁଆର ମାଡ଼ି ଆସିବ ନାଇଁ, ହୁଏତ ୧୦ ଫୁଟ ଉଚ୍ଚରେ ଆସିପାରେ ବା ୨୦ ଫୁଟ ଉଚ୍ଚରେ; ସେ କଥା ନିର୍ଦ୍ଧାର୍ଯ୍ୟ କରି କହିବ କିଏ ? ସେ ଯାହାହେଉ, ବନ୍ଧୁମାନେ, ଆପଣମାନେ ଆନନ୍ଦ ଉପଭୋଗ କରନ୍ତୁ। ମନଇଚ୍ଛା ଖାଆନ୍ତୁ, ପିଅନ୍ତୁ; ଆମେ ତ ଆପଣମାନଙ୍କ ପାଇଁ ଆମୋଦ ପ୍ରମୋଦର ବ୍ୟବସ୍ଥା କରିଛୁ। ଯା ପରେ ଯେଉଁ ନର୍ତ୍ତକୀ ଷ୍ଟେଜ୍ ଉପରକୁ ଆସିବେ, ତାଙ୍କ ନାମ ଫୁଲାନ। ଏ ଦ୍ୱୀପକୁ ଯେଉଁ ଧର୍ମପ୍ରଚାରକମାନେ ପ୍ରଥମେ ଆସିଥିଲେ, ସେଇମାନଙ୍କ ପରିହସ୍ତ ଉଦ୍ଦେଶ୍ୟରେ ସେ ନୃତ୍ୟ ଦେଖାଇବେ।"

ନୈଶ ଆମୋଦ-ଆଳୟର ରଙ୍ଗ ଦିଆ ନହୋଇଥିବା ଷ୍ଟେଜ୍ ଉପରୁ ସେ ତଳକୁ ଆସିଲେ; ସମବେତ ପର୍ଯ୍ୟଟକ ଦଳ ଖୁବ୍ ହସିଲେ। ବାଲବାଲ୍ ସମସ୍ତଙ୍କର ପରିଚିତ। ଏଇ ତାଙ୍କର ଘର, ଏଇ ଘରେ ଇ ତାଙ୍କର ବେଉସା। ଗୋଟିଏ ବୋଲି ବଖରା, ଉପରେ ଛାଉଣି ଛାତ। ଯାର ଭିତରେ ପର୍ଯ୍ୟଟକମାନେ ନଡ଼ିଆଟେବୁଲ ପାଖେ ବସି ହାଓ୍ୱାଇ ଦ୍ୱୀପବାସୀଙ୍କ ଖାଦ୍ୟ ଓ ତାଙ୍କର କଡ଼ୁଆ ମଦ ଖାନ୍ତି। ଏଠାକୁ ସମସ୍ତେ ହାଓ୍ୱାଇ ଜାମାପୋଷାକ ପିନ୍ଧି ଆସିବାର କଥା। ସମସ୍ତେ କିନ୍ତୁ ଆସନ୍ତି ନାହିଁ। ଯେଉଁ ନାରୀମାନେ ଅତି ଲାଜକୁଳୀ ଲୁହନ୍ତି ସେମାନେ ହାଓ୍ୱାଇ ପୋଷାକ ପିନ୍ଧନ୍ତି; ଯାହାଙ୍କର ବେଶୀ ଲାଜ, ସେମାନେ ପିନ୍ଧନ୍ତି ନାହିଁ। ବର୍ତ୍ତମାନ

ହାଓ୍ୱାଇ ପୋଷାକ ବୋଇଲେ, ସେଇ ପୁରୁଣା ମଦର୍-ହାବାର୍ଡ଼ ମାର୍କା ଛୁଟ କନା, ଯାହାକୁ କି ପ୍ରଥମେ ନିଉ-ଇଂଲଣ୍ଡର ଖ୍ରୀଷ୍ଟଧର୍ମୀ ସ୍ତ୍ରୀ ଲୋକମାନେ ଏଠାରେ ଚଳାଇଥିଲେ, ପୋଲିନେସୀୟ ସ୍ତ୍ରୀ ଲୋକମାନଙ୍କର ଶକ୍‌କଣ ପିଙ୍ଗଳ ଶରୀରକୁ ପୂରା ଆବୃତ କରିବାକୁ । ସେଇ କନା ଆଧୁନିକ ଆମେରିକୀୟ ସ୍ତ୍ରୀ ଲୋକମାନଙ୍କ ଆଖିକୁ ଭାରି ପସନ୍ଦ ହେଉଛି ।

ବାଲିବାଲିଙ୍କ ବକ୍ତୃତା ପରେ ଯେଉଁ ନର୍ତ୍ତକୀ ଷ୍ଟେଜ୍ ଉପରେ ଦେଖାଦେଲେ, ସେ ମଦର୍ ହାବାର୍ଡ଼ କନାର ପୋଷାକ ପିନ୍ଧିବାକୁ ପସନ୍ଦ କରି ନଥାନ୍ତି—ପ୍ରଥମେ ଆସିଥିବା ଧର୍ମପ୍ରଚାରକମାନେ, ଯେଉଁମାନଙ୍କ ଅମଳରେ ଏ କନା ପ୍ରଥମେ ଚଳିଥିଲା ତାଙ୍କ ସୁରୁଚି ଉଦ୍ଦେଶ୍ୟରେ ବି ଏହା ପିନ୍ଧିବା ସେ ଉଚିତ ମନେ କରି ନଥାନ୍ତି । ସେ ପିନ୍ଧିଥାନ୍ତି, ବିଗତ ଶତାବ୍ଦୀର ଶେଷ ଦଶକରେ ଚଳୁ ହୋଇଥିବା ଧଳା କାର୍ପାସ-ଗାଉନ୍ । ଧର୍ମପ୍ରଚାରକମାନଙ୍କ ସ୍ତ୍ରୀମାନେ ଏଭଳି ଗାଉନ୍ ପିନ୍ଧୁଥିଲେ ଶୁଭ ଦିନରେ, ଗିର୍ଜାର ନୈଶ ଭୋଜ-ସଭାରେ । ଗାଉନଟି ହାଓ୍ୱାଇ ନର୍ତ୍ତକୀର କ୍ଷୀଣ ପିଙ୍ଗଳ ଶରୀରଟିକୁ ସଂପୂର୍ଣ୍ଣ ଆବୃତ କରିଥାଏ । ବେକର ଓସାରିଆ କଲରଠାରୁ ବଳାଗଣ୍ଠି ପାଖର ତରଙ୍ଗାୟିତ ଝାଲର ପର୍ଯ୍ୟନ୍ତ ; ଗାଉନ୍‌ର ହାତ ବେକମୂଳରୁ ଲମ୍ୱିଥାଏ ହାତର ମଣିବନ୍ଧ ଯାଏଁ । ମଣିବନ୍ଧକୁ ଚୂଡ଼ିପରି ଏହା ଚିପି ଧରିଥାଏ, ଖୁଆ ଉପରେ ସୁନ୍ଦର କମକୁଟ ହୋଇଥାଏ ।

ଧୀର ମନ୍ଥରଗତିରେ ସେ ଷ୍ଟେଜ୍ ଉପରେ ଆସି ଠିଆ ହେଲେ । କେଶ ଉପର ଆଡ଼କୁ କୁଣ୍ଡିଆ ହୋଇ ଜୁଡ଼ା ବନ୍ଧା ହୋଇଥାଏ ; ସ୍ୱର୍ଣ୍ଣାଭ ମୁଖମଣ୍ଡଳରେ ରଜତ-ଦନ୍ତପନ୍ତି ଫୁଟି ହସୁଥାଏ ; କୃଷ୍ଣ ନୟନଯୁଗଳର କଟକ ଲୋଭନୀୟ ହୋଇଥାଏ । ସେ ତାର-ଜାତୀୟ ୟୁକୁଲେଲି ବାଦ୍ୟଯନ୍ତ୍ରର ମନମତାଣିଆ ସ୍ୱରମାଧୁରୀ ସାଙ୍ଗକୁ ଆରମ୍ଭ ହେଲା ତାଙ୍କର ନୃତ୍ୟ । ପ୍ରଥମେ ସଲଜ୍ଜ ଭାବେ ମୃଦୁତାନରେ ନୃତ୍ୟ ଆରମ୍ଭ କରୁ କରୁ, ସେ ଏଭଳି ହସ୍ତସଞ୍ଚାଳନ ଆରମ୍ଭ କରିଦେଲେ, ଦୁଇହାତର ଅଙ୍ଗୁଳିମାନଙ୍କୁ ନଚାଇ ଏପରି ମୁଦ୍ରାମାନ ଦେଖାଇଲେ ଯେ, ନୃତ୍ୟ ଆରମ୍ଭର ପାଞ୍ଚ ମିନିଟ୍‌ରେ ଯାଇ ଦର୍ଶକମାନେ ନୃତ୍ୟରେ ବ୍ୟଞ୍ଜିତ ସଂକେତ ହୃଦୟଙ୍ଗମ କଲେ—ପ୍ରଥମେ ନୃତ୍ୟର ମର୍ମ ବୁଝି ନ ପାରି ମୃଦୁହାସ୍ୟ କରୁ କରୁ ସେମାନେ ହର୍ଷୋତ୍ଫୁଲ୍ଲ ହୋଇ ଉଚ୍ଚହାସ୍ୟ କରିବାକୁ ଲାଗିଲେ । ଶୁଭ ଓ ସୁଭଦ୍ର

ପରଛଦର ଅନ୍ତରାଳରେ ନର୍ତ୍ତକୀର ସବୁ ପାଟଳ ଶରୀରଟି ନାରୀର ସ୍ୱାଭାବିକ ଆକର୍ଷଣର ସ୍ପଷ୍ଟ ସଙ୍କେତ ଦେଉଥାଏ । ତା'ର ମନରେ କାମ ଲାଳସା ଥିବାର ଫୁଟି ଦିଶୁଥାଏ । ତରଙ୍ଗାୟିତ ବାହୁଯୁଗଳର ଆବେଦନ, ଅଙ୍ଗୁଳର ସଙ୍କେତ, ସୁନ୍ଦର ବଦନର ମୃଦୁହାସ୍ୟ, ସରଳ ଜରଦାର ଗାଉନ୍‌ର ଶେଷାଂଶରୁ ଫୁଟି ଦିଶୁଥିବା କ୍ଷୁଦ୍ର ପଦଦ୍ୱୟର ସ୍ଖଳନ—ଏହାର ସୂକ୍ଷ୍ମ ଇଙ୍ଗିତରେ, ପବିତ୍ରତାର ବାହ୍ୟପ୍ରକାଶ ଭିତରେ ଲମ୍ପଟତା ଭଗବାନ୍‌ଙ୍କୁ ଭୁଲ୍ଲ କରି ଉଙ୍କିମାରୁଥାଏ । ଆନନ୍ଦରେ ବିଭୋର ହୋଇ ପର୍ଯ୍ୟଟକମାନେ ନୃତ୍ୟର ତାଳରେ ନିଜ ଅଙ୍ଗକୁ ଦୋହଲାଉଥାନ୍ତି, ସେମାନଙ୍କ ଜୟ ଜୟକାର ନାଦରେ ସତେ ଯେପରି ଘୃତ କୁଡ଼େଇ ହୋଇ ପଡ଼ୁଥାଏ । ଶେଷରେ ନର୍ତ୍ତକୀ ଥରକୁ ଥର ପ୍ରଣତି ଜଣାଇ ଜଣାଇ ଷ୍ଟେଜ୍‌ରୁ ଅନ୍ତର୍ହିତ ହେଲେ ଓ ବାଲିବାଲି ମୃଦୁ ହାସ୍ୟ କରି କରି ଅଳସଗତିରେ ଷ୍ଟେଜ୍ ଉପରକୁ ଚଢ଼ିଲେ ।

କହିଲେ, "ସୁଖର କଥା, ମୋର ଏ ଟିକି ପାଦଗୀ ପିଲାଟି ଆପଣମାନଙ୍କ ମନକୁ ଘେନିଛି । ସମୁଦ୍ରର ବିକ୍ଷୋଭିତ ତରଙ୍ଗ ଆସି ନିମ୍ନତର ଦ୍ୱୀପମାନଙ୍କୁ ବୁଡ଼ାଇବା ପୂର୍ବରୁ ହୁଏତ ଆଜି ଗୋଟିଏ ନୃତ୍ୟ ସରିଯାଇଥିବ । ଜୁଆର ଠିକ୍ ପୂର୍ବ ନିର୍ଘଣ୍ଟ ଅନୁସାରେ ଭୂଭାଗ ଆଡ଼କୁ ମାଡ଼ି ଆସୁଛି ।"

ଏହା ଶୁଣି ସମସ୍ତଙ୍କର ହସ ସାଙ୍ଗେ ସାଙ୍ଗେ ଶୁଖିଗଲା । ସାନଫାନ୍‌ସିସ୍‌କୋର ବ୍ୟାଙ୍କ୍‌ମାଲିକ ଜିମ୍ ମ୍ୟାକମ୍ ତାଙ୍କ ପାଖକୁ ବସିଥିବା ମହିଳାଙ୍କ ଆଡ଼କୁ ଦୃଷ୍ଟି ଫେରାଇଲେ । ମହିଳାଙ୍କର ପାତଳା ଦେହ,ପ୍ରଥମ ଯୌବନ ଅତିକ୍ରାନ୍ତ ହୋଇ ଯାଇଥାଏ ; ତାଙ୍କ ବୟସ ଛତିଶ, ସଇତିଶ ହେବ ବୋଲି ମ୍ୟାକମ୍ ଅନୁମାନ କରୁଥାନ୍ତି । ମାତ୍ର ଉଣିଶ ଘଣ୍ଟା ପୂର୍ବେ ତାଙ୍କର ସ୍ତ୍ରୀଙ୍କ ସହିତ ପ୍ରଥମ ସାକ୍ଷାତ, ଯେତେବେଳେ ହଂକଂଠାରେ ଜେଟ୍‌ବିମାନର ମହିଳାଙ୍କ ପାଖ ସିଟ୍‌ରେ ସେ ଆସି ତାଙ୍କ ପାଖେ ବସିଲେ । ଖବରକାଗଜରେ ବାହାରିଥିବା ଫଟରୁ ସେ ତାଙ୍କୁ ଚିହ୍ନିଲେ, ବିଖ୍ୟାତ ବେହେଲା-ବାଦକ କ୍ଲିଟନ ହର୍ଷ୍ଟିଙ୍ଗ୍‌ଙ୍କ ପତ୍ନୀ ବୋଲି । ସେ ଓ ତାଙ୍କ ସ୍ୱାମୀ (ତାଙ୍କଠାରୁ ବୟସରେ ଖୁବ୍ ବଡ଼) ପୃଥିବୀ ପର୍ଯ୍ୟଟନରେ ବାହାରିଥିଲେ । ହଂକଂରେ ସଙ୍ଗୀତ କରିବା ପରେ ତାଙ୍କର ହଠାତ୍ ମୃତ୍ୟୁ ହୋଇଗଲା ।

ଜେଟ୍-ବିମାନ ଭୂମି ଛୁଡ଼ିବାର ଠିକ୍ ପୂର୍ବରୁ ମହିଳାଟି ବିମାନ ଭିତରେ ପ୍ରବେଶ କରିବାର ଜିମ୍ ମ୍ୟାକମ୍ ଲକ୍ଷ୍ୟ କରିଥିଲେ ; ସେତେ-ବେଳେ ତାଙ୍କୁ ଅଭିବାଦନ କରିବା ଅଭଦ୍ରତା ହେବ ବୋଲି ବିଚାରି ସେ ବାହାର ଝରକା ଆଡ଼କୁ ମୁହଁ ବୁଲାଇ ଦେଇଥିଲେ । ଅଧଘଣ୍ଟାକ ପରେ ଯେତେବେଳେ ବିମାନ ପ୍ରଶାନ୍ତ ମହାସାଗର ଉପରେ ୩୦ ହଜାର ଫୁଟ ଉଚ୍ଚକୁ ଉଠିଗଲା, ସେ ମହିଳାଙ୍କ ଆଡ଼କୁ ଦୃଷ୍ଟି ଫେରାଇଲେ । ମହିଳାଟି ସିଟରେ ଆଉଜି ପଡ଼ିଥାନ୍ତି, ତାଙ୍କ ପାଣ୍ଡୁର କପୋଳକୁ ଦୀର୍ଘ ଭ୍ରୂଲତାର କୃଷ୍ଣକେଶ ଚୁମ୍ବି ରହିଥାଏ ।

ମ୍ୟାକମ୍ ପଚାରିଲେ, "ଶ୍ରୀମତୀ ହେଷ୍ଟିଙ୍ଗ୍, ଆପଣଙ୍କ ଉପରୁ ଆଲୋକର ତେଜ ଅପସାରି ଦେବାକୁ ଘୋଡ଼ଣିକୁ ଟିକିଏ ମୋଡ଼ି ଦେବି କି ?"

ସେ ବିସ୍ମିତ ହୋଇ ଆଖି ଖୋଲି ଦେଲେ ଓ ସାମାନ୍ୟ ବିରକ୍ତି ପ୍ରକାଶ କଲାଭଳି ସ୍ୱରରେ କହିଲେ, "ନା, ପ୍ରୟୋଜନ ନାହିଁ ; ଧନ୍ୟବାଦ ।" ଏତିକି କହି ସେ ପୁଣି ଆଖି ମୁଦିଲେ ।

ତା' ପରେ ବହୁ ସମୟ ବିତିଗଲା; ପଦେ ବି କଥା ସେ ବା ସେ କହିନାହାନ୍ତି । ମିସେସ୍ ହେଷ୍ଟିଙ୍ଗ୍ ହଲଚଲ ନହୋଇ ତାଙ୍କ ଚଉକିରେ ପଡ଼ିଥାନ୍ତି । ମଝିରେ ମଝିରେ ମିଷ୍ଟର୍ ମ୍ୟାକମ୍ କଡ଼େଇ କରି ତାଙ୍କ ଆଡ଼କୁ ଚାହିଁଛନ୍ତି । ବାହାରକୁ ଶାନ୍ତ ଜଣାପଡ଼ୁଥିଲେହେଁ, ମନେ ହେଉଥାଏ, କେହି ତାଙ୍କୁ କୌଣସି ପ୍ରକାରେ ବ୍ୟସ୍ତ ନକରନ୍ତୁ ଏଥିପାଇଁ ତାଙ୍କ ମନରେ ଉତ୍କଣ୍ଠା ଥାଏ । ମ୍ୟାକମ୍ ତିନି ବର୍ଷ ପୂର୍ବେ ନିଜ ପତ୍ନୀଙ୍କୁ ହରାଇଥିଲେ । ତାଙ୍କୁ ଜଣା, ପ୍ରଥମ କେତେଦିନ ଲୋକଙ୍କ ଭିତରେ ଚଳିବା-ବେଳେ ବହୁ ସାଧ୍ୟ ସାଧନା କରି ବାହାରକୁ ମନର ନିଶ୍ଚିନ୍ତ ଭାବ ଦେଖାଇବାକୁ ହୁଏ । ମିସେସ୍ ହେଷ୍ଟିଂଙ୍କର ଗୋଡ଼ ଥୋଇବାକୁ ସୁବିଧା ହେବ ବୋଲି ପାଓଦାନିଟିକୁ ସଜାଡ଼ି ଦେଲାବେଳେ ବି ସେ ପଦେ କିଛି କହିନଥିଲେ । ମିସେସ୍ ହେଷ୍ଟିଂ ତୁମା ତୁମା ତାଙ୍କୁ ଧନ୍ୟବାଦ ଦେବାରେ ବି ସେ କିଛି ଉତ୍ତର ନଦେଇ ନିଜ ହାତର ଖବରକାଗଜ ଆଡ଼କୁ ମୁହଁ ଫେରାଇଲେ ।

ଗତ ହେଲା; ଦୁହେଁ ଅପରିଚିତ ହୋଇଥିଲେହେଁ ଅତି-ପରିଚିତ ଭଳି ଦୁହିଁଙ୍କୁ ପାଖକୁ ପାଖ ଲାଗି ଶୋଇବାକୁ ପଡ଼ିଲା । ଉଭୟଙ୍କ ଉପରେ ଏ ବିଡ଼ମ୍ବନାର ପ୍ରଭାବ ପଡ଼ୁଥାଏ । ମିସେସ୍ ହଷ୍ଟିଂଙ୍କର ମଝିରେ ମଝିରେ ନିଦ ଭାଙ୍ଗିଯାଉଥାଏ; ସହଯାତ୍ରୀଙ୍କର କେଜାଣି ଅସୁବିଧା ହେଉଥିବ ଏଇ ଆଶଂକାରେ ସେ ଯଥାସମ୍ଭବ ଜଗିଜାଗି ହୋଇ ରହୁଥାନ୍ତି । ପ୍ରତ୍ୟୁଷରେ ମିଷ୍ଟର୍ ମ୍ୟାକମ୍‌ଙ୍କୁ ଜଣାଗଲା, ସତେ ଯେପରି ସେ ନିଃଶବ୍ଦରେ କୋହରି ହୋଇ କାନ୍ଦୁଛନ୍ତି । କିଛି କହିବେ କି ନାହିଁ ସେ ଭାବିହେଲେ । କିନ୍ତୁ ନିଜର ପୂର୍ବ ଅନୁଭୂତିରେ ତାଙ୍କର ମାନସିକ ଅବସ୍ଥା ଠଉରାଇ ତୁନି ହୋଇ ରହିବା ଉଚିତ ବୋଲି ସିଦ୍ଧାନ୍ତ କଲେ । ସକାଳ ଜଳ-ଖିଆ ବେଳେ ମିସେସ୍ ହଷ୍ଟିଂ ତାଙ୍କ ଆଡ଼କୁ ଚାହିଁ ଅତି ମୃଦୁଭାବରେ ଟିକିଏ ହସିଲେ ।

ସେଇଥିରୁ ସାହାସ ପାଇ, ସେ ପଚାରିଲେ, "ଆପଣ କ'ଣ ହନଲୁଲୁଠାରେ ଓହ୍ଲାଇବେ ?"

ମିସେସ୍ ହଷ୍ଟିଂ ହଁ ବୋଲି ମୁଣ୍ଡ ଟୁଙ୍ଗାରି କହିଲେ, "ଦିନେ କଟେଇବାକୁ ଓହ୍ଲାଇବି । ଘରକୁ ଯିବାକୁ ତରତର ହେବାର କୌଣସି କାରଣ ତ ନାହିଁ !"

ମ୍ୟାକମ୍ ଉତ୍ତର ଦେଲେ, "ସେ କଥା ସତ । ମୋର ମଧ୍ୟ ଘରକୁ ଫେରିବାର ଆବଶ୍ୟକ ନାହିଁ । ଆପଣ କେଉଁ ହୋଟେଲ୍‌ରେ ରହିବେ ?"

ମିସେସ୍ ହଷ୍ଟିଂ ଗୋଟିଏ ହୋଟେଲର ନାମ କହିଲେ । ମିଷ୍ଟର୍ ମ୍ୟାକମ୍ ଅଗରୁ ଆଜି ଗୋଟିଏ ହୋଟେଲ୍‌ରେ ରହିବାକୁ ସିଟ୍ ରିଜର୍ଭ କରିଥିଲେ । ତା'କୁ ବଦଳାଇବାକୁ ମନେ ମନେ ସ୍ଥିର କଲେ କିନ୍ତୁ କିଛି କହିଲେ ନାହିଁ । ଭାବିଲେ, ବଳେ ହୋଟେଲର ଦାଣ୍ଡଘରେ ଦେଖା ହେବ, ନହେଲେ ଏ ସମୁଦ୍ରକୂଳରେ । ଆଉ କିଛି କଥାବାର୍ତ୍ତା ହେଲା ନାହିଁ । ସକାଳେ ମିସେସ ହଷ୍ଟିଂ କିଛି ନକହି ସିଧା, ହୋଟେଲରେ ତାଙ୍କୁ ମିଳିଥିବା କୋଠରୀରେ ପଶିଲେ । ମିଷ୍ଟର୍ ମ୍ୟାକମ୍ ନିଜ କୋଠରୀରେ ପୋଷାକ ପାଲଟିଲେ ଓ ଏକାକୀ ମଧ୍ୟାହ୍ନ ଭୋଜନ ଖାଇସାରି, ତାଙ୍କ ସଙ୍ଗେ ଦେଖା ହେବା ଆଶାରେ କିଛି ସମୟ ଲିଫଟ୍ ପାଖରେ ପଦଚାରଣା କଲେ । କିନ୍ତୁ ଦେଖା ମିଳିଲା ନାହିଁ । ଅବଶେଷରେ

ସେ ସ୍ଥିର କଲେ, ଏକୁଟିଆରେ ଯାଇ ସମୁଦ୍ରରେ ଲହଡ ଭାଙ୍ଗିବେ । ପ୍ରାୟ ଦୁଇଘଣ୍ଟା ସମୁଦ୍ରରେ ପହଁରି ଶେଷରେ ଯେତେବେଳେ ସେ ଶ୍ରାନ୍ତଃଶ୍ୱାସୀ ହୋଇ କୂଳକୁ ଫେରି ଆସିବାକୁ କୂଳ ଆଡ଼କୁ ପହଁରିଲେ, ସେତେବେଳେ ତାଙ୍କର ହଠାତ୍ ନଜର ପଡ଼ିଲା, ତାଙ୍କଠାରୁ ମୋଟେ ପାଞ୍ଚଗଜ ଦୂରରେ ମୁହଁକୁ ଉପରକୁ କରି ମିସେସ୍ ହଷ୍ଟିଂ ଚିତ୍‌ପହଁରେ ଭାସୁଛନ୍ତି ; ଆଖି ଦୁଇଟି ବୁଜିଥାନ୍ତି ।

ପାଣି ଉପରେ ଧଳା କଇଁଟିଏ ପରି ସେ ଦିଶୁଥାନ୍ତି । ମ୍ୟାକମ୍ ତାଙ୍କ ହାତକୁ ଆସ୍ତେ ଛୁଇଁ ଦେଲେ ସେ ଆଖି ମେଲାଇ ତାଙ୍କ ଆଡ଼କୁ ଚାହିଁଲେ ।

ମ୍ୟାକମ୍ କହିଲେ, "ଆପଣ ଏଠି ?"

ଉତ୍ତର ମିଳିଲା, "ଆପଣ ବି ।"

ମ୍ୟାକମ୍ କହିଲେ, "ଦିନ ତମାମ ମୁଁ ଆପଣଙ୍କୁ ଅନ୍ୱେଷା କରୁଛି ।"

ଏକଥାର ଉତ୍ତର ମିଳିଲା ନାହିଁ । ଦୁହେଁ ଲଗାଲଗି ହୋଇ ପହଁରି ପହଁରି କୂଳରେ ଲାଗିଲେ ।

ଉଷ୍ଣ ସମୁଦ୍ରରୁ ଦୁହେଁ ବାହାରିବାରୁ ମ୍ୟାକମ୍ ପଚାରିଲେ, "ମୋ ସଙ୍ଗେ ସାଂଧ୍ୟ ଭୋଜନ କରିବେ ?"

ସେ ଟିକିଏ ଇତସ୍ତତଃ ହୋଇ ସମ୍ମତି ଜଣାଇଲେ ।

ମ୍ୟାକମ୍ ପଚାରିଲେ, "ସାତଟାରେ ?"

ସେ ପୁଣି ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ।

ମ୍ୟାକମ୍ କହିଲେ, "ସମୁଦ୍ର ପଚାଡ଼ିରେ ଥିବା ବାଲ୍‌ବାଲର ଭୋଜନାଳୟକୁ ଯିବା ।"

ଏଇପରି ଏ ଦୁହେଁ ନାତିଶୀତୋଷ୍ଣ ସୁନେଲି ସନ୍ଧ୍ୟାରେ ଏଠାରେ ଆସି ପହଞ୍ଚିଲେ, ହାଓ୍ୱାଇ ଖାଦ୍ୟ ଖାଇବାକୁ । ମିସେସ୍ ହଷ୍ଟିଂଙ୍କର ଖାଇବାରେ ସେପରି ମନ ନଥାଏ, କଥାବାର୍ତ୍ତା କରିବାକୁ ଇଚ୍ଛା ବି ନଥାଏ । ତୂଷ୍ଣୀ ହୋଇ ରହିବାର ପ୍ରୟୋଜନ ମ୍ୟାକମ୍ ଭଲଭାବେ ଉପଲବ୍ଧି କରିଥାନ୍ତି । ତାଙ୍କ ସ୍ତ୍ରୀ ବ୍ଲାନ୍‌ସୀ ମରିବାର ପରେ କେତେମାସ ପର୍ଯ୍ୟନ୍ତ ତାଙ୍କ ନିଜର କାହା ସଙ୍ଗେ କଥାବାର୍ତ୍ତା ହେବାକୁ ମନ ହୋଇନଥିଲା ।

ବାଲବାଲ ଘୋଷଣା କଲେ, "ସମୁଦ୍ର ଜୁଆର ଆଉ ଘଣ୍ଟାକ ଭିତରେ ମାଡ଼ି ଆସିବ ।"

ଜନ୍ ମ୍ୟାକମ୍ ଏକଥା ଶୁଣି ଚମତ୍କାର ଅବସ୍ଥାର ଗୁରୁତ୍ୱ ଉପଲବ୍ଧି କଲେ ; ପଚାରିଲେ, "କଣ ! ଏ ଯେଉଁ ଜୁଆର କଥା କହୁଛ, ତାହା କ'ଣ କଥାର କଥା—ତୁମ ରଙ୍ଗରହସ୍ୟର ଅଂଶ, ନା ସତେ ସମୁଦ୍ର ମାଡ଼ି ଆସୁଛି ?"

ହସି ହସି ବାଲବାଲ କହିଲେ, "ଏହା ବାସ୍ତବ କଥା; ତଥାପି ଆମ ରଙ୍ଗ ରହସ୍ୟର ବି ଇଏ ଗୋଟିଏ ଅଙ୍ଗ । ବନ୍ଧୁବର ! ସମୁଦ୍ରରେ, ବେଶୀ ଦୂରରେ ନୁହେଁ, କେଉଁଠି ଠାଏ ଭୂମିକମ୍ପ ହୋଇଛି, ଭୂମି ଫାଟି ଯାଇଛି, ପୃଥିବୀ ଭିତରର ନିଆଁକୁ ଲିଭାଇବା ପାଇଁ ସେଇ ଫାଟରେ ସମୁଦ୍ର ପାଣି ପଶିଯାଉଛି । ସେଇ ନିଆଁ ଓ ପାଣିରୁ ବାଷ୍ପ ମେଲିକୁ ବାହାରି ପଡ଼ୁଛି । ଏମିତି ହେଲେ ସମୁଦ୍ର ଭିତର ବିକ୍ଷୁବ୍ଧ ହୋଇଯାଏ ; ସେଇ ବିକ୍ଷୋଭ ଯୋଗୁଁ ସମୁଦ୍ର ଉପକୂଳକୁ ଧସେଇ ପଶେ ।"

ମ୍ୟାକମ୍ ନିଜ ସଙ୍ଗୀମାନଙ୍କ ଆଡ଼କୁ ଚାହିଁ କହିଲେ, "ଏ ଲୋକଟା ସୁଧୁ ପାଗଳ । ସମୁଦ୍ର ମାଡ଼ି ଆସୁଛି ଶୁଣିଲେ କେହି ଏଭଳି ହସନ୍ତି ନାହିଁ । ଆମର ଚାଲ ନିଜ ଜିନିଷ ପତ୍ର ଧରି ଏଠାରୁ ବାହାରିଯିବା ।"

ସେ ଶ୍ରୀମତୀ ହର୍ଷ୍ଟିଂଙ୍କ ହାତ ଧରି ତାଙ୍କୁ ଭିଡ଼ିଭିଡ଼ି ଲୋକ ଗହଳ ଭିତରୁ ରାସ୍ତାକୁ ବାହାରି ପଡ଼ିଲେ ଓ ତରତର ହୋଇ ଯାଇ ଯେଉଁ ହୋଟେଲରେ ରହିଥିଲେ ସେଠାରେ ପଶିଲେ ।

ଦ୍ୱାର ମୁହଁରେ ସେ ହର୍ଷ୍ଟିଂଙ୍କୁ କହିଲେ, "ହେଇଟି, ପନ୍ଦର ମିନିଟ୍ ଭିତରେ ଆସି ଏଇ ଦାଣ୍ଡଘରେ ମୋ ସଙ୍ଗେ ଦେଖାକର । ସେତେବେଳକୁ ମୁଁ ଗୋଟାଏ ଟ୍ୟାକ୍‌ସି ଡକାଇଥିବି । ପନ୍ଦର ମିନିଟ୍‌ରେ ତୁମ ଜିନିଷ ପତ୍ର ଗୁଛେଇ ଆସି ପାରିବ ତ ?"

ସେ "ହଁ" ବୋଲି ଉତ୍ତର ଦେଲେ । ତାଙ୍କର ଗାଢ଼ ନୀଳ ଚକ୍ଷୁ ଦୁଇଟି ଅଚଞ୍ଚଳ ଥାଏ; ନୈଶ ସମୀରଣ ତାଙ୍କର କୁଞ୍ଚିତ କବରୀକୁ ଆଲୁଳାୟିତ କରି ତାଙ୍କର ପାଣ୍ଡୁର ମୁହଁ ଉପରକୁ ବାଞ୍ଛି ଦେଉଥାଏ । ସେ ମ୍ୟାକମ୍‌ଙ୍କୁ ଦାଣ୍ଡଘରେ ଛାଡ଼ି ଆପଣା କୋଠରୀକୁ ଗଲେ । ମ୍ୟାକମ୍ ହୋଟେଲର ବାହାର ଅଫିସ୍‌ରେ ଟ୍ୟାକ୍‌ସି ମଗାଇବାକୁ ଆଦେଶ ଦେଲେ ।

ଅଫିସ୍‌ର ଡ୍ରାଇଆନ୍ କିରାଣୀ କହିଲା, "ଏତେବେଳେ ଟ୍ୟାକ୍ସି ମିଳିବ ବୋଲି ଜବାବ୍ ଦେଇ ପାରିବ ନାହିଁ।" ଏତିକି କହି ସେ ତା ଡେକ୍ସ୍‌ର କାଗଜ ପତ୍ର ଆଡ଼ୁଆ ଆଡ଼େଇ କରୁ କରୁ ଘର ଆଡ଼କୁ ଉତ୍-କଣ୍ଠାରେ ଚାହୁଁଥାଏ।

ଏତିକିବେଳେ ରେଡ଼ିଓରୁ ଘୋଷଣା ଶୁଭିଲା—"ସମୁଦ୍ରର ଭୀମ ତରଙ୍ଗ କ୍ଷିପ୍ର ଗତିରେ ଡ୍ରାଇ ଆଡ଼କୁ ମାଡ଼ି ଆସୁଛି। ଆଶଂକା ହେଉଛି, ଏ ପ୍ରବଳ ଜୋରରେ—ଉପଦ୍ୱୀପକୁ ଆଘାତ କରିବ।"

ମ୍ୟାକମ୍ କଠୋର ସ୍ୱରରେ କିରାଣୀକୁ କହିଲେ, "ମୋ ପାଇଁ ଗୋଟାଏ ଟ୍ୟାକ୍ସି ଶୀଘ୍ର ମଗାଇ ଦିଅ ନା;" କହିବା ସାଙ୍ଗେ ସାଙ୍ଗେ ମୁଠାଏ ନୋଟ୍ ସେ ତା' ଆଗରେ ଥୋଇ ଦେଲେ।

କିରାଣୀ ଚାପା ଗଳାରେ ଉତ୍ତର ଦେଲା, "ହଜୁ, ଆଜ୍ଞା, ଦଶ ମିନିଟ୍ ଭିତରେ ଯୋଗାଡ଼ କରି ଦେଉଛି। ଆପଣଙ୍କୁ ମିଳିବା ପରେ ଆଜି ଆଉ ଟ୍ୟାକ୍ସି ମିଳିବ ନାହିଁ, ଆଜ୍ଞା!"

ଦଶ ମିନିଟ୍ ଭିତରେ ମିଷ୍ଟର୍ ମ୍ୟାକମ ନିଜ କୋଠରୀରୁ ନିଜ ଜିନିଷ ପତ୍ର ସଂଗ୍ରହ କରି ଦାଣ୍ଡଘରେ ମିସେସ୍ ହଷ୍ଟିଂଙ୍କୁ ଅପେକ୍ଷା କରୁଥାନ୍ତି। ମୋଟିଆ ଓ ଚକରଟୋକାମାନେ ଏକାବେଳକେ ଘରଆଡ଼କୁ ଚାଲିଗଲା ପରି ବ୍ୟସ୍ତ-ସମସ୍ତ ହୋଇ ଆତଙ୍କିତ ପ୍ରବାସୀମାନଙ୍କୁ ହୋଟେଲର ଉପର ମହଲମାନଙ୍କୁ ନେଉଥାନ୍ତି। ପାଞ୍ଚ ମିନିଟ୍ ଭିତରେ ମିସେସ ହଷ୍ଟିଂ ଆସି ମିଷ୍ଟର୍ ମ୍ୟାକମ୍‌ଙ୍କ ପାଖରେ ହାଜର ହେଲେ। ସେ ସୁନ୍ଦର କଳା ପୋଷାକଟିଏ ପିନ୍ଧିଥାନ୍ତି, ମୁଣ୍ଡରେ ଥାଏ ଗୋଟିଏ ଟ୍ରେଟିଆ ଟୋପି; ଚାକର ଟୋକାଟିଏ ତାଙ୍କ ଜିନିଷପତ୍ର ଧରି ପଛରେ ଠିଆହୋଇଥାଏ। ମ୍ୟାକମ୍ ତରତରରେ ଶ୍ରୀମତୀଙ୍କ ହାତ ଧରି ଦାଣ୍ଡ ଦୁଆରେ ଅପେକ୍ଷା କରୁଥିବା ଟ୍ୟାକ୍ସି ପାଖକୁ ଭିଡ଼ି ନେଲାପରି ନେଇଗଲେ।

ଦୁହେଁ ଟ୍ୟାକ୍ସିର ପଛ ସିଟ୍‌ରେ ବସିଲାବେଳକୁ, ଡ୍ରାଇଭର୍ ପଛକୁ ମୁହଁ ବୁଲାଇ କହିଲା, "ନୂଆଁଣିଆ ଜାଗାର ସବୁ ରାସ୍ତାରେ କାଠଗଣ୍ଡି ପଡ଼ିଗଲାଣି। ଆମକୁ ଓପର ମୁଣ୍ଡ ରାସ୍ତା ଧରିବାକୁ ହେବ।"

ମ୍ୟାକମ୍ ଉତ୍ତର ଦେଲେ, "ଆଚ୍ଛା ହଜୁ, ଯେଉଁ ରାସ୍ତା ଖୋଲା ସେଇଥିରେ ନିଅ। କିନ୍ତୁ ଉଡ଼ାଜାହାଜ ପଡ଼ିଆ ଖବର କ'ଣ? ସେ ତ ନୂଆଣିଆ ଜାଗା। ତା'ର ପରି ଦୁଇ ପାଖରେ ସମୁଦ୍ର?"

ଡ୍ରାଇଭର୍ ଗାଢ଼ ଶବ୍ଦ ଉପରେ ଚକ୍କାର କରି ଜବାବ୍ ଦେଲା, "ଯଦି ସେଠାରେ ବିପଦର ସମ୍ଭାବନା, ତେବେ ପୁଲିସ୍ ବଳେ ଭାଗିଦ୍ କରିବେ ।"

ଅନ୍ଧାର ଭିତରେ ଗାଡ଼ି ଜୋରସେ ଚାଲୁଥାଏ । ଚାରିଆଡ଼ ନିସ୍ତବ୍ଧ, ପବନ ନଥାଏ । ଗଳିଗୁଡ଼ିକ ସବୁ ଜନଶୂନ୍ୟ । ଦୁଇ ପାଖରେ ଦୋକାନୀମାନେ ଦୋକାନ ବନ୍ଦ କରୁଥାନ୍ତି । ଦୁଆର ଆଗରେ ପଟା ଦେଇ, କାଠ କଲଣି ଲଗାଉଥାନ୍ତି, ଜୁଆରରୁ ଦୋକାନ ରକ୍ଷା କରିବା ସକାଶ । ମ୍ୟାକମ୍ ଶ୍ରୀମତୀ ହଷ୍ଟିଂଙ୍କ ଆଡ଼କୁ ଚାହିଁଲେ । ସେ କୋଡ଼ ଉପରେ ହାତଦୁଇଟି ଯୋଡ଼ି କରି ରଖି, ସିଧା ଆଗକୁ ଚାହିଁ ଗମ୍ଭୀରଭାବେ ବସିଥାନ୍ତି । ମ୍ୟାକମ୍ ତାଙ୍କ ଉପରେ ନଜର ହାତ ପକାଇଲେ । କିଛିକ୍ଷଣ ପାଏଁ ସେ ହଲଚଲ ନହୋଇ ଥିର ହୋଇ ରହିଲେ; ତା'ପରେ ନିଜର ଡାହାଣ ହାତ ମ୍ୟାକମ୍‌ଙ୍କ ଡାହାଣ ହାତ ଉପରେ ଆଣି ଛନ୍ଦି ଦେଲେ । ଦୁହେଁ ହାତ ଧରାଧରି ହୋଇ ସ୍ଥିର ଭାବେ ବସିଥାନ୍ତି । ସେ କ'ଣ ଭାବୁଥାନ୍ତି, କାହା କଥା ଭାବୁଥାନ୍ତି କେଜାଣି ? ସେ ଦୁହେଁ ଦୁଇଟି କ୍ଷୁଦ୍ର ପ୍ରାଣୀ, ନିଜ ନିଜର ଦୁଃଖରେ ଏକୁଟିଆ ହୋଇ ଯାଇଥିଲେ, ବର୍ତ୍ତମାନ ବିପଦରେ ପରସ୍ପର ପ୍ରତି ଆକୃଷ୍ଟ ହୋଇଯାଇଛନ୍ତି । ସମୁଦ୍ରର ଜଳରାଶି ସ୍ଫୀତ ହୋଇ ତାଙ୍କ ଆଡ଼କୁ ମାଡ଼ି ଆସୁଛି, ବିରାଟ ଜୁଆର, ମୋଡମାଡ଼ି ମାରିଦେବ । ଶ୍ରୀମତୀ କ'ଣ ଏଥିରୁ ନିସ୍ତାର ପାଇବାକୁ ଆକାଂକ୍ଷା ରଖିଥାନ୍ତି ? ତଥା ମିଷ୍ଟର୍ ମ୍ୟାକମ୍ କ'ଣ ଉଦ୍ଧାର ପାଇବାକୁ ବିଚାରୁଥାନ୍ତି ? ମୃତ୍ୟୁର ବିଚିତ୍ର ଅନିଶ୍ଚିତତା ଏ ବେଳରେ ! ରାତିର ନିର୍ମଳ ଆକାଶର ତାରାବଳୀ ଅନ୍ଧକାର ଭିତରେ ହାଜି ହାଜି ଦିଶୁଥାନ୍ତି । ଦୂରରେ ଆଗ୍ନେୟଗିରିର ବିସ୍ଫୋରଣ ସମ୍ଭୂତ ପର୍ବତମାନଙ୍କର ବିଷମ ଭଙ୍ଗିଳ ସୀମାରେଖାର କୃଷ୍ଣିମା ଦିଗ୍‌ବଳୟରେ ବାରି ହୋଇ ଦିଶୁଥାଏ ।

ଏତିକିବେଳେ ରେଡିଓ ଚିତ୍କାର କରି ଉଠିଲା, "ଦକ୍ଷିଣ ଆମେରିକାର ଦକ୍ଷିଣତ ଉପକୂଳରେ ହଜାର ହଜାର ନରନାରୀ ପ୍ରାଣ ହରାଇଛନ୍ତି । ସମୁଦ୍ର ତଳର ଶିଳାସ୍ତରରେ ଠାଏ ବଡ଼ ଗାତ ହୋଇଯିବାରୁ ଆମେରିକା ମହାଦେଶ ଜାପାନ ସହିତ ସଂଯୁକ୍ତ ହୋଇଛି । ଆଜି ରାତିଶ ମିନିଟ୍ ଭିତରେ ସମୁଦ୍ରର ଜଳୋଚ୍ଛ୍ୱାସ ହିଲୋରେ ଆସି ପହଞ୍ଚିବ ।"

ମ୍ୟାକମ୍ ଶ୍ରୀମନ୍ତଙ୍କୁ କହିଲେ, "ଜାଣ ଯେ, ଏ ଜଳୋଚ୍ଛ୍ୱାସକୁ ଜୁଆର କହିବା ଭୁଲ । ସମୁଦ୍ର, ଭିତରକୁ ଟାଣି ହୋଇ ଯିବାରୁ ଏ ଉଚ୍ଛ୍ୱାସର ଉତ୍ପତ୍ତି । ସମୁଦ୍ର ପୃଥିବୀ ଭିତରକୁ ଟାଣି ହୋଇ ଯାଉଛି । ଏ ଦୃଶ୍ୟ ମୁଁ ଜାପାନରେ ଦେଖିଛି । ଯେଉଁଠାରେ ସମୁଦ୍ର ଭିତରକୁ ଶୋଷି ହୋଇଯାଏ, ସେଠାରେ ସମୁଦ୍ର ଶେଯ୍ୟାର ପ୍ରସ୍ତର ଓ ପ୍ରବାଳ ଆଖିକୁ ଦିଶେ; ସମୁଦ୍ରର ମତ୍ସ୍ୟାଦି ବିରାଟକାୟ ଜଳଜନ୍ତୁ ଶୁଷ୍କ ଶଯ୍ୟାରେ ଛଟପଟ ହେଉଥାନ୍ତି । ଜଳ ଆସି ଏ ସ୍ଥାନ ପୂରଣ କରିବ ବୋଲି ଏ ସମସ୍ତେ ଆଶା କରି ରହିଥାନ୍ତି । ଜଳ ଆସେ; ତରଙ୍ଗରେ ନୁହେଁ, ବିରାଟ ଜଳ ପ୍ରବାହରେ । ଏତେ ଉଚ୍ଚରେ ଆସେ ଯେ ଜଳର ପ୍ରାଚୀର ଦିଗ୍‌ବଳୟରେ ବାରି ହୋଇ ଜଣାଯାଏ । ଧୀର ଅଥଚ ନିଶ୍ଚିତ ଗତିରେ ଏହା ମାଡ଼ି ଆସି ଭୂପୃଷ୍ଠକୁ ପ୍ଲାବିତ କରିଦିଏ; ଖାଲ ଜାଗା ସବୁ ପାଣିରେ ପୂର୍ଣ୍ଣ ହୋଇଯାଏ ; ଏ ପାଣିରେ ଖାଲ ସବୁ ପୂର୍ଣ୍ଣ ହୋଇଯାଏ, ନଦୀକୁ ଏହା ଭରି ଦିଏ—ଏ ଜଳୋଚ୍ଛ୍ୱାସର ତରଙ୍ଗର ଗର୍ଜ୍ଜନ ନଥାଏ କି ଶିଖା ନଥାଏ—ଏହା ଏକାବେଳକେ ଘରଆଡ଼କୁ ସତେ ଯେପରି ମାଡ଼ିବସେ ।"

ଶ୍ରୀମନ୍ତ କହିଲେ, "କି ଭୟାନକ ! କିନ୍ତୁ ତୁମେ ଏ ଜଳୋଚ୍ଛ୍ୱାସର ବର୍ଣ୍ଣନା ଏତେ କବିତ୍ୱପୂର୍ଣ୍ଣ ଭାଷାରେ କରୁଛ ଯେ, ଏଥିରେ ପ୍ରାଣ ହରାଇବାକୁ ମୋର ଭୟ ହେଉନାହିଁ ।"

ମ୍ୟାକମ୍ ଆପଣା ମନକୁ ମନ କହିଲା ପରି କହିଲେ, "ଆମେ ଯେ ଉଡ଼ାଜାହାଜ ପଡ଼ିଆକୁ ଯାଉଛେଁ ତାହା ଠିକ୍ ହେଉଛି କି ନାହିଁ କେଜାଣି ? କିନ୍ତୁ ଆଉ ଯିବା କୁଆଡ଼େ ? ଅନ୍ୟତ୍ର ଆଶ୍ରୟ ନେବାକୁ ବସିଲେ ଉଡ଼ାଜାହାଜ ଯେ ଫେଲ୍ ହେବା !"

ଶ୍ରୀମନ୍ତ ହସ୍ତିଂ କହିଲେ, "ଆମେ କେଉଁଠିକୁ ଯିବା ନଯିବା ସେଥିପ୍ରତି ମୋର ଖାତିର ନାହିଁ । ତୁମର ଅଛି ଭଲ ?"

ମିଷ୍ଟର ମ୍ୟାକମ୍ କହିଲେ, "ନାଃ ।" ଟ୍ୟାକ୍‌ସି ଚାଲିଥାଏ । ଅଳ୍ପ କେତେ ମିନିଟ୍‌ରେ ସେମାନେ ଆସି ଉଡ଼ାଜାହାଜ ଷ୍ଟେସନ୍‌ଠାରେ ପହଞ୍ଚିଲେ । ଡ୍ରାଇଭରକୁ ଭଡ଼ା ଦେଇ ବିଦାକଲାବେଳେ ସେ ଟିକିଏ ଇତସ୍ତତଃ ହୋଇ କହିଲେ, "ଟ୍ୟାକ୍‌ସି ଛାଡ଼ିଲେ ଆମେ ଆଉ ଏଠାରୁ ଫେରିଯିବାର ଉପାୟ ରହିବ ନାହିଁ । ନିତାନ୍ତ ଯଦି—" ଡ୍ରାଇଭର୍ ବାଟ ।

ଦେଇ କହିଲା, "ଆପଣ ଏଠାର ଖବର ବୁଝିବେ, ମୁଁ ଅପେକ୍ଷା କରି ରହିଥିବି, ଏକଥା କସ୍ମିନ୍ କାଳେ ହୋଇ ପାରିବନାହିଁ । ଆପଣ ଜାଣିଛ, ଆଜି ଯେ ହେଉ ପଛେ, ମୁଁ ଅପେକ୍ଷା କରି ନପାରେ । ଘରେ ମୋର ଭାର୍ଯ୍ୟା ଅଛି, ତିନୋଟି ଛୋଟ ଛୁଆ ଅଛନ୍ତି ।"

ମ୍ୟାକମ୍ ତା' ହାତକୁ ଭଡ଼ା ବଢ଼ାଇ ଦେଇ କହିଲେ; "ହଉ ତେବେ, ନଅ, ଯାଅ, ଚାଲିଯାଉଥିବା ଟ୍ୟାକସିଟିକୁ ସେମାନେ କିଛି ସମୟ ଚାହିଁ ରହିଲେ ଓ ତା'ପରେ ଏୟାର୍ ପୋର୍ଟ୍‌ର ପ୍ରାୟ ଖାଲିଥିବା ଅଫିସ ଭିତରେ ପଶିଲେ । ଯାତ୍ରୀମାନଙ୍କର ମାଲମତାର ଚାର୍ଜ ନେଉଥିବା ଜଣେ ଲୋକ ଆସି କହିଲା, "ଆପଣ ଦୁହିଁଙ୍କୁ ଏଠାରେ ପ୍ରବେଶ କରିବାକୁ ଦିଆଯିବ କି ନାହିଁ ସେ ବିଷୟରେ ମୋର ସନ୍ଦେହ ।

ମ୍ୟାକମ୍ ଉତ୍ତର ଦେଲେ, "ସାନଫ୍ରାନ୍‌ସିସ୍‌କୋକୁ ଏଇ ରାତି ଗୋଟାକ ବେଳେ ଯେଉଁ ଜେଟ୍ ଯିବାର କଥା, ଆମେ ସେଇଥିରେ ଯିବାକୁ ଟିକେଟ୍ କରିଥିବାରୁ ଆସିଛୁ ।"

ଲୋକଟି ଉତ୍ତର ଦେଲା, "ପ୍ରାୟ ସବୁଗୁଡ଼ିକ ଉଡ଼ାଜାହାଜକୁ ପଡ଼ିଆରୁ ଉଠାଇ ନିଆ ହୋଇଛି ।"

ମ୍ୟାକମ୍ ପଚାରିଲେ, "ଜୁଆର କ'ଣ ଏଠାକୁ ମାଡ଼ି ଆସିବ ବୋଲି ଆପଣମାନେ ବିଚାରୁଛନ୍ତି ?"

"ସେକଥା ମୋତେ କ'ଣ ଜଣା ? ବୋଧହୁଏ ପୁଲିସ୍ ସେକଥା କହିବେ । ଶେଷ ମୁହୂର୍ତ୍ତରେ ଆମେ ସେଇ ପୁଲିସ୍ ଗାଡ଼ିରେ ବାହାରିଯିବୁଁ ।"

"ବର୍ତ୍ତମାନ ଆମ୍ଭେମାନେ କେଉଁଠି ଅପେକ୍ଷା କରିପାରିବୁ ଭଲା ?"

ଲୋକଟି ଟିକିଏ ଥାଥା ମାମା ହୋଇ କହିଲା, "ଉପର ମହଲାକୁ ଯା'ନ୍ତୁ । ସେଇଠାରେ ସୁବିଧା ହେବ ବୋଲି ମୁଁ ମନେକରୁଛି । ଉପରେ ଆଡ଼୍‌ମିରାଲସ୍ କ୍ଲବ୍ ଅଛି । ବଡ଼ ଲୋକଙ୍କ ପାଇଁ ତାହା ଉଦ୍ଦିଷ୍ଟ । ତେବେ, ବର୍ତ୍ତମାନ ଯେଉଁ ସମୟ, ସେଥିରେ ସମସ୍ତେ ବଡ଼ ଲୋକ ।"

"ହଉ, ଧନ୍ୟବାଦ" ବୋଲି କହି ମ୍ୟାକମ୍ ତାଙ୍କ ସଙ୍ଗିନୀଙ୍କ ସହିତ ଉପରକୁ ଗଲେ । ପ୍ରକାଣ୍ଡ ପ୍ରାସାଦ ; ସାଧାରଣତଃ ତଳତଳ

ହୋଇ ଯିବା ଆସିବା କରୁଥିବା ଲୋକରେ ତାହା ପୂର୍ଣ୍ଣ ଥାଏ । ବର୍ତ୍ତମାନ କିନ୍ତୁ ସବୁ ଖାଲି, ନୀରବ ନିସ୍ତବ୍ଧ । ଘଣ୍ଟା ମାତ୍ର ମାତ୍ର ପଡ଼ୁଥାଏ । ଜଣେ ଲୋକ ଆସି ସେମାନଙ୍କ ଆଗରେ ବାଟ ରୋକି ଠିଆ ହୋଇ ପଚାରିଲେ, "ମୁଁ ଆପଣମାନଙ୍କ ପାଇଁ କ'ଣ କରିପାରେ, କହନ୍ତୁ । ମୁଁ ଏଠାର ଆସିଷ୍ଟାଣ୍ଟ୍ ମ୍ୟାନେଜର୍ ।"

ମ୍ୟାକମ୍ ପଚାରିଲେ, "ସାତ ନମ୍ବର ଆକାଶଯାହାରେ ଆମର ସାନ୍ ଫ୍ରାନ୍‌ସିସ୍‌କୋ ଯାତ୍ରା କରିବାର ସମ୍ଭାବନା ଅଛି କି ?" ଭଦ୍ରଲୋକଟି ଉତ୍ତର ଦେଲେ, "ଯିବା ନଯିବା ବଡ଼ ଜୁଆର ଉପରେ ନିର୍ଭର କରେ । ଯଦି ସେ ଉତ୍ତର ଦିଗକୁ ମୁହାଁଏ, ତେବେ ଏଠାରେ ସମୁଦ୍ରର ଜୁଆର ଟିକିଏ ବଢ଼ିବ ମାତ୍ର । କିନ୍ତୁ ବର୍ତ୍ତମାନ ତାହା ଯେପରି ପଶ୍ଚିମ ଦିଗ ଧରିଛି ସେପରି ଯଦି ରହେ—। ସେ ଯାହାହେଉ, ଆପଣମାନେ ବର୍ତ୍ତମାନ ଏଠାରେ ଆସି କିମିତି ପହଞ୍ଚିଲେ ?"

ମ୍ୟାକମ୍ କହିଲେ, "ଆମ୍ଭେମାନେ ସାନ୍‌ଫ୍ରାନ୍‌ସିସ୍‌କୋକୁ ଟିକଟ କରିଛୁ । ସେ ହେଉଛନ୍ତି, ଶ୍ରୀମତୀ କ୍ଲାଇଟନ୍ ହର୍ଷ୍ଟିଂ ।"

ଭଦ୍ରଲୋକ ତାଙ୍କ ଟୋପିରେ ହାତ ଦେଇ କହିଲେ, "ମହାଶୟା ! ଆପଣଙ୍କର ଦେହପା ଭଲ ତ ? ଆପଣଙ୍କ ପତିବିୟୋଗ ସମ୍ବାଦରେ ଆମ୍ଭେମାନେ ମର୍ମାହତ ହୋଇଛୁ । ବେଶ୍ ଲୋକ—ଜଣେ ପ୍ରଧାନ କଳାକାର ।"

ମିସେସ୍ ହର୍ଷ୍ଟିଂ କହିଲେ, "ଧନ୍ୟବାଦ" ଖୁବ୍ ଚୁପ୍ ଚୁପ୍ ସ୍ୱରରେ । ତାଙ୍କ ଆଖି ଲୁହରେ ଭରିଗଲା ।

ଆସିଷ୍ଟାଣ୍ଟ୍ ମେନେଜର କହିଲେ, "କ୍ଲବ୍ ଘରେ ଜଣେ ପରିଚାରିକା ଅଛନ୍ତି । ସେ ଆପଣଙ୍କୁ କଫି ଦେବେ । ସେଠାରେ ଗୋଟିଏ ରେଡ଼ିଓ ମଧ୍ୟ ଅଛି । ଏଇ ଡାହାଣ ପାଖକୁ, ଗୋଟିଏ ଦ୍ୱାର ଘୁଞ୍ଚି ଆଉ ଦ୍ୱାର ବାଟେ ଯା'ନ୍ତୁ ।"

ମ୍ୟାକମ୍ କହିଲେ, "ଧନ୍ୟବାଦ ।"

ସେ ତାଙ୍କ ହାତ ମିସେସ୍ ହର୍ଷ୍ଟିଂଙ୍କ ହାତରେ ଛାଡ଼ି ଦେଲେ । ମିସେସ୍ ହର୍ଷ୍ଟିଂଙ୍କ ମାଂସପେଶୀ ଖୁବ୍ ଟାଣ ଜଣାପଡ଼ୁଥାଏ ।

ମ୍ୟାକମ୍ କହିଲେ, "ବିଶ୍ରାମ ହେଉ ନାହିଁ । ଚାଲ, ଗରମ କଫି ଖାଇବା ଓ ରେଡ଼ିଓ ଶୁଣିବା । ଯୁଦ୍ଧ ବେଳେ ସଂବାଦ ଉଦ୍‌ବେଗଜନକ ହୋଇଥାଏ—; ତେବେ ନହୋଇ ବି ତ ପାରେ ।"

ମିଷ୍ଟର ମ୍ୟାକମ୍ ଡାହାଣ ପାଖର ବିଶ୍ରାମ ଦ୍ୱାର ଖୋଲିଲେ । ଘରର ତଳେ ଖଞ୍ଜା ହୋଇଥିବା ରେଡ଼ିଓରୁ ଆବେଗଭରା ସଙ୍ଗୀତର ଧାରା ତାଙ୍କ ଆଡ଼କୁ ବୋହି ଆସିଲା । ପ୍ରକାଣ୍ଡ କୋଠରୀଟି ଖାଲି, କେବଳ କୋଣରେ ଟେବୁଲ ପାଖେ ଜଣେ ଶ୍ୱେତକାୟା ସ୍ୱର୍ଣ୍ଣାଭ କେଶଗୁଚ୍ଛ-ଶୋଭିତା ପରିଚାରିକା ବସିଥାନ୍ତି ।

ଖୁବ୍ ସରସଭାବେ ସେ କହିଲେ, "ଆସନ୍ତୁ, ଆସନ୍ତୁ, କଫି ବେଶ୍ ଗରମ ଅଛି ; ମୁଁ କିଛି ସ୍ୟାଣ୍ଡୱିଚ୍ ବି କରିଛି, କେଜାଣି କେହି—"

ଉଭୟେ ସୁଖପ୍ରଦ ବଡ଼ ବଡ଼ ଚୌକି ଦୁଇଟିରେ ବସିଲେ, ତାଙ୍କ ମଝିରେ ଥିବା ଗୋଟିଏ ସାନ ଟେବୁଲ୍ ଉପରେ ପରିଚାରିକା ସାଣ୍ଡୱିଚ୍ ଥାଳିଟିଏ ଥୋଇଲେ । ସଙ୍ଗୀତ ହଠାତ୍ ମଝିରେ ବନ୍ଦ ହୋଇଗଲା ; ଜଣେ ପୁରୁଷ ଲୋକର ସ୍ୱର ରେଡ଼ିଓରୁ ଶୁଣାଗଲା । ପରିଚାରିକା ଶୁଣିବାକୁ ଠିଆ ହୋଇପଡ଼ିଲେ ।

"ଜୁଆର କେଉଁ ଦିଗ ଧରିବ ବର୍ତ୍ତମାନ କହି ହେଉନାହିଁ । ଖବର ମିଳୁଛି ଯେ, ଏହା ଷାଠିଏ ସତୁରି ଫୁଟ ଉଚ୍ଚରେ ଆସୁଛି । ଛୋଟ ଛୋଟ ଦ୍ୱୀପଗୁଡ଼ିକ ବୁଡ଼ିଗଲଣି । ଜୁଆରର ଆଘାତ ଖୁବ୍ ଜୋରରେ କୂଳ ଉପରେ ପଡ଼ିବ—ରେଡ଼ିଓକୁ କାନ ଦେଇଥାଅ ।"

ସଙ୍ଗୀତ ଯେଉଁଠାରେ ବନ୍ଦ ହୋଇଥିଲା ପୁଣି ସେଇଠାରୁ ଆରମ୍ଭ ହେଲା । ପରିଚାରିକା ତାଙ୍କ ଟେବୁଲ ପାଖକୁ ଯାଇ କଫି ଢାଳିଲେ ; କହିଲେ, ମୁଁ ଏଠାରୁ ଶୀଘ୍ର ବାହାରିଯିବା ଦରକାର । ମୋ ବିଷୟରେ ମୋର ଘର ଚିନ୍ତିତ ହେଉଥିବେ । ଆମର ସାତୋଟି ଛୁଆଙ୍କୁ ଧରି ସେ ଘରେ ଅପେକ୍ଷା କରୁଛନ୍ତି ।"

ମ୍ୟାକମ୍ ପଚାରିଲେ, "ଆପଣଙ୍କ ଘର କ'ଣ ଉଚ୍ଚ ଜାଗାରେ ?"

"ହଁ ଯେ, ଆମ ଘର ଏଠାରୁ ବହୁତ ଦୂର ମଝିରେ ବହୁତ ଉଚ୍ଚ ଜାଗା ଅଛି ।"

ସେ ସ୍ନେହ ଦୁହିଁଙ୍କ ଆଗରେ କପିକପ ଦୁଇଟି ଥୋଇ ଦେଇ ହାତ ଘଣ୍ଟାକୁ ଚାହିଁ କହିଲେ, "ମୁଁ ଘଣ୍ଟାଏ ଅଧିକା ରହିଲିଣି । ମୋ ପରେ ଏଠାକୁ ଯେ ଆସିବାର କଥା, ତାଙ୍କର ଦେଖାନାହିଁ ।"

ସେ ପୁଣି ତାଙ୍କ ଟେବୁଲପାଖକୁ ଯାଇ ଝରକା ବାଟେ ବାହାରର ଅନ୍ଧାରକୁ ନିରୀକ୍ଷଣ କଲେ, ଦାନ୍ତ ଚିପିଚିପି କହିଲେ, 'ପବନ ବାହାରିଲିଣି ।' ସେ ଆଗନ୍ତୁକ ଦୁହିଙ୍କ ଆଡ଼କୁ ଚାହିଁ କହିଲେ, "କ୍ଷମା କରିବେ । ମୁଁ ଟିକିଏ ଟେଲିଫୋନ୍ କରିବାକୁ ଦୁଇ ମିନିଟ୍ ପାଇଁ ଯାଉଛି ।"

ସେ ବାହାରକୁ ଯାଇ ଆସ୍ତେ ଆସ୍ତେ ଦ୍ୱାର ବନ୍ଦ କରିଦେଲେ । ମ୍ୟାକମ୍ ଗମ୍ଭୀର ଭାବେ ହସି କହିଲେ "ଆଉ ସ୍ନେହଙ୍କୁ ଆମେ ଦେଖିବା ନାହିଁ । ସ୍ନେହ ଗଲେ ଯେ ଗଲେ ।" ଲୁଇ ହଷ୍ଟିଂ କହିଲେ, "ତାଙ୍କର ଦୋଷ ବୋଲି ମୁଁ ମନେ କରୁନାହିଁ ।"

ମ୍ୟାକମ୍ କହିଲେ, "ଏ ଅବସ୍ଥାରେ ମୁଁ ବି ଦୋଷ ବୋଲି କହୁନାହିଁ ।" ପୁଣି ସଙ୍ଗୀତକୁ ବାଧା ଦେଇ ରେଡ଼ିଓ-ଘୋଷଣା ହେଲା, "ଜୁଆରର ଆଉ କିଛି ଖବର ଆମ ପାଖରେ ନାହିଁ । ହୁଲ୍ ସହିତ ସମସ୍ତ ଯୋଗାଯୋଗ ବିଚ୍ଛିନ୍ନ ହୋଇଗଲା । ପରେ ଆଉ ଖବର ଦେବୁ ।"

ମଧୁର ସଙ୍ଗୀତର ଲହରୀ ପୁଣି କୋଠରୀଟିରେ ଖେଳିଗଲା ; ଆବେଗ ଓ ସଂବେଦନ ଭରା । ମ୍ୟାକମ୍ ଦେଖିଲେ, ତାଙ୍କ ସଙ୍ଗିନୀଙ୍କ ଆଖି ଲୁହରେ ଭରିଯାଇଛି । ସେ ତାଙ୍କ ବାହୁ ଉପରେ ନିଜର ହାତ ଥୋଇଲେ ।

"ଏପରି ସମୟରେ ସଙ୍ଗୀତ ମନରେ କି ଭାବ ସୃଷ୍ଟିକରେ ମୁଁ ଜାଣୁଛି, କିନ୍ତୁ ରେଡ଼ିଓ ବନ୍ଦ କରି ଦେବା ଯେ ସମ୍ଭବ ନୁହେଁ ।"

ମିସେସ୍ ହଷ୍ଟିଂ କହିଲେ, "ନା, ମୁଁ ନିଶ୍ଚିନ୍ତ ଅଛି ।" ସେ କପି କପ୍‌କୁ ଅଧରରେ ଲଗାଇଲେ ।

ମ୍ୟାକମ୍ କହିଲେ, "ଆସ କଥାବାର୍ତ୍ତା ହେବା । ସେ ଚଉକିରୁ ଉଠି ଠିଆ ହେଲେ ଓ ଅସ୍ଥିର ଭାବେ ଆଗକୁ ପଛକୁ ପଦଚାରଣ କରି ପୁଣି ଆସି ବସିଲେ ।

ହଠାତ୍ ସେ ଆରମ୍ଭ କଲେ, "ମୋ ସ୍ତ୍ରୀ ମରିବାର ଆସନ୍ତା କାଲିକୁ ଠିକ୍ ତିନିବର୍ଷ ହେବ । କେବଳ ବିଶିଷ୍ଟଦିନମାନଙ୍କ ବ୍ୟତୀତ ଅନ୍ୟ ଦିନମାନଙ୍କରେ ମୁଁ ତାକୁ ବେଶୀ ମନେ ନ ପକାଇବାକୁ ଚେଷ୍ଟା କରେ । ମୋର ବିଶ୍ୱାସ, ଜନ୍ମ ଦିବସ ପରି ମୃତ୍ୟୁ ଦିବସକୁ ବିଶିଷ୍ଟ ଦିନ ବୋଲି ଆପଣ ମାନିବେ । ତା'ର ଜନ୍ମ ଓ ମୃତ୍ୟୁ ଏଇ ଦୁଇଟି ଦିନ ଯେତେବେଳେ ମୁଁ ମନେ ପକାଏ, ମୋର ମନେହୁଏ, ତା'ର ଅଳ୍ପଦିନ ସ୍ଥାୟୀ ଜୀବନଟି ମୋର ଏଇ ହାତ ମୁଠାରେ ମୁଁ ରଖିଦିଏଁ ।"

ଏହା କହି ସେ ତାଙ୍କର ବଳିଷ୍ଠ ଦକ୍ଷିଣ ହସ୍ତଟିକୁ ମେଲାଇ ଦେଇ ମୁଠା କରି ଦେଲେ । ଗ୍ରୀଷ୍ମ କଟିବନ୍ଧର ସୂର୍ଯ୍ୟ ଓ ସମୁଦ୍ର ପାଣିରେ ତାହାର ବର୍ଣ୍ଣ ପାଟଳ ହୋଇଥାଏ ।

"ସେ ମୋଠାରୁ ବୟସରେ ଦଶ ବର୍ଷ ସାନ । ସେ ଯେଉଁଦିନ ଜନ୍ମ ହେଲା ସେଦିନ ମୁଁ ତାକୁ ଦେଖିଥିଲି । ନଵ ଇଂଲଣ୍ଡର ଗୋଟିଏ ସହରର ଏକା ଗଳିରେ ଆମ ଦୁହିଁଙ୍କର ଘର । ତାଙ୍କ ଘର ଆମ ଘରକୁ ଲାଗିଥିଲା । ତା' ଜନ୍ମ ବେଳେ ମୋ ମା ତା'ମାଙ୍କୁ ସାହାଯ୍ୟ କରୁଥିଲେ । ଜନ୍ମ ହେଲା ବେଳେ ପିଲା କମିତି ଦିଶନ୍ତି ଦେଖିବୁ କି ବୋଲି ମୋ ମା ମୋତେ ଡାକିଲେ । ମୁଁ ଯାଇ ତା'ର ଦୋଳିରେ ତା'କୁ ଦେଖିଲି । କେଡ଼େ କୁନି, ଗୁଲୁଗୁଲିଆ ପିଲାଟିଏ ସିଏ ହୋଇଥାଏ—"

ହଠାତ୍ କଥା ବନ୍ଦ କରି ଦେଇ ସେ ପାଟି ଚପି ହସିଲେ । ଭାବାବେଗରେ ମିସେସ୍ ହଷ୍ଟିଂ ଆରମ୍ଭ କଲେ, "କଲେଜର ଶେଷ ବର୍ଷରେ ମୁଁ ପଢ଼ିବା ପର୍ଯ୍ୟନ୍ତ କ୍ଲାଇଡ୍‌କୁ ଦେଖି ନଥିଲି । ଆମ ଟାଉନ୍‌କୁ ଫୁଟବଲ୍ ଖେଳିବାକୁ ଆସିଥିବା ଟିମ୍‌ର ସେ କ୍ୟାପ୍‌ଟାନ ହୋଇ ଆସିଥାନ୍ତି । ଫୁଟବଲ୍ ଖେଳ କ୍ୟାପ୍‌ଟାନ୍ ହେବା ସେତେବେଳେ ତାଙ୍କର ଉଚିତ ନଥିଲା; କାରଣ ସେତେବେଳେ ବି ସଙ୍ଗୀତମାନଙ୍କରେ ସେ ବେହେଲା ବଜାଉଥାନ୍ତି—କିନ୍ତୁ ସବୁବେଳେ ତାଙ୍କର ମନ, ସେ ସବୁ କଥା ନିଜେ କରିବେ । ଫୁଟବଲ୍ ଖେଳରେ ମୋର ଶ୍ରଦ୍ଧା ନଥାଏ । ମୁଁ ଲାଇବ୍ରେରୀକୁ ଯିବା ବେଳେ ସେ ମୋତେ ରାସ୍ତାରେ ଦେଖି, ମୁଁ କାହିଁକି ଖେଳ ଦେଖିବାକୁ ଯାଉନାହିଁ ବୋଲି ମତେ ପଚାରିଲେ । ମୁଁ କହିଲି, ଫୁଟବଲ ଖେଳ ଦେଖିବାକୁ ମୋର ଇଚ୍ଛା ନୁହେଁ । ସେ କହିଲେ, ତାଙ୍କର

ବ ଫୁଟବଲ୍‌ରେ ମନ ନାହିଁ, ଖେଳିବାକୁ ହେବ ବୋଲି ଖେଳୁଛନ୍ତି । କଲେଜରେ ସେଇ ସଂଧ୍ୟାରେ ହେଉଥିବା ସଂଗୀତକୁ ଆସିବାପାଇଁ ସେ ମୋତେ ନିମନ୍ତ୍ରଣ କଲେ । ହୋଇସଲର୍ ସେଦିନ ବାଜଣା କରିବାର ଥାଏ; ମୁଁ ହଁ କଲି । ସେଦିନ ମୋର ମନେ ହୋଇଥିଲା, ସେ ମୋର ମନ ନେବାକୁ ବାହାଦୁର କରୁଥିଲେ ।"

ମ୍ୟାକମ୍ ପଚାରିଲେ, "ସତ ନା କଣ ?"

ସେ ତାଙ୍କର ନୀଳ ଚକ୍ଷୁ ଦୁଇଟି ବିସ୍ତାରିତ କରି ହସିଲେ, କହିଲେ, "ନା, ତା' ନୁହେଁ । ବାସ୍ତବିକ ସେ ସଙ୍ଗୀତକୁ ସୁଖ ପାଉଥିଲେ; ଫୁଟବଲ୍ ପ୍ରତି ତାଙ୍କର ଘୃଣା । ତାଙ୍କୁ ଖେଳିବାକୁ ହେଉଥିଲା ବୋଲି ସେ ଖେଳୁଥିଲେ । ସେ ବାସ୍ତବିକ୍ ଭଲ ଫୁଟବଲ ଖେଳାଳୀ ଥିଲେ । କିନ୍ତୁ ଆମ ବିବାହ ପରେ—"

ମ୍ୟାକମ୍ ବାଧା ଦେଇ କହିଲେ, "ବାଃ, ତୁମେ ଯେ ଗାଡ଼ି ଦଉଡ଼ାଇ ଦେଉଛ । ମୋ ଭାର୍ଯ୍ୟା ଏ ପର୍ଯ୍ୟନ୍ତ ସଦ୍ୟଜାତ ଶିଶୁ ଅବସ୍ଥାରେ ।" ଶ୍ରୀମତୀ କହିଲେ; "ମୋର ଦୋଷ । ଆପଣଙ୍କର କଥା କହନ୍ତୁ ।"

ମିଷ୍ଟର୍ ମ୍ୟାକମ୍ କହିବା ପୂର୍ବରୁ ରେଡ଼ିଓ ପୁଣି କହିଲା, "ମାଲ୍ଟ ଦ୍ୱୀପମାନଙ୍କର ଯୋଗାଯୋଗ ଏକାବେଳକେ ବିଚ୍ଛିନ୍ନ ହୋଇଯାଇଛି । ଏଥିରୁ ଜଣାପଡ଼ୁଛି ସେପରି ଅବସ୍ଥା ସାଙ୍ଘାତିକ । ଜୁଆର କେଉଁ ଦିଗ ଧରୁଛି କିଛି ଜଣାପଡ଼ୁନାହିଁ । ଆମର ପରାମର୍ଶ, ସମସ୍ତେ ସବୁପ୍ରକାର ସତର୍କ ବ୍ୟବସ୍ଥା ଅବଲମ୍ବନ କରନ୍ତୁ ।"

ମ୍ୟାକମ ଧୀରେ ଫିସିଫିସି କହିଲେ, "ଆଉ ସତର୍କ ବ୍ୟବସ୍ଥା କ'ଣ ?" ଦୁହେଁ ଦୀର୍ଘ ସମୟ ଯାଏଁ ପରସ୍ପରକୁ ଚାହିଁ ରହିଲେ । ତା'ପରେ ମିସେସ୍ ହର୍ଷ୍ଟିଂ ପଚାରିଲେ, "ତା'ପରେ ଆଉ କେବେ ଆପଣ ଆପଣଙ୍କ ଭାର୍ଯ୍ୟାଙ୍କୁ ଦେଖିଲେ ?"

ମ୍ୟାକମ୍ ଟିକିଏ ମନେ ପକାଇ କହିଲେ, "ସେ ନିଶ୍ଚୟ ଆମ ଘରକୁ ଯିବା ଆସିବା କରିଥିବ । କିନ୍ତୁ ତାକୁ ପାଞ୍ଚବର୍ଷ ହେବାଯାଏଁ ସେ ମୋର ପୂରା ମନେ ପଡ଼ୁନାଇଁ । ସେଇ ସମୟରେ ମୋ ସାଇକଲ୍ ଧକ୍କାରେ ସେ ତଳେ ପଡ଼ିଯାଇଥିଲା । ମୁଁ ସ୍କୁଲରୁ

ଫେରୁଥିଲି, ତା'ର ଯେଉଁଠି ଠିଆ ନହେବାର କଥା, ସେ ସେଇଠି ଠିଆହୋଇଥିଲା - ସମାନ ରାସ୍ତା ମଝିରେ । ସେ ଏପରି ଚିତ୍କାର ଆରମ୍ଭ କଲା ଯେ, ମୁଁ ଭାବିଲି, ସେ ନିଶ୍ଚେ ମରିବ । ତା'କୁ ହାତରେ ଟେକି କରି ଧରି ମୁଁ ତାଙ୍କ ହାଣ୍ଡିଶାଳରେ ଯାଇ ହାଜର ।

"ହେଇଟି ପୁଅ ମଲାଣି, ବୋଲି ମୁଁ ତା' ମାଙ୍କୁ କହିଲି । ସେ ହସି ହସି କହିଲେ, 'ଆଜି ଯାହା ହୋଇଥାଉ ପଛେ, ସେ ମରିନାହିଁ ।'

"ମୁଁ କହିଲି, 'ହେଇଟି ତା ମୁଣ୍ଡରୁ ରକ୍ତଧାର ଲାଗିଛି ।' ପରେ ଜଣାଗଲା, ଟିକିଏ ଘଞ୍ଚୁଡ଼ି ହୋଇଯାଇଥିଲା ମାତ୍ର । ସେଇ ଦିନ ତା' ସୁନେଲି ବାଳ ପ୍ରଥମେ ମୋ ନଜରରେ ପଡ଼ିଲା । ସ୍ଟାପରେ ସବୁଦିନ ସେ ମୋ ଆଖିରେ ପଡ଼ିଲା । ସବୁଦିନ ମନରେ ଦକା ପଶେ, ମୋ ଯୋଗୁଁ ସେ ସେଦିନ ମରିଯାଇଥାନ୍ତା । ମରିନାହିଁ ବୋଲି ମୁଁ ମନେ ମନେ ଖୁବ୍ ଖୁସୀ ହୁଏ ।"

ମୁହଁରେ ମୃଦୁହାସ୍ୟର ସଙ୍କେତ ଦେଖାଇ ସେ ଚୁପ୍ ହୋଇଗଲେ । ମିସେସ୍ ହାଷ୍ଟିଂ ତାଙ୍କ ମୁହଁକୁ ଚାହିଁଥାନ୍ତି ; ପଚାରିଲେ, "ଆଉ ତା' ପରେ ?"

ମ୍ୟାକମ୍ କହିଲେ, "ଏଁ, ତାପରେ ? ମନେ ପଡ଼ୁଛି, ମତେ ସେତେବେଳକୁ ପ୍ରାୟ କୋଡ଼ିଏ । ମୁଁ କଲେଜ ଛୁଟିରେ ଗାଁକୁ ଆସିଥାଏ । ତା'କୁ ଦେଖିଲି, ଆମ ଘର ପାରି ହୋଇ ଯାଉଛି, ଆଉ ଦି'ଟା ଟୋକା ତା' ବହିପତ୍ର ଧରି ତା' ସାଙ୍ଗରେ ଯାଉଛନ୍ତି । ମୋର ଏ ଟୋକାଙ୍କ ଉପରେ ଭାରି ହିଂସା ହେଲା । ଖୁବ୍ ଆତ୍ମଗ୍ଲାନି ବି ହେଲା । ମୋର ଅବହେଳାରେ ସେ ସେମାନଙ୍କ ପାଲରେ ପଡ଼ିଛି ! ମାତ୍ର ଦଶବର୍ଷର ପିଲାଟିଏ ! କିନ୍ତୁ ତା' ପିଠିରେ ସୁନେଲି କେଶଗୁଚ୍ଛ ଝୁଲୁଥାଏ, ଆଖିଗୁଡ଼ିକ କମିତି ପାଟଳ ଦିଶୁଥାଏ ! ମୁଁ ମନଦୁଃଖରେ ଘର ଭିତରକୁ ଗଲି । ସେତେବେଳେ, ତା'ର ପର କେତେ ବର୍ଷ ଯାଏଁ ମୁଁ ଅନେକ ଟୋକାଙ୍କ ସଙ୍ଗେ ମିଳାମିଶା କରିଛି, କିନ୍ତୁ ମୋତେ ଯେତେବେଳେ ଅଠେଇଶି ଓ ତା'କୁ ଅଠର, ସେତେବେଳେ ଆଉ ସମସ୍ତଙ୍କୁ ମୁଁ ଛାଡ଼ିଲି । ମୁଁ ଜାଣିଲି, ସ୍ଟାରି ସାଙ୍ଗେ ମୋର ଭବିଷ୍ୟତ ଜଡ଼ିତ ।"

ମିସେସ୍ ହଷ୍ଟିଂ ପଚାରିଲେ, "ଏଭଳି ନଷ୍ପତ୍ତି କଲେ ବୋଲି ପରେ କ'ଣ କେବେ ଦୁଃଖ କରିଛନ୍ତି ?"

ସେ ଉତ୍ତର ଦେଲେ, "ନା, କେବେ ନୁହେଁ । ସେଭଳି ସ୍ତ୍ରୀ ସ୍ୱପ୍ନରେ ମିଳେ ।"

ମିସେସ୍ ହଷ୍ଟିଂ ମନ୍ତବ୍ୟ ଦେଲେ, "ବସ୍ତୁତଃ ଥାଇ ତାଙ୍କର ମୃତ୍ୟୁ ହେବାରୁ ଆପଣଙ୍କ ସ୍ୱପ୍ନ ସେଇପରି ଜୀବନ୍ତ ରହିଛି ।"

କ୍ଷଣ ଦୃଷ୍ଟିରେ ମିଷ୍ଟର୍ ମ୍ୟାକମ୍ ଶ୍ରୀମତୀଙ୍କ ଆଡ଼କୁ ଗୃହିଁ କହିଲେ, "ଏଥର ତମ କଥା କହ । ତମ କଥାର ଉପସଂହାର କ'ଣ ମୋ'ଠାରୁ ଅଲଗା ?"

ସେ ମୁଣ୍ଡ ହଲାଇଲେ । "ନା—ଆପଣଙ୍କ କଥାର ଉପସଂହାର ଯେପରି ସାଧାସିଧା ମୋର ମଧ୍ୟ ସେଇପରି । ଆମେ ଦୁହେଁ, ଖୁବ୍ ସୁଖରେ ଥିଲୁଁ । ଏଥିରୁ ଅଧିକ ମୁଁ ଆଉ କ'ଣ କହିବି ଜାଣି ପାରୁନାହିଁ ।"

ଏତିକିବେଳେ ରେଡ଼ିଓ ପୁଣି କହିବାକୁ ଆରମ୍ଭ କଲା—"ଆସନ୍ତା ଅଧଘଣ୍ଟା ଭିତରେ ଜୁଆର ଏଇ ଦ୍ୱୀପରେ ଆସି ଆଘାତ କରିବ । ସୁରକ୍ଷାର ଯେତେ ବ୍ୟବସ୍ଥା ସମ୍ଭବ ସବୁ ହେଉଛି । ସମୁଦ୍ରକୂଳ ହୋଟେ-ଲମାନଙ୍କୁ ଖାଲି କରିଦିଆଯାଉଛି । ସେଥିର ଅତିଥିମାନଙ୍କୁ ଓପରମହଲା-ମାନଙ୍କରେ ଆଶ୍ରୟ ଦିଆହେଉଛି । ରାସ୍ତାରେ ନରହିବାକୁ ଲୋକଙ୍କୁ ତାଗିଦ୍ କରାଯାଉଛି । ଦ୍ୱୀପର କେନାଲ ଓ ପାଣିନାଳମାନଙ୍କରେ ପାଣି ଦୁଇଫୁଟ ବଢ଼ିଗଲାଣି । ଜୁଆର ପୁଣି ଜୋରରେ ଆସି ପଶିବ କି ନାହିଁ ଜଣାନାହିଁ । ପ୍ରତି ପାଞ୍ଚ ମିନଟ୍‌ରେ ସମ୍ବାଦ ଶୁଣିବାକୁ ଆପଣମାନେ ଅପେକ୍ଷା କରନ୍ତୁ ।"

ସତେ ଯେମିତି ରେଡ଼ିଓ ଘୋଷଣା ଶୁଣି ନାହାନ୍ତି ସେଇପରି ଭାବରେ ମିଷ୍ଟର୍ ମ୍ୟାକମ୍ କହିଲେ, "ତେବେ ତମ କଥା ଏଇମିତି । ଆମେ ଦୁହେଁ ବି ଖୁବ୍ ସୁଖରେ ଥିଲୁ । କିନ୍ତୁ ଆମର ପିଲାପିଲି କେହି ହୋଇନଥିଲେ । ଆଉ ତୁମର ?"

ମିସେସ୍ ହଷ୍ଟିଂ କହିଲେ, "ନା, ଆମର କେହି ହୋଇନାହାନ୍ତି । ପିଲା ହୁଅନ୍ତୁ ବୋଲି ଆମର ଖୁବ୍ ମନ ଥିଲା । କିନ୍ତୁ ନହେଲେ ବୋଲି ଦୁଃଖ ହୋଇନାହିଁ । ସଂସାରରେ ଏତେ ତ ପିଲା ଅଛନ୍ତି; ଆମର ନହେଲା ବୋଲି

ଦୁଃଖ ହୁଅନ୍ତା କାହିଁକି ? ତା' ବାଦ୍, ଆମ ଦୁହିଁଙ୍କର ପରସ୍ପରକୁ ପାଇ ସୁଖର ତ ସୀମା ନଥିଲା !"

ମ୍ୟାକମ୍ କହିଲେ, "ଠିକ୍ କଥା । ଏବେ, ଏଠି ଆମେ ଦୁହେଁ ଯେପରି ଥାଇଁ, ଯଦି ପିଲାପିଲି ଥାନ୍ତେ—"

ମିସେସ୍ ହଷ୍ଟିଂ କହିଲେ, "ଥିଲେ ବି ଆଜି ମୁଁ ଏଇପରି ନିରମାଖି ହୋଇଥାନ୍ତି । ମୋର ପ୍ରକୃତି ସେଇମିତି । ପିଲା ହୋଇଥିଲେ, ମୁଁ ମା'ର କର୍ତ୍ତବ୍ୟ ଯଥାଯଥଭାବେ କରିଥାନ୍ତି ନିଶ୍ଚୟ, କିନ୍ତୁ ମୋର ମନ ପୂରାପୂରି ଭାବେ ତାଙ୍କରିଠାରେ ହିଁ ଥିଲା ।" ନିଜର କଥାରେ ଭୁଲ ହୋଇଯିବାର ଲକ୍ଷ୍ୟ କରି ସେ ସଂଶୋଧନ କଲେ· "ଅଦ୍ୟାପି ତାଙ୍କରିଠାରେ ହିଁ ମୋର ମନ ।"

ମ୍ୟାକମ୍ କହିଲେ, "ପିଲାପିଲି ନାହାନ୍ତି ବୋଲି ମୁଁ ଖୁସୀ, ବିଶେଷ କରି ବର୍ତ୍ତମାନ । ଆମ ଭାଗ୍ୟରେ କ'ଣ ଅଛି ନଜାଣି, ଏଠାରେ ବସିବା-ବେଳେ, ଅଦ୍ଭୁତ କଥା ! ସଦ୍ୟ ବିପଦରୁ ଉଦ୍ଧାର ପାଇବାକୁ କିଛି ନକରି ଆମେ ଯାହା ଏଠାରେ ବସିଥାଇଁ ! ତୁମର କ'ଣ ମରିବାକୁ ମନ ?"

ମିସେସ୍ ହଷ୍ଟିଂ କହିଲେ, "କହି ପାରିବି ନାଇଁ ।"

"କଥାଟାକୁ ଅନ୍ୟ ଆଡ଼ୁ ବିଚାର କର—ବଞ୍ଚିବାକୁ ଚାହଁ ତ ?"

ମିସେସ୍ ହଷ୍ଟିଂ କହିଲେ, "ସେ କଥା ବି କହି ପାରୁନାଇଁ ।"

ମ୍ୟାକମ୍ କହିଲେ, "ସେପରି ସ୍ଥଳେ ପ୍ରତିକାର ଉଦ୍ୟମ କିଛି ନକରି, ଚାଲ ଏଇଠାରେ ବସି ରହିବା । ଜୁଆର ଆପେ ଆମ ଭାଗ୍ୟ ନିୟନ୍ତ୍ରଣ କରୁ ।"

ମିସେସ୍ ହଷ୍ଟିଂ କହିଲେ, "ତାହାହିଁ ଠିକ୍ ।"

ଆଉ କେତେ ମିନଟ୍ ଯାଏଁ ଦୁହେଁ ନୀରବ ହୋଇ ବସି ରହିଲେ । ମିଷ୍ଟର୍ ମ୍ୟାକମ୍ ଉଠିପଡ଼ି ଶ୍ରୀମତୀଙ୍କ ପାଇଁ କପେ କଫି ଢାଳି ଝରକା ଆଡ଼କୁ ଗଲେ । ବାହାର ଆଲୁଅଗୁଡ଼ିକର କିରଣ, ସମୁଦ୍ରଜଳର ଉଚ୍ଚ ପାଚେରୀକୁ ଲଗି ଫୁଲି ଉଠୁଥିବା ନିସ୍ତରଙ୍ଗ ନିର୍ମଳତା ଉପରେ ପଡ଼ି ଚକ୍‌ଚକ୍ କରୁଥାଏ ।

ମିସେସ୍ ହଷ୍ଟିଂ ପଚାରିଲେ, "ଆଚ୍ଛା, ଆପଣଙ୍କ ସ୍ତ୍ରୀ ମରିବାର କ'ଣ ଆପଣ ନିଜେ ଦେଖିଛନ୍ତି ?"

ମିଷ୍ଟର୍ ମ୍ୟାକମ୍ ଆସି ଚଉକରେ ପୁଣି ବସିଲେ, "ସେ ତ ମୋର କୋଡ଼ରେ ପ୍ରାଣ ହରାଇଲା ।"

ମିସେସ୍ ହଷ୍ଟିଂ ଗଭୀର ସମବେଦନାଭରା ସ୍ୱରରେ କହିଲେ, "ଓଃ, କି ଦୁଃଖ !" ମିଷ୍ଟର୍ ମ୍ୟାକମ୍ ବର୍ଣ୍ଣନା କଲେ, "ତାର ହୃତ୍‌ପିଣ୍ଡରେ ଦୋଷ ଥିଲା—ପିଲା ଦିନର କୌଣସି ରୋଗ ଯୋଗୁଁ । ସେ ଅନ୍ତଃସତ୍ତ୍ୱା ହେବା ପର୍ଯ୍ୟନ୍ତ ଏକଥା ଆମକୁ ଜଣାନଥିଲା । ସାନଟିଏ ହେଲେ ବି ତା'ର ଘର ପୂର୍ତ୍ତି, ସବୁବେଳେ କାମ କରେ ; ବଳୁଆ ନୁହେଁ, କିନ୍ତୁ ବେଶ୍ ଟେନିସ୍ ଖେଳେ । ଏଗାର ବର୍ଷ ପରେ ତା'ର ଗର୍ଭବାସ ହେଲା । ଡାକ୍ତର ତା'ର ହୃତ୍‌ପିଣ୍ଡ ପରୀକ୍ଷା କରି ତାଟକା ହୋଇଗଲେ । ଏ ପର୍ଯ୍ୟନ୍ତ ଯେ ସେ କିପରି ବଞ୍ଚିଛି, ତାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା । ଗର୍ଭଧାରଣ କରି ଯଥା ସମୟରେ ସେ ସନ୍ତାନ ପ୍ରସବ କରିବ, ଏହା ଡାକ୍ତରଙ୍କୁ ଅସମ୍ଭବ ଜଣାଗଲା । ସେ ଗର୍ଭସ୍ରାବ କରାଇ ଦେବାକୁ ପରାମର୍ଶ ଦେଲେ, କିନ୍ତୁ ମୋ ଭାର୍ଯ୍ୟା ଏ ପରାମର୍ଶକୁ ଏକାବେଳେ କାନ ପତାଇଲା ନାହିଁ । ବଡ଼ ଏକଜିଦିଆ ସେ—ଯାହା କହିବ ତା' କରିବ—ତା' ଆୟତ ପାଟଳ ଆଖି ଦୁଇଟି ମୋତେ ହାଣିଦେଲେ, ମୁଁ ବି ପ୍ରତିବାଦ କରିପାରେ ନାଇଁ, ଯଦିଓ ଇଚ୍ଛାରେ ସେ ମୋ କାନ୍ଧ ପର୍ଯ୍ୟନ୍ତ ହେଉନଥିଲା । ମୋର ଆଶା ଥାଏ, ସେ ଏ ଯାତ୍ରା ରକ୍ଷା ପାଇଯିବ । ତା'ର ଯେଉଁଥିରେ ମନ ସେ କାର୍ଯ୍ୟ ସେ କୌଣସିମତେ କରିନିଏ । ତା'ର ମନ ଧ୍ୟାନ ପିଲାଟିଏ ଉପରେ ଥିଲା··· । ମୁଁ ମନେ କରୁଛି, ମୋର ଦୋଷରେ ସେ ମଲା । ମୁଁ ଯଦି ତା'କୁ···"

ମିସେସ୍ ହଷ୍ଟିଂ ଆଗକୁ ଝୁଙ୍କିପଡ଼ି ମିଷ୍ଟର୍ ମ୍ୟାକମ୍‌ଙ୍କ ହାତକୁ ଧରି କହିଲେ, "ନା,ନା, ତୁମର ଦୋଷ କାହିଁକି ହେବ ? ସେ ଯାହା ପାଇବାକୁ ଆଶା କରିଥିଲେ, ତାହା ପାଇ ତ ଆନନ୍ଦ ଅନୁଭବ କରିଥିବେ, ପିଲାଟିଏ ହେବ ବୋଲି ଭାବି ରହିବା ଫଳରେ··· ।"

ମିସେସ୍ ହଷ୍ଟିଂଙ୍କ ମୁଠାରୁ ନିଜ ହାତକୁ ମୁକ୍ତ ନକରି ମିଷ୍ଟର୍ ମ୍ୟାକମ୍ କହି ଚାଲିଲେ, "ମୁଁ ତା' କଥା ଅନୁସାରେ ଗର୍ଭସ୍ରାବ ପ୍ରସ୍ତାବରେ ଜିଦ୍ ନକରିବାରୁ ସେ ଶେଷ ରାତରେ ମନ ଆନନ୍ଦରେ ଶୋଇବାକୁ ଗଲା । ହଠାତ୍, ବିନା ଯନ୍ତ୍ରଣାରେ ଟିକିଏ ପାଟିତୁଣ୍ଡ ନକରି ସେ ମୋତେ ଛାଡ଼ି

ଗ୍ଧଲଗଲା । ମୁଁ ନିଦରୁ ଉଠି ଅନୁଭବ କଲି, ତା'ର ମୁଣ୍ଡ ମୋ ବାହା ଉପରେ ଖୁବ୍ ଭାରି ଜଣାଯାଉଛି ।''

ମିସେସ୍ ହଷ୍ଟିଂଙ୍କ କପୋଳରେ ଲୋତକର ଧାରା ଅବାରିତଭାବେ ବହୁଥାଏ । ସେ ମିଷ୍ଟର୍ ମ୍ୟାକମ୍‌ଙ୍କ ହାତରୁ ନିଜ ହାତ କାଢ଼ିନେଇ ଦୁଇ ହାତରେ ନଜର ମୁହଁକୁ ଡାଙ୍କି ସକସକ ହୋଇ କାନ୍ଦିବାକୁ ଲାଗିଲେ ।

ଏତିକବେଳେ ରେଡ଼ିଓ ପୁଣି କହିଲା, "ଏ ଦ୍ୱୀପରେ ଜାହାଜ ଆସି ଠିକ୍ ୧୫ମିନିଟ୍ ୨୦ ସେକେଣ୍ଡରେ ପହଞ୍ଚିବ । ତାହା ଘଣ୍ଟାକେ ପାଞ୍ଚଶହ ଗ୍ଧଳିଶ ମାଇଲ ବେଗରେ ଅଗ୍ରଗତି କରୁଛି ।"

ମିସେସ୍ ହଷ୍ଟିଂ ଉପରକୁ ମୁହଁ ଟେକି ଗ୍ଧହିଁଲେ ; କହିଲେ, 'ମୁଁ କାନ୍ଦିପାରେ ନାହିଁ । ତାଙ୍କ ମୃତ ଶରୀରକୁ ଯେତେବେଳେ ଘରକୁ ଆଣିଲେ ସେତେବେଳେ ବି ମୁଁ କାନ୍ଦି ନାହିଁ । କତ୍ତୁର ହେବାକୁ ସେ ଆମ ସାଇ ରାସ୍ତା ମୁଣ୍ଡକୁ ଯାଇଥିଲେ—ନିଜ ବାଳକୁ ଟିକଏ ଛଟେଇ ଦେବାକୁ । ରୋଗ ବୈରାଗର ପ୍ରଶ୍ନ ନଥିଲା । ସେଦିନ ସକାଳେ ଜଳଖିଆ ଖାଇଲା ବେଳେ ମୁଁ କହିଲି, 'କ୍ଲାର୍କ୍, ଆଜ ଯଦି ତୁମେ କତ୍ତୁର ନହୁଅ, ତେବେ ମୁଁ ଯେ କ'ଣ କରିବି ତା'ର ଠିକ୍ ଠିକଣା ନାହିଁ ।' ସେ ହସି ହସି ମୋତେ ଚୁମ୍ବନ ଦେବାକୁ ମୁହଁ ବଢ଼ାଇଲେ । ମୁଁ କହିଲି, 'ନା ନା, ତୁମେ ବାଳ ନକଟାଇବା ପର୍ଯ୍ୟନ୍ତ ମୁଁ ତୁମକୁ ଚୁମା ବି ଦେବିନାହିଁ । ସେଇଠାରୁ ସିଧା ସେ ଗଲେ ବାଳ କଟାଇବାକୁ ; କଟାଇଲେ; କିନ୍ତୁ ଫେରିବା ବାଟରେ—''

ସେ ଖୁବ୍ ବ୍ୟସ୍ତ ହୋଇ କାନ୍ଦୁଥାନ୍ତି , ମିଷ୍ଟର୍ ମ୍ୟାକମ୍ ତାଙ୍କ କାନ୍ଧ ଉପରେ ହାତ ପକାଇଲେ ; ତୁନି ତୁନି କହିଲେ, "ତୁନିହୁଅ; ତୁନିହୁଅ ; ତୁମର ଦୋଷ ହୋଇଛି ବୋଲି ବିଚାରିବା ଭୁଲ । ଶୀଘ୍ର ହେଉ ବା ବିଳମ୍ବରେ ହେଉ, ଯେଉଁଠାରେ ହେଲା ସେଠାରେ ନହୋଇ ଅନ୍ୟ ଯେ କୌଣସିଠାରେ ତ ଏଇଆ ହୋଇଥାନ୍ତା ।"

ମିସେସ୍ ହଷ୍ଟିଂ କହିଲେ, "ସେଦିନ ଖୁବ୍ ଗରମ ହୋଇଥିଲା, କିନ୍ତୁ ମୁଁ କୁଆଡ଼ୁ ଜାଣନ୍ତି ଯେ-—''

ମିଷ୍ଟର୍ କହିଲେ, "ତୁମେ ଜାଣି ନଥିଲ କି ମୁଁ ଜାଣି ନଥିଲି । ଆମ ଭାଗ୍ୟରେ ଯାହା ଥିଲା ତା' ହେଲା ।''

ମିସେସ୍ ହଷ୍ଟିଂ କହିଲେ, "କିନ୍ତୁ ମୁଁ ଯଦି—" ମ୍ୟାକମ୍ କହିଲେ, " 'କିନ୍ତୁ' 'ଯଦି' ନିରର୍ଥକ । ଆମର ଏ ଯେଉଁ ଜୀବନ ଦିନ ପରେ ଦିନ ଚାଲିଛି, ଏଥିରେ ଆମର ହାତ ନାହିଁ । ଅଜଣା ଗୋଟାଏ ଶକ୍ତିର ନିର୍ଦ୍ଦେଶରେ ଆମେ ବଞ୍ଚିଥାଉଁ । ଯାହା ଘଟିଯାଉଛି ତା'କୁ ମୁଣ୍ଡ ପୋତି ସହିଯିବା ବ୍ୟତୀତ ଅନ୍ୟ ଗତି ନାହିଁ ।"

ମିସେସ୍ ହଷ୍ଟିଂ ତାଙ୍କଠାରୁ ଟିକିଏ ଘୁଞ୍ଚିଯାଇ ଆଖି ପୋଛିଲେ, ପଚାରିଲେ, "ଆଚ୍ଛା, ପ୍ରିୟଜନ ମରିଯିବା ପରେ ତାଙ୍କ ଶବକୁ ଦେଖିବା କ'ଣ ଭଲ ବୋଲି ତୁମେ ମନେକର ?"

ଅତି ପିଲାଳିଆ ପ୍ରଶ୍ନ ହୋଇପାରେ ; କିନ୍ତୁ ମିଷ୍ଟର୍ ମ୍ୟାକମ୍‌ଙ୍କୁ ଜଣାପଡ଼ିଲା, ଏଥିରେ ଗଭୀର ତତ୍ତ୍ୱ ଅଛି । ସେ କହିଲେ, "ପ୍ରିୟଜନ ମଲା ପରେ ତାଙ୍କ ଶବକୁ ଥରେ ଚାହିଁବା ଭଲ । ତେବେ ଯାଇଁ ତାଙ୍କ ସଙ୍ଗେ ଆମର ସମ୍ପର୍କ ତୁଟିଲା ବୋଲି ହୃଦ୍‌ବୋଧ ହେବ । ଗୋଟିଏ ଅଧ୍ୟାୟ ସରିଲା ବୋଲି ହୃଦ୍‌ବୋଧ ନହେଲେ, ଭବିଷ୍ୟତ୍‌ରେ ଆଉ ନୂଆ ଜୀବନ ଆରମ୍ଭ ହେବା ଯେ ଅସମ୍ଭବ !"

ଏତିକି ବେଳେ ଦୁଆର ଧଡ଼କିନା ଫିଟିଲା । ଯୁବକ ଆସିଷ୍ଟାଣ୍ଟ୍ ମେନେଜର ତାଙ୍କ ଆଗରେ ଠିଆ ହେଲେ । ତାଙ୍କ ଦେହରେ କୋଟ୍ ନଥାଏ, ପ୍ୟାଣ୍ଟ୍ ଉପରେ ଖାଲି ସାର୍ଟଟି ।

ଘରେ ପଶୁ ପଶୁ ସେ କହିଲେ, "୭ ନମ୍ବର ଆକାଶ ଯାତ୍ରା ହେଉଛି । ବିମାନ ଆପଣମାନଙ୍କୁ ଅପେକ୍ଷା କରୁଛି ।"

ମ୍ୟାକମ୍ ପଚାରିଲେ, "ଆଉ ନୂଆ ଖବର କ'ଣ ?"

ସେ ଉତ୍ତର ଦେଲେ, "ଆଉ ଆଠ ମିନିଟରେ ଆମ ଏଠାରେ ଆସି ପହଞ୍ଚିବ । ହଉ, ଆପଣମାନଙ୍କ କୋଟ ପିନ୍ଧନ୍ତୁ । ଜନଷପଣ ଉଡ଼ାଜାହାଜକୁ ଗଲଣି ଭିଡ଼ ।"

ମିଷ୍ଟର ମ୍ୟାକମ୍ ଓ ମିସେସ୍ ହଷ୍ଟିଂ ପରସ୍ପରକୁ ଚାହିଁଲେ । ମ୍ୟାକମ୍ ପଚାରିଲେ, "କ'ଣ, ଯିବା ତ ?"

ମିସେସ୍ ହଷ୍ଟିଂ ପଚାରିଲେ, "ଯିବା ?"

ଦୁହେଁ ଦୁହିଙ୍କ ଆଖିକୁ ଚାହିଁଲେ । ହଠାତ୍ ମିଷ୍ଟର୍ ମ୍ୟାକମ୍, ମିସେସ୍ ହଷ୍ଟିଙ୍କ ହାତକୁ ଉଡ଼ିଲାପରି ଧରି ଧାଇଁ ଧାଇଁ ଉପରମହଲାର ସିଡ଼ି ଓହ୍ଲାଇ ଲମ୍ବା ବାରଣ୍ଡା ଧାଇଁ ଧାଇଁ ପାର ହେଲେ ।

ରେଡ଼ିଓରୁ ଶବ୍ଦ ତାଙ୍କ କାନରେ ବାଜୁଥାଏ—ଆଠ ମିନଟ୍—ସାତ ମିନଟ ଅଧେ । ସମସ୍ତେ ସାବଧାନ—ଆଉ ଛଅ ମିନଟରେ ଜଳ ପ୍ରବାହ ଆମର ଦଗ୍‌ବଳଯ଼ରେ ଦେଖାଦେବ—ପାଞ୍ଚ ମିନଟ୍ ଅଧେ—ଚାରି ମିନଟ୍—

ଉଡ଼ାଜାହାଜ ସେମାନଙ୍କୁ ଅପେକ୍ଷା କରି ରହିଥାଏ ; ଇଞ୍ଜିନ ଚାଲୁ ହୋଇଯାଇଥାଏ ।

ଯୁବକ ଆସିଷ୍ଟାଣ୍ଟ୍ ମେନେଜର ଅଧୈର୍ଯ୍ୟଶ୍ୱାସୀ ହୋଇ କହିଲେ, "ଯାନ୍ତୁ, ଯାନ୍ତୁ, ଭିତରକୁ ଯା'ନ୍ତୁ । ମୋତେ ପୁଣି ଷ୍ଟେସନ ଘରର ଛାତ ଉପରକୁ ଯିବାକୁ ପଡ଼ିବ ।" ସେ ଯାତ୍ରୀ ଦୁହିଁଙ୍କୁ ଉଡ଼ାଜାହାଜର ସିଡ଼ି ଉପରକୁ ସତେ ଯେପରି ଠେଲି ଦେଲେ ଓ ତହିଁରୁ ଉଡ଼ାଜାହାଜର ଖୋଲା ଥିବା ଦ୍ୱାରକୁ ।

ସେ ଉଡ଼ାଜାହାଜର ଦ୍ୱାର ଜୋରସେ ବନ୍ଦ କରି ଆଣିଲା ବେଳକୁ, ଇଞ୍ଜିନ୍ ଗର୍ଜନକରି ଉଠିଲା, ଉଡ଼ାଜାହାଜର ଗତି ବଢ଼ାଇବାକୁ । ପିଚ ରାସ୍ତାରେ ଉଡ଼ାଜାହାଜ ବେଶୀ ବାଟ ଧାଇଁବାକୁ ଆଜି ବେଳନାହିଁ । ହଠାତ୍ କେଉଁ ବିମାନ ପ୍ରାୟ ଶହେ ଗଜ ଭୂଇଁରେ ଚାଲିଲା । ତା'ପରେ ଥରମାଇଲା, ଦୁଇଥର ଏକମାଇଲା । କେତେ ସେକେଣ୍ଡ ଭିତରେ ଦୁମ୍ କରି ଏହା ଭୂଇଁ ଛାଡ଼ି ଉଠିଲା । ସାଙ୍ଗେ ସାଙ୍ଗେ ସମୁଦ୍ର ଉପରେ ମେଘକୁ ଡେଇଁ ଆକାଶକୁ ଚାଲିଗଲା ।

ରେଡ଼ିଓ ପୁଣି କହୁଥାଏ ।

"ଭଦ୍ରବ୍ୟକ୍ତି ଓ ଭଦ୍ରମହିଳାଗଣ ! ସମୁଦ୍ରର ଉତ୍ତୁଙ୍ଗ ଜଳରାଶି ହୋଇ ଆସି ଏ ଦ୍ୱୀପରେ ଆଘାତ କରୁଛି—ପୂର୍ବରୁ କଳନା କରାଯାଇଥିବା ଠିକ୍ ରାତି ଏକ ବାଜେ ପଞ୍ଚତିଶ ମିନଟରେ ।"

ମିଷ୍ଟର୍ ମ୍ୟାକମ୍‌ଙ୍କ ହାତ ଉପରେ ଚାପ ପଡ଼ିଲାପରି ଜଣାପଡ଼ିଲା ।

ମିସେସ୍ ହଷ୍ଟିଂ କହୁଥାନ୍ତି, ତୁମେ ମୋ ହାତକୁ ସେତକବେଳୁ ଧରିଛ । ଆସ୍ତେ ଆସ୍ତେ ନିଜ ହାତକୁ ମ୍ୟାକମ୍‌ଙ୍କ ମୁଠାରୁ ଖସାଇବାକୁ ସେ ଚେଷ୍ଟା କରୁଥାନ୍ତି ।

ମିଷ୍ଟର ମ୍ୟାକମ୍ କହିଲେ, "ମୋର ଜୀବନ ବନ୍ଧମସ୍ତରେ ମଧ୍ୟ ସେକଥା ହେବନାହିଁ ।" ସେ ମିସେସ୍ ହଷ୍ଟିଂଙ୍କ ହାତକୁ ଆଉ ନ ଛାଡ଼ନ୍ତି ।

# ରୂପାର ପ୍ରଜାପତି

ଲୋକଟି କହିବାକୁ ଆରମ୍ଭ କଲା—

"ମୁଁ ମୋ ମା' କଥା କହୁଛି..."

ହଂକଂରେ ଗ୍ରୀଷ୍ମଦିନର ରାତି । ଅନ୍ଧାର ସତେ ଯେମିତି ଚାପିଥାଏ । ମୁଁ ଆଖି ମୁଜି ବସିଲି । ମୁଁ ଗୋଟାଏ କାମରେ ଏଠାକୁ ପଠାହୋଇଥାଏ । ମୋ'ର କାମ— କମ୍ୟୁନିଷ୍ଟ ଚୀନ ଦେଶର ସୀମା ପାର ହୋଇ ଯେଉଁମାନେ ଖସି ଆସିଛନ୍ତି, ସେଇମାନଙ୍କଠାରୁ ତାଙ୍କ ଅଙ୍ଗେ ନଭେଇଥିବା ଘଟଣା ଶୁଣିବା । ଅନ୍ଧାର ନହେଲେ ଏ ଲୋକଟି ମୋ' ପ୍ରକୋଷ୍ଠରେ ପ୍ରବେଶ କରିବ ନାହିଁ ବୋଲି ଜିଦ୍ କରିଥିଲା । ମୁଁ ତା' ମୁହଁ ଦେଖିବି ବୋଲି ସେ ଇଚ୍ଛା କରୁନଥିଲା । ତା'ର ଇଚ୍ଛା, ମୁଁ କେବଳ ତା' ସ୍ୱର ଓ ତା' କହିବା କଥା ମାତ୍ର ଶୁଣିବି ।

ତା' କଥା କେବଳ ଗୋଟିଏ ମଣିଷର କଥା ନଥିଲା, କି ତା' ସ୍ୱର ଖାଲି ତା ସ୍ୱର ନଥିଲା । ସେଇ ମାଧ୍ୟମରେ, ଆଜକାଲିର ଚୀନର ନୂତନ ଆଲୋକରେ ମୁଁ ଗୋଟିଏ ଚିରପରିଚିତ ଦୃଶ୍ୟ ଦେଖିବାକୁ ଲାଗିଲି । ଏଇ ସ୍ୱର ଓ ଭାଷାର ମାଧ୍ୟମରେ ମୋର କଳ୍ପନା ଅତୀତକୁ ରୂପାୟିତ କଲା । ୟାଙ୍ଗ୍‌ସି ନଦୀ କୂଳର ଗୋଟିଏ ଗ୍ରାମ— ଏଭଳି କେତେ ଗ୍ରାମ ମୁଁ ଅତୀତରେ ଦେଖିଛି—ମଧ୍ୟ ଚୀନାର ଏ ଗ୍ରାମଗୁଡିକ ଗୁଡ଼ାଏ ଇଟାକାନ୍ଥ ଓ ଟାଇଲ ଛାତବାଲା ଘରର ସମଷ୍ଟି । ଦରିଦ୍ରଲୋକଙ୍କ ସାନ ମଝିରେ, ଗୋଟିଏ ବଡ଼ ଗେଟ । ତା' ପଛକୁ ଚାରିପଟେ କାନ୍ଥ ଘେରିଆ ହୋଇଥିବା ଗୋଟିଏ କମ୍ପାଉଣ୍ଡ । ସେଇ କମ୍ପାଉଣ୍ଡରେ ଗୌନ୍ତିଆଙ୍କର ଘର । ଗାଁ ବାଲାଙ୍କ ଦୃଷ୍ଟିରେ ସେ ଧନୀ ଲୋକ । ତାଙ୍କର ଏକୁଟିଆ ପ୍ରାୟ ୨୦ ଏକର ଜମି । ଗାଁର ଅନ୍ୟ ଯେ କୌଣସି ଲୋକର ଜମିଠାରୁ ଏହା ପ୍ରାୟ କୋଡ଼ିଏ ଗୁଣ । ମୋତେ ଯେଉଁ ଲୋକଟି କହୁଥାଏ, ଏ ଗାଁର

ଗୌଡ଼ୁଆ ତା'ର ବାପ । ଖାଲି ଯେ ଜମିରେ ସେ ପ୍ରତିଷ୍ଠା ଅର୍ଜିଥିଲେ ତା' ନୁହେଁ, ତାଙ୍କର ବିବାହିତ ପତ୍ନୀଙ୍କ ବ୍ୟତୀତ ରକ୍ଷିତା ବି ଥିଲେ । ବୋଧ-ହୁଏ ଏକାଧିକ—ଅନ୍ତତଃ ଜଣେ ଯେ ଥିଲା, ଏକଥା ନିଃସନ୍ଦେହ । ଅନ୍ଧାରରୁ ସେଇ ସ୍ୱରଟି କହିଲା, "ଏଇ ରକ୍ଷିତା ଜଣକ ଥିଲେ ମୋର ମା' ।" ଗଳ୍ପର ମୂଳ ଏଇଠାରେ । ଏଇ ରକ୍ଷିତାଟି, ଏଇ ଲୋକର ମା । ଅଶ୍ଚତରେ, ଚୀନାମାନଙ୍କର ମା' ପୁଅଭିତରେ ସ୍ନେହବନ୍ଧନ ବଡ଼ ଘନିଷ୍ଠ ଥିଲା । ଶାନ୍ତ ଓ ଧୂଳିପୂର୍ଣ୍ଣ ଦାଣ୍ଡରୁ, ଗାଁ ଦାଣ୍ଡରୁ ଜବରଦସ୍ତି, ସେମାନେ ସୈନିକ କରିବାକୁ ନେଲାବେଳେ ସେମାନେ ଚିତ୍କାର କରନ୍ତି, ''ମା ଲୋ ! ଏ ମା !" ପୁଣି ବିପ୍ଳବର ଲଢ଼େଇରେ ପ୍ରାଣ ଗଲାବେଳେ ସେମାନେ ସେଇପରି ମା'କୁ ବାହୁନି ଡକା ଛାଡ଼ୁଥିଲେ । ଥରେ, ପେକିଂର ବିର୍ ରାସ୍ତାରେ, ଯେତେବେଳେ ଛାତ୍ରମାନେ ସ୍ଥାନୀୟ ଯୁଦ୍ଧପତିଙ୍କ ବିରୁଦ୍ଧରେ ବାହାରି, ସୈନିକମାନଙ୍କ ଗୁଳିରେ ମରିପଡ଼ିଲେ, ସେତେବେଳେ ବି ଶୁଣିଛି, ସେମାନେ ଶେଷ ମୂହୂର୍ତ୍ତରେ 'ମା' 'ମା' ବୋଲି ଡାକ ଛାଡ଼ିଥାନ୍ତି । ଅନ୍ଧାରରେ ସେ ସ୍ୱରଟି କହି ଚାଲିଲା, "ମୋର ଗୋଟିଏ ଭାଇ ଥିଲା । ସେ ମରିଗଲା, ତାକୁ ଯେତେବେଳେ ପାଞ୍ଚବର୍ଷ । ମୋ ଜନ୍ମ ପୂର୍ବର ଏ ଘଟଣା । କିନ୍ତୁ ମୁଁ ଜାଣେ, ମୋ ମା'କୁ ଏଇ ପିଲାଟିର ମୃତ୍ୟୁ କେତେ ବାଧିଥିଲା । ଦେଖିଛି, ସେଇ ଭାଇ-ବୟସର ଅଣ୍ଡିରପିଲାଟିଏ ଦେଖିଲେ, ସେ ତା'ର ସ୍ମୃତିରେ, ଏ ପିଲାଟିକୁ କୋଳକରି ପାଖକୁ ଡାକନ୍ତି ଓ ଖାଇବାକୁ କିଛିଟେଇ ଦିଅନ୍ତି । ମୁଁ ମୋ ମା'ଙ୍କର ପଛ ବୟସର ପିଲା । ମୁଁ ଜନ୍ମ ହେଲାବେଳକୁ ତାଙ୍କୁ ଚାଳିଶ ପାର ହୋଇଯାଇଥାଏ ; ଏତେ ବୟସରେ ବି ପିଲା ଜନ୍ମ କରିବା ଯୋଗୁଁ ମୋ ମା'ଙ୍କର ହୁଏ ଲାଞ୍ଛନା । ତେବେ ବି ସେ ମୋ ପାଇଁ କମ୍ ଯତ୍ନ କରନ୍ତି ନାହିଁ । ମୋର ପିତାଙ୍କର ବିବାହିତା ପତ୍ନୀଙ୍କ ପିଲାଙ୍କର ଯେପରି ଯତ୍ନ ଓ ଆଦର ହୁଏ, ମୋର ମଧ୍ୟ ସେହିପରି ହେବ ବୋଲି ସେ ମୋ ପିତାଙ୍କ ସଙ୍ଗେ ଲଗାଇଥାନ୍ତି । ସେ ସବୁବେଳେ ମୋ ପିତାଙ୍କୁ ଚେତାଇଦେଉଥାନ୍ତି, ପୋଇଲି ବୋଲି ମୋତେ ଯେତେ ହତାଦାର କରି ପଛେ, ମୋ ପିଲା—ତମରି ପୁଅ, ତା'ପ୍ରତି ସେଇପରି ବ୍ୟବହାର କରିବାକୁ ପଡ଼ିବ । ମୋର ମନେ ଅଛି, ମୋ ମା'

ମୋ ପାଇଁ ଖୁବ୍ କରିଛନ୍ତି । ଜୀଇଥିବା ଯାଏଁ ତାଙ୍କ ଋଣ ମୁଁ ପାସୋରି ପାରିବିନାହିଁ ।"

ସ୍ୱର ଥମ୍ଭିଗଲା, ନିଃଶବ୍ଦତା ଖୁବ୍ ଦୀର୍ଘ ଜଣାପଡ଼ିଲା, ଯଦିଓ ପୂରା ମିନିଟିଏ ବି ହେବନାହିଁ ।

"ତା'ପରେ" ସେ କହି ଚାଲିଲା, "କିଛି ଦିନ ପରେ ନୂଆ ଲୋକଙ୍କର ବେଳ ଆସିଲା । ମୋ' ବାପା ଜମି-ମାଲିକ ବୋଲି ଦୋଷୀ ହେଲେ । ଦୋଷ ଦେଲେ ତାଙ୍କ ନିଜ ରୟତମାନେ । ଏମାନଙ୍କ ପାଇଁ ସେ କ'ଣ ନକରିଥିଲେ ! ଫସଲ ଖରାପ ହୋଇଥିବା ବର୍ଷମାନଙ୍କରେ ସେ ଧୂଳିଭାଗ ଛାଡ଼ିଦିଅନ୍ତି ; ସେମାନଙ୍କ ଭିତରେ କଳି ତକରାର ହେଲେ ମୋ ବାପା ଆପୋଷରେ ନିଷ୍ପତ୍ତି କରିଦିଅନ୍ତି । ଏ ସବୁ ସେମାନଙ୍କର ତ ପାସୋରି ଯାଇନଥିବ ! ତେବେ କମ୍ୟୁନିଷ୍ଟ ପାର୍ଟି ଆମ ଗ୍ରାମରେ କର୍ତ୍ତୃତ୍ୱ ବିସ୍ତାର କରନ୍ତେ ପାର୍ଟିମେମ୍ବରଙ୍କର ପ୍ରଧାନ କାମ ହେଲା ଲୋକଙ୍କ ମନରେ ବିଦ୍ୱେଷ ସୃଷ୍ଟି କରିବା । ରୟତମାନେ ଯଦି ଭୂମି ମାଲିକଙ୍କୁ ପ୍ରାଣଦଣ୍ଡ ଦିଆଯାଉ ବୋଲି ଦାବୀ ନକଲେ, ତେବେ ଓଲଟି ସେମାନଙ୍କୁ ଦଣ୍ଡ ଦିଆହେଲା । ଭଲ, ମନ୍ଦ—ସବୁ ଭୂମି ମାଲିକମାନଙ୍କୁ ପ୍ରାଣ ହରାଇବାକୁ ପଡ଼ିଲା । ଲୋକଙ୍କୁ ବୁଝାଇ ଦିଆଗଲା ଯେ, ଦେଶରେ ନୂତନ ଶାସନ ପ୍ରତିଷ୍ଠା କରିବାକୁ ହେବ—ଏମାନେ ଥିବା ପର୍ଯ୍ୟନ୍ତ ତାହା ସମ୍ଭବ ନୁହେ । ମୋ ବାପାଙ୍କ ଦୁଇ ହାତର ଆଙ୍ଗୁଠିରେ ଦଉଡ଼ି ବାନ୍ଧି ଝୁଲେଇ ଦେଲେ ଓ ତାଙ୍କର ଚମଡ଼ା ଛୋଲି ମାରିଦେଲେ । ଏ ଘଟଣା ଘଟିଲା ଆମରି ବଡ଼ ଅଗଣାର ଡେଙ୍ଗା ଡ୍ରାଗନ୍ ଗଛ ତଳେ । ତାଙ୍କ ପରିବାରର ଆମ ସମସ୍ତଙ୍କୁ ଏ ବିଭତ୍ସ ଦୃଶ୍ୟ ଦେଖିବାକୁ ବାଧ୍ୟ କରାଗଲା । ତା'ପରେ ଆମ ସମସ୍ତଙ୍କୁ ଅଲଗା ଅଲଗା କରିଦିଆଗଲା । ମୋର ସାବତ ଭାଇମାନଙ୍କ ପରିବାରମାନଙ୍କୁ ବିଚ୍ଛିନ୍ନ କରି ଏଣେ ତେଣେ ପଠାଇଦିଆଗଲା । ମୁଁ ମୋ ମା' ଓ ସ୍ତ୍ରୀ ଆମ ତିନିଙ୍କୁ ରହିବାକୁ ଦିଆଗଲା ଗୋଟିଏ ମାଟିଘର—ଗୋଟିଏ ବୋଲି ବଖରା । ଆଗେ ଆମ ଦରୁଆନ୍ ଏଥିରେ ରହୁଥିଲା । ମୁଁ କିଛି ଲେଖାପଢ଼ା କରି ଜାଣିଥିବାରୁ, ମୋତେ ଦିଆଗଲା ସମବାୟ ସମିତିର ହିସାବପତ୍ର ଲେଖିବାକୁ । କମ୍ୟୁନ୍ ହେବା ପୂର୍ବରୁ ଏଗୁଡ଼ିକୁ ସମବାୟ ସମିତି କୁହାଯାଉଥିଲା । ନଦୀ ଉପରେ ଯେଉଁ ବଡ଼ ପୋଲ ତିଆରି

ହେବାକୁ ଯୋଜନା ହୋଇଥିଲା, ତାହାର ପାହ୍ରଆମାନଙ୍କ ନିଅଁ ଗାତ ଖୋଳିବାରେ ବି ମୋତେ ପ୍ରତିଦିନ ଅନେକ ଘଣ୍ଟା ଖଟିବାକୁ ହେଉଥିଲା । ସୁନାନ୍‌ଠାରେ ନଦୀର ଦୁଇପାଖେ ଯେଉଁ ଦୁଇଟି ନଗରୀ ଅଛି, ମନେ ପଡ଼ୁଛି ତ ?"

ମୁଁ କହିଲି, "ହଁ, ମନେ ଅଛି । ସେକାଳେ ବି ଏ ଦୁଇଟି ନଗରୀକୁ ସଂଯୁକ୍ତ କରିବା ସକାଶେ ଗୋଟିଏ ପୋଲ ତିଆରି କରିବାର କଳ୍ପନା ଥିଲା । ସେ କଳ୍ପନା ଅନେକ କାଳ କଳ୍ପନାରେ ହିଁ ରହିଥିଲା । ସେଠାରେ ନଦୀର ଓସାର ଯେମିତି, ସ୍ରୋତ ବି ସେମିତି ପ୍ରଖର ।"

ସ୍ୱର ମୋ ସଙ୍ଗରେ ତାଳଧରି କହିଲା, "ହଁ, ସେଠାରେ ନଈ ଖୁବ୍ ଓସାର, ସ୍ରୋତ ବି ଭାରି ପ୍ରଖର । ପୁଣି ନଈକୂଳର ମାଟି କାଦୁଆ, ଖଣ୍ଡିବାରେ ପଥର ପରି ଟାଣ ହୋଇଯାଏ । ଯା ଆଗରୁ କେବେ ମୁଁ ଏପରି କାମ କରିନଥିଲି । ମୋ ସ୍ତ୍ରୀ ମଧ୍ୟ ମୋ ସଙ୍ଗେ ମାଟି ହାଣୁଥାଏ । ସେ ବି ଏଭଳି କାମ କେବେ କରିନଥିଲା । ରାତିରେ ଶୋଇଲା ବେଳକୁ ଆମେ ଏତେ ହାଲିଆ ହୋଇ ଯାଇଥାଉଁ ଯେ, ପଦେ କଥାବାର୍ତ୍ତା ହେବାକୁ ବି ବଳ ନଥାଏ । ଦିନ ତମାମ ମୋ' ମା ଘରେ ଏକୁଟିଆ ରହିଥାନ୍ତି । ଯା ଭିତରେ ସଂସାର କାହିଁକି ଓଲଟିଗଲା, ସେ କିଛି ବୁଝିପାରୁନଥାନ୍ତି । ବାପାଙ୍କ ମରଣ ଆଖିରେ ଦେଖିଲା ଦିନୁଁ ତାଙ୍କର ମନ ଏକାବେଳକେ ବିଗିଡ଼ି ଯାଇଥାଏ । ମସ୍ତିଷ୍କ ଗୋଳିଆ ହୋଇଯାଇଥାଏ । ସ୍ୱଚ୍ଛ ପାଣିକୁ ଘାଣ୍ଟିଦେଲେ ଯେପରି ହୁଏ, ଠିକ୍ ସେହିପରି ।"

"ହଁ, ଅବସ୍ଥାଟା ମୁଁ ବୁଝି ପାରୁଛି," ମୁଁ କହିଲି । ସେ କହିଥାଏ, "ସ୍ମୃତି ନଷ୍ଟ ଓ ଚିନ୍ତାଧାରା ବିକୃତ ।"

ସ୍ୱର ପୁଣି ଆରମ୍ଭ ହେଲା, "ସ୍ଥିର ଶାନ୍ତ ଓ ଧୀର, ଆମର ଏକମାତ୍ର ସମସ୍ୟା ହୋଇଥାଏ ଖାଦ୍ୟ । ପେଟପୂରା ଖାଇବାକୁ ମିଳେନାହିଁ । ମୋ ମା, କାମ କରିପାରୁ ନଥିବାରୁ ତାଙ୍କୁ ଖାଦ୍ୟ ପଡ଼ି ମିଳୁନଥାଏ । ତେଣୁ ମୁଁ ଓ ମୋ ସ୍ତ୍ରୀ ବାଧ୍ୟ ହୋଇ ଆମ ପଡ଼ରୁ ତାଙ୍କୁ ଭାଗ ଦେଉଥାଉ । ଯାହା ଖାଉ, ସେଥିରେ କାହାର ପେଟ ପୂରୁ ନଥାଏ । ସବୁବେଳେ ଆମ ପେଟରେ ଭୋକ ଥାଏ । ପେଟ କାହିଁକି ପୂରୁ ନାହିଁ ତା'ର କାରଣ ମୋ ମା ବୁଝି-ପାରୁନଥାନ୍ତି । ସେ କହୁଥାନ୍ତି, 'ମୋ ପାଇଁ ଖଣ୍ଡେ ଘୁଷୁରି ମାଂସ ଭୂ ତ

କେବେ କିଣି ଆଣୁନାହୁଁ !' ଭଲ ଖାଇବା ତାଙ୍କର ଅଭ୍ୟାସ ହୋଇ-ଯାଇଥିଲା । ପ୍ରତ୍ୟହ ଘୁଷୁରି ମାଂସ, ନହେଲେ ମାଛ, ଆଉ ଯେତେ ଇଚ୍ଛା ସେତେ ଭାତ । ଏଇଆ ଥିଲା ଆମର ଖାଦ୍ୟ । ଆଜି ସେ ସବୁ ଦେଖି-ବାକୁ ସ୍ୱପ୍ନ—ଏବେ ମାସକୁ ଥରେ ଘୁଷୁରି ମାଂସ ମିଳେ ଯେ, ସେ ଅତି ଟିକିଏ । ସେତକ ସବୁ ଆମେ ମାଙ୍କୁ ଦେଇଦେଉଁ ; ସେ ବା କେତେ ? ପେଟ ପୂରେନାହିଁ । ସେ ଭାବୁଥାନ୍ତି ଆମର କୁଣ୍ଠିତପଣ ଯୋଗୁଁ ଏଭଳି ଅଭାବ ହେଉଛି । ଯେତେ କହିଲେ ବି, ତାଙ୍କୁ ଆମେ ବୁଝାଇ ପାରୁ ନଥାଉଁ ଯେ, ଖାଇବାକୁ ପଡ଼ି ଯେତକ ମିଳୁଛି ତହିଁରୁ ଅଧିକ ସଂଗ୍ରହ କରିବା ଅସମ୍ଭବ । ସେ ପ୍ରତିବାଦ କରନ୍ତି । ଖାଦ୍ୟର ଯଦି ଅଭାବ ହେଉଛି, ଆମେ ଗୋଟିଏ ଗ୍ଲେଟିଆ ଘୁଷୁରି ଛୁଆ ନକିଣୁଥାଇଁ କାହିଁକି ? ଆମେ ତାକୁ ଖାଇବା ପିଇବାକୁ ଦେଇ ବଢ଼ାନ୍ତେ । ସେ ବଡ଼ ହେଲେ ତା'କୁ ଖା'ନ୍ତେ । ଆଗେ ଏପରି କରିବା ଚଳୁଥିଲା ।"

ମୁଁ କହିଲି, "ମୁଁ ଜାଣେ । ସେ କାଳରେ ପ୍ରତି କୃଷକ ଘୁଷୁରି ପାଳୁଥିଲେ । ପ୍ରତ୍ୟେକଙ୍କର କୁକୁଡ଼ା ଥିଲେ । ପ୍ରତ୍ୟେକେ ମଇଁଷିଟାଏ ନ ହେଲେ ବା ବଳଦଟାଏ ରଖୁଥିଲେ ।"

ସ୍ୱରଟି କହିଲା, "ସେ ସବୁ ଏ ଅଞ୍ଚଳରେ ଲୋକଙ୍କ ହାତରୁ ଛଡ଼ାଇ ନଆହୋଇଛି । ଆଜିକାଲି, କ'ଣ ହୋଇଛି ବୁଝିଲେ ନା, ସମସ୍ତଙ୍କର ସବୁ ତା ଅର୍ଥ ଆମ ଭାଗରେ କିଛି ପଡ଼ୁନାହିଁ । ଆମେ ଯାହା କମଉଛୁ ସେତକ ଆମକୁ ପୂରା ମିଳୁନାହିଁ । ସେଥିରୁ କେତେକାଂଶ ଆମ ପାଇଁ ଭବିଷ୍ୟତକୁ ଜମା ରହୁଛି, କିନ୍ତୁ କେଉଁଠି ରହୁଛି ସେ କଥା ଆମକୁ ଅଜଣା । ଜମିରେ ଖଟୁଥିବା କୃଷକ, ଯେଉଁମାନେ ପୂର୍ବେ ଆମର ରଇତ ଥିଲେ, ସେମାନ-ଙ୍କର ଖୁବ୍ ଆଶା ଥିଲା, ଜମି ମାଲିକମାନେ ମରିଯିବା ପରେ ସେମାନଙ୍କର ଅବସ୍ଥା ବଦଳିବ । ଅଧିକ ପାଇବା ପରିବର୍ତ୍ତେ, ସେମାନଙ୍କର ଯାହା କିଛି ଥିଲା ସେତକ ତାଙ୍କଠାରୁ ଛଡ଼ାଇ ନଆଗଲା । ଅଧିକା ପାଇବା ଦୂରେ ଥାଉ, ସେମାନଙ୍କର ହୋଲି ଏବେ ଆଉ କିଛି ରହିଲା ନାହିଁ । ତାଙ୍କଠାରୁ ସବୁ ଗଲା କିନ୍ତୁ ପ୍ରତିବଦଳରେ କିଛି ମିଳିଲା ନାହିଁ ।"

ଏଇଠାରେ ସ୍ୱର ହଠାତ୍ ବନ୍ଦ ହୋଇଗଲା, ଖାଲି କାଶ ଶୁଣାଗଲା । କିଛିକ୍ଷଣ ପରେ ସେ କହିଲା, "ମୁଁ କୌଣସି ପ୍ରକାର ଆପତ୍ତି ବା ପ୍ରତିବାଦ କରୁଛି ବୋଲି ଆପଣ ମନେ କରନ୍ତୁ ନାହିଁ ।"

ମୁଁ କହିଲି, "ନା, ମୁଁ ସେପରି ମନେ କରୁନାହିଁ ।"

ପୁଣି ସ୍ୱର ଶୁଭିଲା, "ଆପତ୍ତି କରିବାରେ ଲାଭ କଣ ? ଜୋର ପବନ ଆଗରେ କାଣ୍ଡଶର ଗଛ ନଇଁ ପଡ଼ିଲା ପରି ଏତେବେଳେ ମୁଣ୍ଡ ପୋତି ରହିଯିବା ଆମ ପକ୍ଷରେ ଏକମାତ୍ର ଶ୍ରେୟ । ଖାଲି ଆଶା ଏତିକି, ଏ ଝଡ଼ ଝଞ୍ଜା ସମସ୍ତବେ ଥମିଗଲେ, ପୁଣି ସିଧାହୋଇ ମୁଣ୍ଡ ଟେକି ଉଠିବୁ ।"

ମୁଁ କହିଲି, "ଏ ଝଡ଼ ଦିନେ ନା ଦିନେ ନିଶ୍ଚୟ ଥମିବ । ତୁମେ ତୁମର କଥା କହି ଚାଲ । ତୁମେ ଏତେବେଳେ ଝଡ଼ର ଗତି ରୋକିବାକୁ ବାହାରି ଯାଇଁ ପଡ଼ିବ, ତାହା ମୁଁ ଚାହେଁନାହିଁ ।"

ପୁଣି ସ୍ୱର କହିଲା, "ଦିନେ ଏପରି ବେଳ ଆସିଲା ଯେ, ଆମ ରହିବା ଘର ଖଣ୍ଡିକ ବି ଆମଠାରୁ ଛଡ଼ାଇ ନିଆଗଲା ।"

ପୁଣି ଦୀର୍ଘ ନୀରବତା । ନୀରବତା ଭଙ୍ଗ କରି ପୁଣି ଯେତେବେଳେ ସ୍ୱର ଶୁଭିଲା, ତାହା ଖୁବ୍ ଧୀର ଓ ବିଷାଦଭରା ଜଣାଗଲା । "ମୁଁ ଖୋଲି ଖୋଲି କହୁଛି, ଘର ଖଣ୍ଡି ଯଦି ଆମ ହାତରୁ ଯାଇନଥାନ୍ତା ତେବେ ଆମ ଅବସ୍ଥା ଆହୁରି ଖରାପ ହୋଇଥାନ୍ତା । ଆମକୁ ସବୁବେଳେ ବଡ଼ ସତର୍କ ହୋଇ ରହିବାକୁ ପଡ଼ୁଥିଲା । ମୁଁ ଜଣେ ଭୂମ୍ୟଧିକାରୀଙ୍କ ପୁତ୍ର ବୋଲି ସମସ୍ତଙ୍କର ମୋ ଉପରେ ସନ୍ଦେହ ଥାଏ । କୃଷୀ ଓ ରଯ୍ୟତଙ୍କ ପିଲାଙ୍କୁ କମ୍ୟୁନିଷ୍ଟ ମତବାଦରେ ତାଲିମ୍ କରି ଆମ ଉପରେ ରଖା ଯାଇଥାଏ । କମ୍ୟୁନିଷ୍ଟ ମତବାଦ ବ୍ୟତୀତ ସେମାନଙ୍କୁ ଆଉ କିଛି ଜଣା ନଥାଏ । ସାଧାରଣ ପାଠଶାଠ ସେମାନେ କିଛି ପଢ଼ିନଥିଲେ । ସେମାନଙ୍କୁ ଏଥିପାଇଁ ମୁଁ ଦୋଷୁନାହିଁ । ଆମ ସମସ୍ତଙ୍କ ପରି ସେମାନଙ୍କର ବି ନିଜର ହୋଇ କିଛି ନଥାଏ । ଏପରି ଅବସ୍ଥାରେ ମୁଁ ଯଦି ଅବାଟରେ ଟିକିଏ ବି ଗୋଡ଼ ପକାଇଥାନ୍ତି, ମୋର କଥା ସରିଥାନ୍ତା ; ମୋ ସଙ୍ଗେ ମୋର ସ୍ତ୍ରୀ ଓ ମା ମଧ୍ୟ ମରିଥାନ୍ତେ । ଆଦୌ ଅବାଟକୁ ନଯିବା ଏଥିପାଇଁ ସବୁବେଳେ ମୁଁ ଜାଗ୍ରତ ଥାଏ । କିନ୍ତୁ ମୋର ବୁଢ଼ୀ ମା ନୂଆ ଅମଳରେ ବାଟ କ'ଣ ଅବାଟ କ'ଣ କିଛି ନଜାଣି, ଥରକୁ ଥର ମୋତେ ବିପଦରେ ପକାଉଥାନ୍ତି । ଆମେ କାମରେ ଯାଇଥିବା ବେଳେ, କୌଣସି ଯୁବକ ହାକିମ ଆମକୁ ସନ୍ଦେହ କରି ଆମ ଘରକୁ ତଦାରଖ କରିବାକୁ ଆସିଲେ, ମୋ ମା' ତାଙ୍କୁ

ପୂର୍ବେ ଯେପରି କରୁଥିଲେ ସେପରି ଅତିଥି ବୋଲି ଆଦର କରି ବସାନ୍ତି, ଓ ଆମକୁ ପଡ଼ି ମିଳିଥିବା ସାମାନ୍ୟ କେତେ ଆଉନ୍‌ସ ଘି ପକାଇରେ ଘି' କରି ତାଙ୍କୁ ଖୁଆନ୍ତି । ଥରେ ଥରେ, ଆମକୁ ଦିନକେ ବକ୍ତେ ଖାଇବାକୁ ଯେଉଁ ଭାତ ମୁଣ୍ଡାକ ମିଳିଥାଏ ସେଥିରେ ପାଣି ପୂରାଇ ତାଙ୍କୁ ତୋରାଣି ଟିକିଏ ପିଅ ବୋଲି ଦିଅନ୍ତି । ଏହା ଫଳରେ ଅଫିସରଙ୍କର ସନ୍ଦେହ ହୁଏ ଯେ, ମୁଁ ଆମ ପ୍ରୟୋଜନରୁ ଅଧିକ ସଂଗ୍ରହ କରି ଜମାଇ ରଖିଛି । ନହେଲେ ଆମ ପେଟ ପୂରି ଅତିଥି ଚର୍ଚ୍ଚା କରିବାକୁ ଭାତ ବା ଘି' ବଳନ୍ତା କିପରି ? ଏ ଅବସ୍ଥାରେ ମୁଁ ଓ ମୋର ସ୍ତ୍ରୀ ଥଳକୂଳ ନପାଇ ଦୁଃସାହସିକ ଭାବେ ଗୋଟାଏ ଅନ୍ୟାୟ କରିଦେବୁ ବୋଲି ବିଚାରିଥିଲୁ । ଯଦି ଘରଟି ଆମଠାରୁ ଛଡ଼ାଇ ନିଆଯାଇ ନଥାନ୍ତା ଓ ମା' ଯେପରି ସନ୍ଦେହ ସୃଷ୍ଟି କରି ଚାଲିଥିଲେ ସେଇପରି ଚାଲିଥାନ୍ତେ, ତେବେ ଖୁବ୍ ସମ୍ଭବ, ଆମେ ଆମର କର୍ତ୍ତବ୍ୟ ଭୁଲି ମା'କୁ ହତ୍ୟା କରିଥାନ୍ତୁ । ତାଙ୍କ ପ୍ରତି ରାଗରେ ନୁହେଁ, ଆମକୁ ବିପଦରୁ ବଞ୍ଚାଇବାକୁ । ଏଭଳି ଦୁଷ୍କାର୍ଯ୍ୟ ଆମକୁ ହୁଏତ କରିବାକୁ ପଡ଼ିଥାନ୍ତା ; ଅନ୍ୟମାନେ ଏଭଳି କରିଥିବାର ମୁଁ ଜାଣେ ।"

ମୁଁ କହିଲି, "କି ଅବସ୍ଥାରେ ପଡ଼ି ତୁମେ ଏଭଳି କରିଥାନ୍ତ, ମୁଁ ତାହା ବୁଝିପାରୁଛି । କିନ୍ତୁ ପୂର୍ବ ଅମଳରେ ଏଭଳି କରିବା ଅସମ୍ଭବ ହୋଇଥାନ୍ତା । ଯେ କୌଣସି କାରଣ ଥାଉ ପଛେ, ମା' ବାପଙ୍କୁ ହତ୍ୟା କରିଥିବା ପୁଅକୁ ଲୋକେ ରାକ୍ଷସ ବୋଲି ମନେ କରନ୍ତେ ; ଗାଁ ବାଲା ଏଭଳି ପୁଅକୁ ଢେଲା ମାରି ମାରି ମାରିଦିଅନ୍ତେ ।"

ସ୍ୱର ପଚାରିଲା, "ସତେ, ଏଭଳି ସମୟ କେବେ ଥିଲା ? ମୁଁ ସେ ବେଳ କଥା ପାସୋରି ସାରିଲିଣି । ଏକୁଟିଆ ମୁଁ ନୁହେଁ, ଆମେ ସମସ୍ତେ ପାସୋରିଦେଲୁଣି । ଏବକୁ କମ୍ୟୁନ୍ ଆମର ଭାଗ୍ୟବିଧାତା । ନୂଆ କମ୍ୟୁନ-ଘର ତିଆରି ସରିବା ପର୍ଯ୍ୟନ୍ତ ଆମକୁ ସେ ମାଟିଘରେ ରହିବାକୁ ଦିଆଯାଇଥିଲା, କିନ୍ତୁ ଆମ ବାସନ କୁସନ ଆମଠାରୁ କାଢ଼ି ନିଆଯାଇଥାଏ । କେନ୍ଦ୍ର ଖାଇବାଘରେ ଆମ ସମସ୍ତଙ୍କୁ ଖାଇବାକୁ ବାଧ୍ୟ କରାଗଲା । ସମୂହ ପୋଷେଇଶାଳାରେ କାମ କରୁଥିବା ଛ'ଜଣ ପୁଝାରୁଣୀଙ୍କ ଭିତରେ ମୋ ସ୍ତ୍ରୀ ଜଣେ ହୋଇଥାଏ । ଏତେବେଳକୁ ମୋର କାମ ପ୍ରଥମ ଅପେକ୍ଷା ଢେର ଅଧିକ କଷ୍ଟକର ହୋଇଥାଏ—ସକାଳେ ଅଫିସରେ କାମ କରିବାକୁ

ପଡ଼େ, ଓପରଓଳା ମାଟିଖୋଳା । ରାତ୍ତିରେ ଏଗାରଟା ପର୍ଯ୍ୟନ୍ତ କମ୍ୟୁନ୍ ମିଟିଂରେ ଯୋଗ ଦେବାକୁ ପଡ଼େ । ସେ ସବୁ କଥା ଛାଡ଼ ମୁଁ ଖାଲି ଖାଇବା କଥା କହୁଛି । ମୋ ସ୍ତ୍ରୀ ଓ ମୋତେ ମିଲ୍-ଟିକଟ ମିଳୁଥାଏ ; ମୋ ମା କାମ କରି ପାରୁନଥାନ୍ତି ବୋଲି ତାଙ୍କୁ ଟିକଟ ମିଳେନାହିଁ । ମୁଁ ଏ ବିଷୟରେ ନିବେଦନ କରିବାକୁ ଆମ କମ୍ୟୁନ୍ର ଅଧ୍ୟକ୍ଷଙ୍କ ପାଖକୁ ଗଲି । ତାଙ୍କୁ ବୟସ ମାତ୍ର ଏକୋଇଶ; ସେ ଆମ ଗାଁ ଭଣ୍ଡାରିର ପୁଅ । ସେ ନୂଆ କରି କମ୍ୟୁନିଷ୍ଟ ପାର୍ଟିର ମେମ୍ବର ହୋଇଥାନ୍ତି; ଆମ ଜୀବନ ତାଙ୍କର ହାତରେ ଥାଏ । ପ୍ରତ୍ୟେକ କମ୍ୟୁନ୍ର ଅଧ୍ୟକ୍ଷ ବୟସରେ ଟୋକା ଓ ସମସ୍ତେ ଗୃହହୀନ ମୂଲିଆ ପରିବାରର । ତାଙ୍କ ଓପରବାଲାଙ୍କୁ ତାଙ୍କର ମହା ଭୟ ଓପରବାଲାଙ୍କୁ ସନ୍ତୁଷ୍ଟ କରିବାକୁ ସେମାନେ ଅତି ଉତ୍ସୁକ ହୋଇଥାନ୍ତି ।

"ଆମ ଅଧ୍ୟକ୍ଷ କହିଲେ, 'ତୁମ ମା'ଙ୍କୁ ଅଲବତ୍ କାମ କରିବାକୁ ପଡ଼ିବ ।' ମୁଁ ତାଙ୍କୁ କହିଲି ଯେ, ମୋ ମା'ଙ୍କ ମୁଣ୍ଡ ବିଗିଡ଼ି ଯାଇଛି । ସେ କହିଲେ, 'ଏଭଳି ଲୋକ ପାଇଁ ବି ଆମର କାମ ଅଛି । ଶିଶୁମାନଙ୍କୁ ପାଳିବା ପାଇଁ ଯେଉଁ ଘର ଅଛି ସେଠାରେ ସେ କାମ କରିପାରିବେ ।' ମୁଁ ମା'ଙ୍କୁ ନେଇ ସେଠାରେ ଛାଡ଼ି ଆସିଲି । ଏଥର ତାଙ୍କୁ ମିଲ୍ ଟିକଟ ମିଳିଲା । ଖାଦ୍ୟ ବିଷୟରେ ଆମର ଅବସ୍ଥା ପୂର୍ବାପେକ୍ଷା ଭଲ ହେଲା । ମୋ ସ୍ତ୍ରୀ ପୂଷ୍ଟାରୁଣୀ ହୋଇଥିବାରୁ, ରାନ୍ଧିବାବେଳେ ସୁବିଧା ଦେଖି ଗୁଣ୍ଡେ ଦି' ଗୁଣ୍ଡା ପାଟିକୁ ପକାଇ ଦେଇ ପାରୁଥିଲା । ସବୁ ପୂଷ୍ଟାରୁଣୀ ଏମିତି କରୁଥିଲେ । ଘ୍ୟା ବାଦ୍ ବେଳେ ବେଳେ ସେ ମୋ ପାଇଁ ମୁଠେ ଦି' ମୁଠା ଭାତ ପତ୍ରପତ୍ରରେ ମୋଡ଼ି ପକେଟରେ ଲୁଚେଇ ରଖି ପାରୁଥିଲା ।

"ଏ କାଳରେ ଏଇଭଳି ଚଳିବା ଆମକୁ ବେଶ୍ ଭଲ ହେଉଥିଲା । ଶିଶୁ ଭବନଟା ଆମର ପୁରୁଣା ବଡ଼ ଘରେ ନହୋଇଥିଲେ ଆମର କିଛି ଖରାପ ହୋଇନଥାନ୍ତା । ଏ ଘରେ ମୋ ମା'ଙ୍କର ଜାଣ ଜୀବନ କଟିଥିଲା । ତାଙ୍କ ମସ୍ତିଷ୍କ ଏପରି ବିକୃତ ହୋଇ ଯାଇଥିଲା ଯେ, ସେ ଦିନର କଥା ତାଙ୍କର ସବୁ ମନେ ପଡ଼ିବା ଅସମ୍ଭବ । କିନ୍ତୁ ଅର୍ଦ୍ଧବିସ୍ମୃତ ଅଭ୍ୟାସ ବଳରେ ସେ ଏ ଘରର ଅନ୍ଧିକନ୍ଧି ଜାଣି ଯିବା ଆସିବା କରିପାରୁଥିଲେ । ଅବଶ୍ୟ ଏତେବେଳକୁ ଘରର ରୂପ ଅନେକ ବଦଳିଯାଇଥିଲା । ଅଗଣାର ଗଛଗୁଡ଼ିକ କଟା ହୋଇଥିଲା ; ବଗିଚ୍ଚଗୁଡ଼ିକ ନଷ୍ଟଭ୍ରଷ୍ଟ ହୋଇ

ଯାଇଥିଲା । ଆମ ହାତରୁ ଯିବା ପରେ ଏ ଘର ନାନା କାମରେ ବ୍ୟବହୃତ ହୋଇଥିଲା । ଆଗ ହେଲା କମ୍ୟୁନିଷ୍ଟ ପାର୍ଟିର ସଦର ଅଫିସ ; ତା' ପରେ ହେଲା କୋଟ୍ ବାଉଁଶିଆ ଛତାର କାରଖାନା , ତା' ପରେ ହେଲା ସୈନ୍ୟଙ୍କ ଗୁଦାମ । ସବଶେଷରେ ଏବେ ହୋଇଥାଏ ଶିଶୁଭବନ । ବର୍ତ୍ତମାନ ଏ ଘରକୁ ଦେଖି କେହି ଜାଣିପାରିବେ ନାହିଁ ଯେ, ଦିନେ ଏହା ଆମ ମଫସଲ ଢଙ୍ଗରେ ସୁନ୍ଦର ବିଳାସଭବନ ହୋଇଥିଲା । ଆପଣ ଏଭଳି ଘର ଦେଖିଥିବେ ତ ?"

ମୁଁ କହିଲି, "ଅନେକ ଦେଖିଛି । ମଫସଲ ଢଙ୍ଗରେ ସେଗୁଡ଼ିକ ବେଶ୍ ସୁନ୍ଦର । ଯେଉଁ ପରିବେଶରେ ସେଗୁଡ଼ିକ ଅବସ୍ଥିତ ତା'ସଙ୍ଗେ ସେଗୁଡ଼ିକ ବେଶ୍ ଖାପ୍ ଖାଇଥାନ୍ତି । ପୁରୁଷାନୁକ୍ରମେ ଏକ ପରିବାରର ବାସସ୍ଥାନ ହୋଇ ସେଗୁଡ଼ିକ ନିଜ ରୁଚିକୁ ଗ୍ରହି ଗଢ଼ି ଉଠିଥାନ୍ତି ।

ସାମାନ୍ୟ କମ୍ପିତ ହୋଇ ସ୍ୱର କହିଲା, "ଆମ ଘରଟି ଠିକ୍ ସେଇପରି ଗଢ଼ିଉଠିଥିଲା । ଆଗରୁ କହିଛି, ମୋ ମା' ଭଲ କରି ମନେ ରଖି ନଥିଲେ ହେଁ, ଏ ଘରକୁ ପୂରା ପାସୋରି ନଥାନ୍ତି । ତାଙ୍କ ବିକୃତ ମସ୍ତିଷ୍କରେ ସେ ବର୍ତ୍ତମାନ ଠିକଣା କରିଥାନ୍ତି ଯେ, ଅବସ୍ଥାଚକ୍ରରେ ପଡ଼ି ସେ ଏ ଘରର ସାଆନ୍ତାଣୀ ହେବାରୁ ଖସି, ଏଠାରେ ସମସ୍ତଙ୍କଠାରୁ ହୀନ ରୁକଣୀ ହୋଇଛନ୍ତି; ଶିଶୁଭବନରେ ପିଲାମାନଙ୍କୁ ଦେଖି ସେ ମନେ କରୁ-ଥାନ୍ତି, ସେମାନେ ସମସ୍ତେ ଆମରି ଘରର ପିଲା । ଶିଶୁଭବନର ଅଧ୍ୟକ୍ଷଙ୍କର ପଛେ ପଛେ ଯାଇ ସେ ସବୁବେଳେ କହୁଥାନ୍ତି, 'ଏଘରେ ଦିନେ ମୁଁ ସାଆନ୍ତାଣୀ ହୋଇଥିଲି, ଆଜି ଏଠାରେ ରୁକଣୀ ହୋଇପାରିବି ନାହିଁ ।' ତାଙ୍କର ଦାବୀ, ତାଙ୍କୁ ଉପଯୁକ୍ତ ସମ୍ମାନ ଦିଆଯିବ; ଦୁଆର ପାଖରେ ଗୋଟିଏ ଚଉକିରେ ତାଙ୍କୁ ବସିବାକୁ ଦିଆଯିବ, ଏବଂ ରୁକଣୀ ତାଙ୍କ ପାଇଁ ଚା' ଆଣିଦେବ ।

"ଅଧ୍ୟକ୍ଷା ଜଣେ ଯୁବତୀ, ଜଣେ ଚଷାର ଝିଅ । ମୋ ମା'ଙ୍କ କଥା ଶୁଣି ତାଙ୍କର ଧୈର୍ଯ୍ୟଚ୍ୟୁତ ହୁଏ । ଭୟ ବି ହୁଏ । ମୋ ମା' ଭୂମି-ମାଲିକ ବଂଶର ଲୋକ ବୋଲି ତାଙ୍କର ବିରକ୍ତି । ଭୟର କାରଣ, ଯଦି ବୁଢ଼ୀଟା ତା' ନିଜ କାମ ଠିକ୍ ଭାବରେ ନକରେ, ତେବେ ତାଙ୍କ ନିଜ ମୁଣ୍ଡରେ

ଦଣ୍ଡ ପଡ଼ିବ । ଏଭଳି ଅଥରପୀ ବୁଢ଼ୀଟାକୁ ତାଙ୍କର ସହକର୍ମୀ ଭାବରେ ନିଯୁକ୍ତ କରିଥିବାରୁ ସେ କର୍ତ୍ତୃପକ୍ଷଙ୍କ ଉପରେ ଚଢ଼ିକରି ଥା'ନ୍ତି । ତାଙ୍କର ପ୍ରକୃତି ନିଷ୍ଠୁର ଥିଲା ବୋଲି ମୁଁ କହିପାରିବି ନାହିଁ—କେବଳ ସେ ଅସହିଷ୍ଣୁ, ଖିରୁ ଥିଲେ । ଆଜିକାଲି ସବୁ ଯୁବକ ଯୁବତୀଙ୍କର ଅବସ୍ଥା ସେଇଆ । ସେମାନଙ୍କୁ ମାତ୍ର ମକଚି ଆଗକୁ ଚାଲିବା ପାଇଁ ବାଧ୍ୟ କରାଯାଉଛି । କିନ୍ତୁ ଯାହା ବା କାମ ହେଉଛି, ତା' ଫଳରେ ସାଧାରଣ ଲୋକଙ୍କର ଅବସ୍ଥା ଅଧିକ ଖରାପ ହେଉଛି ।

ପୁଣି ଘର୍ଘ ନୀରବତା ।

ମୁଁ କହିଲି, "ଭାଇ ! ବହୁତ ବିଳମ୍ବ ହେଲାଣି ।"

ସାଙ୍ଗେ ସାଙ୍ଗେ ପୁଣି କଥା ଚାଲିଲା ।

"ଏ ସବୁ ସତ୍ତ୍ୱେ, ଆମେ ସୁରୁଖୁରୁରେ ଚାଲିଯାଆନ୍ତୁ । ଅଭାଗ୍ୟକୁ, ଦିନେ ପ୍ରାୟ ପାଞ୍ଚବର୍ଷ ବୟସର ଗୋଟିଏ ପିଲାକୁ ଶିଶୁଭବନକୁ ଅଣାଗଲା । ସେ କାନ୍ଦୁଥାଏ । ପିଲାଟି ଭାରି ରୋଗଣା, ଶୁଖିଶାଖି କଣ୍ଟା ଲାଗିଥାଏ । ମୋ ମା' ତାକୁ ଦେଖିବା ମାତ୍ରେ, ତାଙ୍କର ଯେଉଁ ପିଲାଟି ମରିଥିଲା ତାକୁଇ ମନେ ପକାଇଲେ । ପିଲାଟିକୁ ସେ ଭାରି ସୁଖ ପାଇଲେ । ଏଇ ହେଲା ତାଙ୍କର ବଡ଼ ଅପରାଧ । କାହାକୁ ସୁଖ ପାଇବା ଆମ ଦେଶରେ ମନା । ଆମକୁ ବତାଇ ଦିଆଯାଇଥାଏ ଯେ, ସ୍ନେହ ହେଉଛି ମଧ୍ୟବିତ୍ତ ଶ୍ରେଣୀର ଏକ ଦୁର୍ବଳତା, ଯାହା ଯୋଗୁଁ ଶିଶୁଭବନର ସମସ୍ତ ସଦୁଦ୍ଦେଶ୍ୟ ପଣ୍ଡ ହୋଇଯିବ । ପିଲାଙ୍କୁ ଏପରି ବଢ଼ାଇବାକୁ ହେବ ଯେ, ସେମାନେ କେବଳ ତାଙ୍କ ଗୋଷ୍ଠୀ କଥା ଭାବିବେ ; କୌଣସି ବ୍ୟକ୍ତିକଥା ଭାବିବେ ନାହିଁ । ଏପରି କି, ନିଜ କଥା ବି ଭାବିବେନାହିଁ । ପିଲାମାନେ ଶିଶୁ-ଭବନରେ ଚାରିବର୍ଷ କଟାଇ ସାରିଲା ବେଳକୁ ସେମାନେ ଯାହାକୁ କହନ୍ତି ସମୂହଜୀବନ, ସେଥିରେ ତାଲିମ ହୋଇଯାଇଥିବେ । ପିଲା ମନକୁ ଏଭଳି ଜୀବନରେ ତାଲିମ କରିବା ସହଜ ; କିନ୍ତୁ ବେଳେବେଳେ ଏମାନେ ରାତିରେ ମା'କୁ ଖୋଜି କାନ୍ଦନ୍ତି । ଏ ସମସ୍ୟାର ସମାଧାନ କିପରି ହେବ ଏପର୍ଯ୍ୟନ୍ତ ସ୍ଥିର ହୋଇନାହିଁ । ବଡ଼ ପିଲା ଏପରି ମମତା ଦେଖାଇଲେ, ତା'କୁ ଦଣ୍ଡ ଦିଆଯାଇପାରେ । କିନ୍ତୁ ସାନ ପିଲାଙ୍କ ମନରୁ ମମତାର ଚେର ଉପୁଡ଼ିବ କିପରି ? ଏପର୍ଯ୍ୟନ୍ତ ଏ ସମସ୍ୟାର ସମାଧାନ କରିବାକୁ

ବ୍ୟବସ୍ଥା ହୋଇଛି—ସମସ୍ତଙ୍କୁ କାମରେ ଲଗାଇ ରଖିବାଦ୍ୱାରା । ତିନବର୍ଷିଆ ପିଲାଙ୍କୁ ଘାସ ଉପାଡ଼ିବାରେ ଲଗାଯାଏ ; ତହିଁରୁ ବଡ଼ ପିଲେ ଟେକାପଥର ବୁହାନ୍ତି । ତାଙ୍କୁ ଗୁଡ଼ାଏ ଧ୍ୱନି କରିବାକୁ ଶିଖାଇ ଦିଆଯାଏ । ଏହାକୁ ବାରମ୍ବାର ଉଚ୍ଚାରଣ କରିବା ଫଳରେ ତାଙ୍କର ଚିନ୍ତାଧାରା ଗଢ଼ି ଉଠେ । ଯେଉଁ ପିଲାମାନେ ବୋଲ ନ ମାନନ୍ତି ସେମାନଙ୍କୁ ଅଧିକା କାମ କରିବାକୁ ପଡ଼େ ।

"ଯେଉଁ ପିଲାଟିକୁ ମୋ ମା' ସୁଖ ପାଇବାକୁ ଆରମ୍ଭ କଲେ ସେ ଅମାନିଆ ଢଙ୍ଗର ପିଲା । ସେ ପୂର୍ବେ କେବେ କାମ କରି ନଥିଲା ; କାମ କରିବାକୁ କହିଲେ ସେ ନ କାନ୍ଦି ରହିପାରେ ନାହିଁ । ପଥର ବୋହିବାରେ ମୋ ମା' ତାକୁ ସାହାଯ୍ୟ କରିବାକୁ ବସନ୍ତି । କିନ୍ତୁ ଏପରି କରିବା ମନା । ପିଲାକୁ ସାହାଯ୍ୟ କଲେ ତାଙ୍କୁ ବାହାର କରି ଦିଆଯିବ ବୋଲି ଅଧ୍ୟକ୍ଷା ଧମକାଇଲେ । ସେତେବେଳକୁ ମୋ ମା'ଙ୍କର ଏ ପିଲାଟି ପ୍ରତି ମମତା ଦୃଢ଼ ହୋଇଯାଇଥାଏ । ତା'ର ସାନ୍ନିଧ୍ୟ ହରାଇବେ ବୋଲି ତାଙ୍କର ଭାରି ଭୟ ହେଲା । ତେଣୁ ଦିନ ବେଳେ ସେ ତା' ପାଖରେ ଆଉ ପଶିଲେ ନାହିଁ । କିନ୍ତୁ ରାତିରେ, ଲୁଚିଲୁଚି ତା'ପାଖକୁ ଯାଇ ସେ ତା'କୁ କାଖେଇଲେ । କାଠ ଘରର ଗୋଟିଏ କୁଣକୁ ନେଇ ତା'କୁ ବୁଝିଆବୁଝେଇ କରି କାଖରେ ଶୁଆଇଦେଲେ । ପ୍ରକୃତରେ, ଏଭଳି କରିବାଦ୍ୱାରା ସେ ପିଲାଟି ପ୍ରତି ଅବିଚାର କଲେ; କାରଣ, ଥରକ ପାଇଁ ତା'କୁ ଗେଲ କରି ଖୁସି କଲେ କ'ଣ ହେଲା, ଏଭଳି କରିବାଦ୍ୱାରା ସେ ପିଲାଟିର ମନକୁ ଦୁର୍ବଳ କଲେ ସିନା ! ମୋ ମା'ଙ୍କ ଲାଳନା ଯୋଗୁଁ ପିଲାଟି ତା' କାମରେ ଅଧିକ ଅମନଯୋଗୀ ହେଲା । ଏଣେ ମୋ ମା'ଙ୍କର ଚିନ୍ତାଧାରା ଅଧିକ ଆବିଳ ହୋଇପଡ଼ିଲା । ତାଙ୍କ ମନରେ ପୁଣି ବିଶ୍ୱାସ ଆସିଲା ଯେ, ସେ ଏଘରେ ପୂର୍ବର ସେଇ ରକ୍ଷିତା, ଏ ପିଲାଟି ତାଙ୍କ କୋଳର ସେଇ ପିଲା, ଯେ କି ଅନେକ ଦିନ ଆଗରୁ ମରିଯାଇଛି । ତାଙ୍କର ମନହେଲା, ଏଠେ ବଡ଼ ଘରସଂସାରର ସମସ୍ତେ ତାଙ୍କୁ ଘୃଣା କରୁଛନ୍ତି—ତାଙ୍କର ହୋଇ ଜଣେ କେହି ନାହିଁ ।"

"କାଠ ଘରର ଚଟାଣ ଝାଡ଼ୁ କରିବା ତାଙ୍କ କାମ ଭିତରେ । ଦିନେ ସେ ଝାଡ଼ୁ କରୁଛନ୍ତି, ହଠାତ୍ ମୁହୂର୍ତ୍ତିକ ପାଇଁ ତାଙ୍କର ମସ୍ତିଷ୍କ

ପରିଷ୍କାର ହୋଇ ତାଙ୍କର ମନେପଡ଼ିଲା ଯେ,ସେ ଏ ଘରେ ରକ୍ଷିତା ହୋଇ ରହିଥିଲା ବେଳେ ତାଙ୍କୁ କେତେଗୁଡ଼ିଏ ଅଳଙ୍କାର ମିଳିଥିଲା ; ଥରେ ସହାଜାନ ବେଳେ ସେ ଆତଙ୍କିତ ହୋଇ ଏହି ଅଳଙ୍କାରଗୁଡ଼ିକ ଏଇ କାଠଘର କାନ୍ଥର ଗୋଟିଏ ଇଟା ତଳେ ଗୋଞ୍ଜି ଦେଇଥିଲେ । ପରେ ଏକଥା ତାଙ୍କର ପାସୋର ଯାଇଥିଲା । ଆଜ ସେକଥା ମନେ ପଡ଼ିଯିବାରୁ ସେ ନଦରେ ଗୃଲିଲା ପରି ଯାଇ ସେଇ ଜାଗାରେ ପହଞ୍ଚି ଇଟା ଆଡ଼େଇଲା ବେଳକୁ ଦେଖିଲେ, ଅଳଙ୍କାରଗୁଡ଼ିକ ସେଇମିତି ଅଛି, କେବଳ ମଇଳା ଲାଗି କଳା ପଡ଼ିଯାଇଛି । ଅଳଙ୍କାର ତିନି ଥାନ ଥିଲା । ଅନ୍ୟ ଦୁଇଟି କ'ଣ ମୁଁ ଜାଣେନାହିଁ । ବୋଧହୁଏ ସେ ଦୁଇଟି ସେପରି ମୂଲ୍ୟବାନ ନୁହେଁ, ହୋଇଥିଲେ ମୁଁ ଜାଣିଥାନ୍ତି । ଶେଷଟି ମୂଲ୍ୟବାନ୍ । ଏହା ରୁପା ତାରକସିର ପ୍ରଜାପତିଟିଏ , ତା' ଭିତରେ ଗୁଡ଼ିଏ ଛୋଟ ଛୋଟ ମୁକ୍ତା ଖଞ୍ଜା ହୋଇଥାଏ । ଖୁବ୍ ସୂକ୍ଷ୍ମ କାମ ହୋଇଥାଏ । ଶେଷରେ ଯେତେବେଳେ ମୋ ମା'ଙ୍କର ବାହାର ହେଲା, ସେତିକବେଳେ ମୁଁ ସେ ଜିନିଷଟି ଦେଖିଥିଲି । ସେଦିନ ସେ ପ୍ରଜାପତିଟି କାନ୍ଥରୁ ବାହାର କରି ନିଜ ଗୁଣ୍ଡିତଳେ ଲୁଚାଇ ଦେଇଥିଲେ । ବାହାର ବେଳେ ସେକଥା ସବୁ ବାହାରିଲା ।

"ତହିଁ ଆରଦିନ ଦୈବାତ୍ ପିଲାଟିର ହାତ କାଟି ହୋଇଗଲା । ବେଶୀ କାଟି ହୋଇ ଯାଇଥାଏ । ବାହାରବେଳେ ଏ ଘା ମୁଁ ଦେଖିଲି । ହାତ ପାପୁଲି କାଟି ହୋଇଯାଇଥାଏ । ଘାସ ଗୃଞ୍ଛିବାକୁ ତା'କୁ ଗୋଟାଏ ଦାତୁଆ ହତିଆର ଦିଆହୋଇଥିଲା । ଅନେକ ଦିନ ହେଲା ବର୍ଷା ନହୋଇଥିବାରୁ ମାଟି ଲୁହା ପରି ଟାଣ ହୋଇଥିଲା । ମୁଠା ଟାଣ କରି ହାଣିଲା ବେଳକୁ ହତିଆର ହାତରୁ ଖସିଯାଇ ପାପୁଲିରେ ଘାଉ ହେଲା । ସାଙ୍ଗେ ସାଙ୍ଗେ ତାକୁ ଡାକ୍ତରଖାନାକୁ ନିଆଗଲା ଓ ରୋଗବୀଜାଣୁ ନାଶ କରିବାକୁ କଡ଼ୁଆ ଶସ୍ତା ଔଷଧ କଟାଘା'ରେ ଢାଳିଦିଆଗଲା । ସବୁ ଦିନ ପରି ସେ ଦିନ ମଧ୍ୟ ଅନେକ ରୋଗୀପିଲା ଡାକ୍ତରଖାନାରେ ଥାନ୍ତି ; ପରିଚାରିକାମାନେ କାମର ଭିଡ଼ରେ ବଡ଼ ବ୍ୟସ୍ତ ଥାନ୍ତି, ପିଲାଟିକୁ ବୁଝାଇ ତୁନି କରିବାକୁ ତାଙ୍କର ବେଳ କେଉଁଠି ? ମୋ ମା' ବୁଢ଼ୀ ଅଜ୍ଞାତରେ ତା' ପାଖକୁ ଯାଇ, ତା'କୁ ଡାକ୍ତରଖାନାରୁ ନେଇ ଆସିଲେ ; ଏତେ ପିଲାଙ୍କ ଭିତରେ ଏକଥା କାହା ଦୃଷ୍ଟିରେ ପଡିଲାନାହିଁ । ସେ ତା'କୁ

କାଠଘରକୁ ନେଇଗଲେ ଓ ସେଠାରେ, କାଠ ଗୋଗ୍ଧର ଆଢ଼ୁଆଳରେ, ତା'କୁ ବୁଝାଇବା ପାଇଁ ରୂପା ପ୍ରଜାପତିଟି ଦେଖାଇଲେ । ଫୁସ୍ ଫୁସ୍ କରି ସେ କହିଲେ, 'ଦେଖ, କେଡ଼େ ସୁନ୍ଦର ହୋଇଛି । ଏଇଟି ତୋ'ର । ମୁଁ ତୋ'ର ପାଇଁ ଏହାକୁ ଲୁଚାଇ ରଖୁଛି । ତୋ'ର ହୋଇ ଏହା ଏଇଠି ଥାଉ; ଏଇଠି ଥିଲେ ଆଉ କଏ ନେଇ ପାରିବେ ନାହିଁ । ପ୍ରତିଦିନ ରାତିରେ ଆସି ଆମେ ଏହାକୁ ଦେଖୁଥିବା । ହେଇଟି ନେ, ଏହାକୁ ହାତରେ ଟିକିଏ ଧର ।' ଏଡ଼େ ସୁନ୍ଦର ଜିନିଷ, ପିଲାଟି କେବେ ଦେଖିନଥିଲା । ସେ ପ୍ରଜାପତିଟି ହାତରେ ପାଇ କାନ୍ଦ ବନ୍ଦ କରିଦେଲା । ଏହାକୁ ଚୁମ୍ବି ସେ ହସିଲା । ଅଦାଲତରେ ଏକଥା ମୋ ମା' ସଫା ସଫା କହିଗଲେ । ସବୁ କଥା ତାଙ୍କର ଏଡ଼େ ସୁନ୍ଦର ମନେ ଅଛି ଦେଖି ଆମେ ଦୁହେଁ ଚକିତ ହେଲୁ । ପ୍ରଥମ ଥର ପିଲାଟିକୁ ପ୍ରଜାପତି ଦେଖାଇଲା ଦିନୁଁ ପ୍ରତି ରାତିରେ ମା' ଓ ସେ ପିଲା ପ୍ରଜାପତିଟି ଦେଖନ୍ତି । ଆଉ କାହାକୁ ଏକଥା କହିବୁ ନାହିଁ ବୋଲି ମା' ବାରମ୍ବାର ବାରଣ କରିଥାନ୍ତି, କିନ୍ତୁ ପିଲା ଲୋକ ଏତେ କଥା ଅନ୍ୟ ପିଲାଙ୍କୁ ନକହି ରହନ୍ତା କିପରି ? ପ୍ରଜାପତିଟି ଶେଷରେ ଧରାପଡ଼ିଲା । ତାହା ଏଇପରି ହେଲା । ପିଲାଟି ମା'କୁ ଲଗାଇଲା, ଗୋଟିଏ ଦିନ ପାଇଁ ପ୍ରଜାପତିଟି ପାଖରେ ରଖିବାକୁ । ପ୍ରଜାପତିଟି ହାତରେ ପାଇବାମାତ୍ରେ, ସେ ତା'କୁ ନେଇ ଆଉ ଗୋଟିଏ ପିଲାକୁ କହିଲା । ଏ ପିଲାଟି ଯାଇ ଅଧକ୍ଷାଙ୍କୁ କହିଦେଲା । ଏଭଳି ବେଆଇନ୍ କଥା ଯେଉଁମାନେ କର୍ତ୍ତୃପକ୍ଷଙ୍କୁ ଯାଇ ଜଣାନ୍ତି ସେମାନଙ୍କୁ ଖଣ୍ଡିଏ ଖଣ୍ଡିଏ ମିଶ୍ରି ମିଳେ । ଏ ପିଲାଟି ସେଇ ଲୋଭରେ ପ୍ରଜାପତି କଥା ଇତଲା ଦେଇଥିଲା । କର୍ତ୍ତୃପକ୍ଷଙ୍କର ସଭା ବସିଲା । ଆମ ପିଲାଟିକୁ ଧମକାଧମକି କରିବାରୁ ସେ ସବୁ ସତ ସତ କହି ପକାଇଲା । ସତ କହିବାରୁ ତାକୁ ଚମ୍ପୁକ ମାଡ଼ ହେଲା । ଅନ୍ୟ-ମାନଙ୍କର ଯାହା ନାହିଁ, ପୁଣି ଇଚ୍ଛା କଲେ ବି ଯାହା ସମସ୍ତେ ପାଇ ନପାରିବେ, ସେପରି ଜିନିଷ ପ୍ରତି ଆସକ୍ତ ହେବା ପିଲାଟିର ଦୋଷ । ତାକୁ କୁହାଗଲା ପଥଚ୍ୟୁତ; କମ୍ୟୁନିଷ୍ଟ ମାଡରେ ତା'ର ସ୍ଖଳନ ହେଲା । ସେତେବେଳକୁ ତା'କୁ ପୂରା ଛଅ ବର୍ଷ ହୋଇନଥାଏ ।

"ତାପରେ କର୍ତ୍ତୃପକ୍ଷଙ୍କର କୋପ ଦୃଷ୍ଟି ପଡ଼ିଲା ମୋ ମା'ଙ୍କ ଉପରେ । ପ୍ରକୃତ ସତ କଥା କହିବାକୁ ସେମାନେ ତାଙ୍କ ପଚାରିଲେ ।

ସରଳ ସ୍ୱଭାବରେ ମା' ସବୁ ମାନିଗଲେ । କିନ୍ତୁ କେହି ତାଙ୍କୁ ବିଶ୍ୱାସ କଲେନାହିଁ । ପାଞ୍ଚବର୍ଷ ପୂର୍ବରେ ଏକଥା ଘଟିଥିଲେ ପଥଚ୍ୟୁତ ହେବା ଦୋଷରେ ତାଙ୍କୁ ପ୍ରାଣଦଣ୍ଡ ହୋଇଥାନ୍ତା । ଏବେ ଏତିକିମାତ୍ର ଶାସ୍ତି ହେଲା ଯେ କମ୍ୟୁନ୍‌ର ଆଗାମୀ ସଭାରେ ତାଙ୍କୁ ନିନ୍ଦା କରାଯିବ । ପ୍ରାଣଦଣ୍ଡଠାରୁ ଏ ଦଣ୍ଡ କମ୍ ହେଲେହେଁ ଏହା ସହ୍ୟ କରିବା ବଡ଼ କଷ୍ଟ ।"

ସ୍ୱର ବନ୍ଦ ହୋଇଗଲା । ରୁଦ୍ଧ କ୍ରନ୍ଦନର ଶବ୍ଦ ଶୁଣାଗଲା । ମୁଁ ଅପେକ୍ଷା କରି ରହିଲି । ଆଉ କ'ଣ ବା କହିବାକୁ ଥାଇପାରେ । ସ୍ୱର ପୁଣି ଆରମ୍ଭ ହେଲା ।

"ସଭା ଦିନ ମୁଁ ମଣିଷ ଗହଳରେ ଲୁଚି କରି ବସିଲି । ମୁଁ ଅପେକ୍ଷା କରି ।ଏ । କ'ଣ ହେବ ସେ କଥା ମୋତେ ଆଗରୁ ଜଣା । ପୂର୍ବରୁ ବହୁତ ଥର ଦେଖିଥାଏଁ । କିନ୍ତୁ ଏଥର ଯେ ଆସାମୀ ମୋ ନିଜ ମା' ବୁଢ଼ୀ । ଭିତର ଘରୁ ତାଙ୍କୁ ଅଣାଯାଇ ଆମ ଆଗରେ ଠିଆକରାଗଲା । ତାଙ୍କର ହାତ ଦୁଇଟି ପଛ ଆଡ଼ଆ ହୋଇ ବନ୍ଧା ହୋଇଥାଏ । ଆମ ଯୁବକ-ନାୟକ ବଡ଼ ପାଟିରେ ମୋ ମା'ଙ୍କ ଦୋଷ ଘୋଷଣା କଲେ । ଏଥର ଆମେ ଯେଉଁମାନେ ତାଙ୍କ ଗୁରପକ୍ଷେ ଠିଆ ହୋଇଥିଲୁ, ଆମର କାମ ଦୋଷୀର ଦୋଷ ଘୋଷଣା କରି ତା'କୁ ଭର୍ତ୍ସନା କରିବା ; ମାରି ମିଶିଲା ପରି ତା'କୁ ବାଧା ଦେଖାଇବା ; ପଥଚ୍ୟୁତ ହୋଇଥିବାରୁ ତା'କୁ ଯାବଚ୍ଛ ଶୋଧିବା; ଶେଷରେ ତାକୁ ହତ୍ୟା କରାଯାଉ ବୋଲି ଦାବି କରିବାକୁ ହୁଏ । ଏ କ୍ଷେତ୍ରରେ ମଧ୍ୟ ସେଇଆ ହେଲା । ସବୁଠାରୁ କ୍ଷୋଭର କଥା—ସମସ୍ତଙ୍କଠାରୁ ବଡ଼ ପାଟିରେ ଭର୍ତ୍ସନା କରିବାକୁ ମୁଁ ବାଧ୍ୟ ହେଲି । ମୋ ମା'ଙ୍କ ପ୍ରତି, ମୋ ସ୍ୱରରେ, କଞ୍ଚିନ୍‌ମାତ୍ର ସ୍ନେହର ସଙ୍କେତ ରହୁଛି କି ନାହିଁ ଧରିବାକୁ ସମସ୍ତେ ମୋ ଉପରେ କଡ଼ା ନଜର ଦେଇଥାନ୍ତି । ତେଣୁ ଏମାନଙ୍କଠାରୁ ଚଡ଼ା ଗଳାରେ ମୋତେ ପାଟି କରିବାକୁ ପଡ଼ିଲା । ମୋ ମା' କିନ୍ତୁ ଆମ ଗାଳି ଶୁଣି ହସୁଥାନ୍ତି । ସେ ଏ ଅଭିନୟରୁ କିଛି ବୁଝି ନଥାନ୍ତି । କିଛି ନବୁଝି, ମୁଡ଼ୁକି ମୁଡ଼ୁକି ହସି, ସେ ଏଣିକି ତେଣିକି ମୁଣ୍ଡ ଲାଡ଼ୁଥାନ୍ତି । ମୋ ଉପରେ ତାଙ୍କର ଦୃଷ୍ଟି ପଡ଼ୁନଥିଲା । ମୁଁ ତାଙ୍କଠାରୁ ଯେତେ ଦୂରରେ ପାରେ, ସେତେ ଦୂରରେ ରହିଥିଲି ।

"ମୋ'ର ଦୁର୍ଭାଗ୍ୟ ଏତିକରେ ସରିଲାନାହିଁ । ନିନ୍ଦିତ ଆସାମୀ-ମାନଙ୍କୁ ମଞ୍ଚ ଉପରୁ ଓହ୍ଲାଇ ସମବେତ ମେମ୍ବରମାନଙ୍କ ଭିତରେ ବାହାରକୁ ଯିବାକୁ ହୁଏ । ଏତିକିବେଳେ ଲୋକେ ଆସାମୀର ଗାଲରେ ଚାପୁଡ଼ା ମାରନ୍ତି ; ତା'କୁ ବିଧା ଓ ଗୋଇଠା ପକାନ୍ତି । ମୋ ମା'ଙ୍କ ଭାଗ୍ୟରେ ବି ତାହାହିଁ ଘଟିବାର କଥା, ଘଟିଲା । ପଛ ଆଡ଼ୁଆ ହୋଇ ତାଙ୍କ ହାତ ବନ୍ଧା ହୋଇଥାଏ । ସେ ଲୋକଙ୍କ ଭିତରେ ଗଲାବେଳେ, ତାଙ୍କ ଗାଲରେ ଚାପୁଡ଼ା ଓ ପିଠିରେ ବିଧା ବୃଷ୍ଟି ହେଲା । ଆଘାତରେ ସେ ତଳେ ପଡ଼ିଗଲେ । ସେ ତ ସହଜେ ପତଳା ମଣିଷ, ପୁଣି ଯୌବନରେ ତାଙ୍କ ପାଦକୁ ବାନ୍ଧି ସାନ କରି ଯାଇଥିବାରୁ, ସେ ବୟସ ଥିଲାବେଳେ ବି ସଳଖ ହୋଇ ଚାଲି ପାରୁ ନଥିଲେ । ବର୍ତ୍ତମାନ ତ ଦେହରେ ଆଦୌ ବଳ ନଥାଏ । ସେ ପଡ଼ିଗଲାରୁ ଲୋକେ ତାଙ୍କୁ ଗୋଇଠା ମାଇଲେ । ମୋତେ ସମସ୍ତେ ଚାହିଁଥାନ୍ତି । ମୋର ପାଳି ଉପସ୍ଥ ହେଲା । ମୋତେ ବି ତ ଗୋଇଠା ମାରିବାକୁ ହେବ । ମୁଁ ଗୋଇଠା ମାରିବାକୁ ଆଗେଇଗଲି । ସେତିକିବେଳେ ମା' ମୁହଁ ଉପରକୁ କରି ମୋତେ ଚାହିଁଲେ । ମୋତେ ସେ ଚିହ୍ନିଲେ । ସେ ମୋତେ ଚିହ୍ନିଲେ ବୋଲି ଜାଣିବାରୁ ମୁଁ ଚେଷ୍ଟା କରି କ୍ରୁଦ୍ଧ ହୋଇଥିଲା ପରି ମୁହଁ କଲି । ମୋ ମୁହଁ ଦେଖି ସେ ମୁହୂର୍ତ୍ତକ ପାଇଁ ଭାବୁକା ହୋଇଗଲେ । ସାଙ୍ଗେ ସାଙ୍ଗେ ପୁଣି ହସିଲେ । ବୋଧହୁଏ ସେ ବୁଝିଲେ ଯେ···" ଥର ଥର ହୋଇ ସ୍ୱର ଥମିଗଲା । "ଏଇତ ଶେଷ" ମୁଁ ପଚାରିଲି ।

ହିରଡି କହିଲା, "ନା, ସରିନାଇଁ, କିନ୍ତୁ ସରି ଆସିଲା । ବୋଧହୁଏ, ସଭାରୁ ମୁକ୍ତ ପାଇଲା ପରେ ସେ ସେଇ ପିଲାଟି ପାଖକୁ ଫେରିଗଲେ । ସନ୍ଧ୍ୟାବେଳ । ପିଲାଟି ତା' ଖଟିଆରେ ଏକୁଟିଆ ପଡ଼ିଥାଏ । ମେସଘରେ ଅନ୍ୟମାନେ ସେମାନଙ୍କ ରାତିଖିଆ ଖାଉଥାନ୍ତି । ପିଲାଟିକୁ ବି ମାଡ ହୋଇଥାଏ, ତା' ବୟସର ପିଲାଙ୍କ ସଭାରେ ତାକୁ ଭର୍ତ୍ସନା କରାହୋଇଥାଏ । ପିଲାଙ୍କୁ ଏଭଳି କରିବାକୁ ତାଲିମ କରାହୋଇ ଥାଏ । ମୋ ମା' ପିଲାଟିକୁ ଖଟରୁ ଉଠାଇ କାଖେଇଲେ । କାଠ ଘରକୁ ତାଙ୍କ ସଙ୍ଗେ ଆସିବା ପାଇଁ ତାଙ୍କୁ ବୁଝାଇଲେ । ଆପଣ ବଚାରୁଥିବେ, ମୁଁ ଏକଥା ଜାଣିଲି କିମିତି ? ମୋ ସ୍ତ୍ରୀଠାରୁ ଶୁଣିଛି । ରାତି ପାଇଁ ଭାତ

ଗଣ୍ଠିବେ ବୋଲି ଛଳନାକରି ସେ ସଭାକୁ ନଯାଇ ଘରେଷେଇଘରେ ରହି- ଯାଇଥିଲେ । ଛଳନା କଲେ, ହେଲେ କ'ଣ ହେଲା, ସତରେ ମୋତେ ଯାହା ଭୋଗିବାକୁ ହେଲା ସେଥିରୁ ସେ ନିସ୍ତାର ପାଇଗଲେ । କମ୍ୟୁନର ସଭ୍ୟମାନେ ଯେତେବେଳେ ଭୋଜନରେ ବସିଲେ, ସେତେବେଳେ ମୋ ସ୍ତ୍ରୀ ଖସିଯାଇ ଶିଶୁଭବନକୁ ଗଲେ । ମୋ ମା' ଆସି ପିଲାଟିକୁ କାଖେଇବାର ସେ ସେଇଠାରେ ଦେଖିଲେ । ମୋ ମା' ଗେଲେଇ କରି ପିଲାଟିକୁ କହୁଥାନ୍ତି, ଏଇ ମର୍ମରେ—

'ଆରେ ବାପା, ଦେଖୁଛୁ ତ ମୁଁ ଏଥର ମୋ ନିଜ ପୁଅକୁ ବୋଝପରି ହେଲିଣି । ମୋତେ ମାଡ଼ ମାରିବାକୁ ସେ ବାଧ୍ୟ ହେଲା । ମୁଁ ବଞ୍ଚିଲେ ତା'ର ଭଲ ହେବନାହିଁ । ମୋତେ ଏକଥା ଜଳ ଜଳ ଦିଶିଲାଣି । ଆ, ମୋ ସାଙ୍ଗେ ଆ, ଆମେ ଦୁହେଁ ଏଠାରୁ ଭଲ ଜାଗାକୁ ଚାଲିଯିବା' ।

"ପିଲାଟିର ଓଠ ଫୁଲିଯାଇ ଥାଏ, ମାଡ଼ ଯୋଗୁଁ ତାହା ରକ୍ତାକ୍ତ ଦିଶୁଥାଏ । କିନ୍ତୁ ସେ ସ୍ପଷ୍ଟ ଭାବେ କଥାବାର୍ତ୍ତା କରିପାରୁଥାଏ । ସେ ପଚାରିଲା, 'ରୂପା ପ୍ରଜାପତିଟି କାହିଁ ?'

"ମୋ ମା' କହିଲେ, 'ଆ, ମୋ ସାଙ୍ଗେ ଆ । ନଈ କୂଳକୁ ଯିବା । ସେଠାରେ କେତେ ପ୍ରଜାପତି ଅଛନ୍ତି । ସେମାନେ ପାଣି ପିଇବାକୁ ନଈକୁ ଆସନ୍ତି— ଜୀଅନ୍ତା ପ୍ରଜାପତି' ।

"ମୋ ସ୍ତ୍ରୀ ଦେଖୁଥାଏ, ମା ପିଲାଟିକୁ ନେଇ ଚାଲିଗଲେ । ପ୍ରତ୍ୟୁଷର କ୍ଷୀଣ ଆଲୋକରେ ସେ ଏ ଦୁହିଁଙ୍କ ପଛେ ପଛେ ପାଣି ଧାରି ପର୍ଯ୍ୟନ୍ତ ଗଲା । ପିଲାଟି ମୋ' ମା'ଙ୍କ ବେକରେ ଲାଖିଥାଏ; ତା'ର ମୁଣ୍ଡ ସେଙ୍କ କାନ୍ଧ ଉପରେ ପଡ଼ିଥାଏ । ନିଶ୍ଚଳ ପାଣି ଭିତରେ ମୋ ମା' ପିଲାଟିକୁ ଧରି ପଶିଗଲେ । ସେଦିନ ଏଥିରେ ପବନ ନଥାଏ, ନଈ ଲହଡ଼ୀ ମାରୁନଥାଏ । ବୁଦା ମୂଳରେ ରହି ମୋ ସ୍ତ୍ରୀ ସବୁ ଦେଖୁଥାଏ । ମା' ପାଣି ଭିତରେ ପଶିଲେ ; ତାଙ୍କ ନିଜ ମୁଣ୍ଡ ବୁଡ଼ିଗଲା, ପିଲାର ବି ବୁଡ଼ିଗଲା । ଆଉ ସେ ଫେରିଲେନାହିଁ । ମୋ କଥା ଏଇଠାରେ ଶେଷ ।"

ମୁଁ ପଚାରିଲି, "କିନ୍ତୁ ତୁମ ସ୍ତ୍ରୀ ? ସେ କିଛି ନକରି ତୁମ୍ଭ ରହିଗଲେ ?" ସ୍ୱରଟି ଉତ୍ତର ଦେଲା, "ମୋ ସ୍ତ୍ରୀ ଦୁଃଖୀର ଦୁଃଖ ବୁଝି-ପାରେ । ସେଇଥିପାଇଁ ସେ କିଛି କଲା ନାହିଁ ।"

ଏଥରର ନୀରବତା ଲାଗିରହିଲା, ତାକୁ ଭଙ୍ଗ କରିବ କିଏ ?

ତେବେ ନୀରବତାର ମଧ୍ୟ ଅନ୍ତ ହେବା ଦରକାର । ନହେଲେ, ତାକୁ ଯେ ସହି ହେବନାହିଁ !

ମୁଁ ପଚାରିଲି, ଆଚ୍ଛା, ନଈଉପରର ସେ ଯେଉଁ ପୋଲ, ତାହା କେଉଁଠାଯାଏଁ ଗଲା ?"

ସ୍ୱର ପୁଣି ଫିଟିଲା । ବଡ଼ ଆଶ୍ଚର୍ଯ୍ୟର କଥା, ଏଥରର ସ୍ୱର ଅନ୍ୟ ରକମ ଶୁଭିଲା, ଯଦିଓ ତାହା ସେଇ ଜଣକର । ସ୍ୱର ହଠାତ୍ ଶାନ୍ତ ହୋଇ ଯାଇଥିବାର ଲକ୍ଷ୍ୟ କଲି ।

"ପୋଲ କାମ ସରିଲାଣି । ଖୁବ୍ ମଜବୁତ୍ କାମ ହୋଇଛି, ତୁମ ଆମେରିକା ଦେଶର ପୋଲପରି ଏହା ଖୁବ୍ ଚଉଡ଼ା । ଏଥିରେ ଚାରିଟା ଗଳି ଅଛି ; ଦୁଇଟା ଉତ୍ତରରୁ ଦକ୍ଷିଣକୁ, ଅନ୍ୟ ଦୁଇଟା ଦକ୍ଷିଣରୁ ଉତ୍ତରକୁ । ତେଣୁ ଗାଡ଼ି ଓ ଚାଲିବା ଲୋକ ଏକା ସମୟରେ ଉଭୟ ଦିଗକୁ ସ୍ୱଚ୍ଛନ୍ଦରେ ଯା' ଆସ କରି ପାରୁଛନ୍ତି ।

ମୁଁ କହିଲି, 'ଆମର ଏମିତି ଗୋଟେ ଗୋଟେ ପୋଲ ଅଛି, ଯହିଁରେ ଛ'ଟା ଗଳି ।'

ସାଙ୍ଗେ ସାଙ୍ଗେ ସ୍ୱରଟି ଉତ୍ତର ଦେଲା, "ଶୁଣୁଛି, ଆମ ଏ ପୋଲରେ ମଧ୍ୟ ଆଜି ଦୁଇଟି ଗଳି ଫିଟିବ ।"

ମୁଁ କହିଲି, "ଚମତ୍କାର ! ବିଶେଷ କରି ଏପରି ବିରାଟ ନଦୀ ଉପରେ ହୋଇଥିବା ପୋଲ ପକ୍ଷରେ ! ଆମ ଦେଶରେ ଏପରି ଦ୍ରୁତଗାମୀ ବା ଏପରି ବିଶାଳ ନଦୀ ନାହିଁ । ଏଭଳି ପୋଲଟିଏ କରିପାରିଛ ବୋଲି ତୁମେ ନିଶ୍ଚୟ ଗର୍ବ ଅନୁଭବ କରୁଥିବ ।"

ଦମ୍ଭର ସହିତ ଉତ୍ତର ଆସିଲା, "ତା' ଠିକ୍ ! ଏ ସେଥିପାଇଁ ଆମେ ଗର୍ବ ଅନୁଭବ କରୁଛୁ । କିନ୍ତୁ—"

ସ୍ୱର ବନ୍ଦ ହେଲା । ଆମ ଦୁହିଙ୍କ ଭିତରେ ନୀରବତାର ପ୍ରାଚୀର ବଢ଼ି ଚାଲିଲା । ଏଥର ଆଉ ଏହା ଭାଙ୍ଗିବାର ନୁହେଁ । କାରଣ, ଯାହାର ସ୍ୱର ଶୁଣୁଥିଲି ସେ ଲୋକଟି ଅନ୍ତର୍ହିତ ହୋଇଗଲା । ସେ ସହର ଆଶ୍ରୟପ୍ରାର୍ଥୀଙ୍କ କୌଣସି ଗୁପ୍ତ ଖୁଆଡ଼କୁ ଗଲା, କି ଯେଉଁ ଦେଶରୁ ଖସି ଆସିଥିଲା ସେଠାକୁ ପୁଣି ଫେରିଲା ?

କେଜାଣି ?

—୦—

# ମିଳନ ସଙ୍କେତ

ରାତ ଡିଉଟି ନର୍ସ୍ କହିଲେ, "ଦେଖନ୍ତୁ, ମିଷ୍ଟର ନର୍ଟନ୍, ଆପଣଙ୍କୁ ଆଜି ଘଡିରେ ଭଲ କରି ଶୋଇବାକୁ ପଡ଼ିବ ।"

ମିଷ୍ଟର୍ ନର୍ଟନ୍ ଉତ୍ତର ଦେଲେ, "ଚ୍ଛିମର ତୁମେ ଯାଅନା ! ଜାଣ ତ, ତୁମର ଇଚ୍ଛାର ହେଲେ ଚେଣେ ତୁମ ଯୁବକଟି ବ୍ୟସ୍ତ ହେବେ ।"

"ସେ କଥା ଛାଡ଼ନ୍ତୁ ; ଆପଣ ସୁନାଟି ହୋଇ ଶୋଇବେ କି ନାହିଁ ଯେ ?"

ମିଷ୍ଟର୍ ନର୍ଟନ୍ କହିଲେ, "ମୁଁ ସବୁକାଳେ ସୁନା—ସେଇତକ ହେଉଛି ମୋର ବଡ଼ ଦୋଷ । ପୁଣି ଶୋଇବା କଥା ଯାହା କହୁଛ, ନିତାନ୍ତ ଶୋଇବାକୁ ପଡ଼ିଲେ ଯାଇ ଶୋଇବି, ଇଚ୍ଛା କରି ନୁହେଁ । ହେଇଟି, ଏ ଚନ୍ଦ୍ରକୁ ଦେଖୁଛ ତ !

ଚନ୍ଦ୍ର ଯେପରି ଦିଶୁଥାଏ, ଦେଖିବାର କଥା ଏକା । ବଡ଼ ଝରକା ବାଟେ ତାହା ଦିଶୁଥାଏ । ରାତି ନର୍ସ୍‌ଙ୍କୁ ସେ ମନା କରିଥିଲେ ପରଦା ପକାଇବାକୁ । ରୋଗୀକୁ ଛାଡ଼ି ତାଙ୍କର ଯିବା କଥା ନୁହେଁ । କିନ୍ତୁ ସେ ପ୍ରଥମେ ଡିଉଟିରେ ଆସିଲାବେଳେ ନର୍ଟନ୍ ଦେଖିଲେ ତାଙ୍କ ଆଖି ନାଲି ଦିଶୁଥାଏ । ଖୋଲି ଛାଡ଼ି ଏହାର କାରଣ ସେ ବାହାର କରିଥିଲେ । ଡିଉଟିରେ ଆସିବେ ବୋଲି ସେ ତାଙ୍କ ଯୁବକଟି ସାଙ୍ଗେ କଳି କରି, କଳି ମଝିରେ ଚାଲି ଆସିଥାନ୍ତି । ତାଙ୍କ କଥା ମିଷ୍ଟର୍ ନର୍ଟନ୍ ମନ ଦେଇ ଶୁଣିଥିଲେ ।

ଘଟଣାଟି ବର୍ଣ୍ଣନା କରି ରାତି-ନର୍ସ୍ କହିଥିଲେ, "ଏକଥାରେ କିଛି ଯାଏ ଆସେ ନାହିଁ, ମିଷ୍ଟର୍ ନର୍ଟ୍ ।"

ମିଷ୍ଟର୍ ନର୍ଟନ୍ ଉତ୍ତର ଦେଇଥିଲେ, "ଖୁବ୍ ଯାଏ, ଆସେ । ତୁମ ପରି ସୁନ୍ଦରୀ ଯୁବତୀଟିଏ, ଯେଉଁଥିପାଇଁ କାନ୍ଦନ୍ତି, ସେ ତ ସାମାନ୍ୟ କଥା ନୁହେଁ ।"

"ନା, କାରଣଟା ସେପରି ଗୁରୁତର ନୁହେଁ ।"

"ତେବେ କାନ୍ଦିଲ କାହିଁକି ?"

"କାରଣ, ମୁଁ ତାଙ୍କୁ ଯାହା କହିଲି, ତାହା ପ୍ରକୃତରେ ମୋ ମନର କଥା ନୁହେଁ ।"

"କ'ଣ ଏମିତି କହିଲ କି ?"

"ଏତିକି ତ କହିଲି—ମୁଁ ତ ଯାହା ସେଇଆ, ମୁଁ ଯଦି ତାଙ୍କୁ ସୁଖ ନ ଲଗୁଛି—" ଏଇତକ କହୁ କହୁ ତାଙ୍କ ଆଖି ଛଳ ଛଳ ହୋଇ-ଗଲା ଓ ସେ ମନବ୍ୟସ୍ତରେ ଓଠ କାମୁଡ଼ି ପକାଇଲେ ।

ଅସମାପ୍ତ କଥା ମିଷ୍ଟର୍ ନର୍ଟନ୍ ଯୋଡ଼ିଦେଲେ, "ତେବେ ସେ ଆଉ କୌଣସି ଯୁବତୀର ସନ୍ଧାନ କରନ୍ତୁ—ଏଇଆ ନା ?"

"ଆପଣ କମିତି ଜାଣିଲେ ?"

"ଏଭଳି ଅବସ୍ଥାରେ ଏଇଆ ତ କୁହାଯାଏ ।" ଗ୍ରନ୍ଥି-ନର୍ସ୍ ଏଥିକୁ କିଛି ଜବାବ୍ ଦେଲେନାହିଁ । ତତ୍‌ପରତାର ସହିତ ସେ ଶେଯର କୁଣ ସଜାଡ଼ିବାରେ ଲାଗିଲେ । ମଣ୍ଡଦେଇ ଇସ୍ତ୍ରୀ ହୋଇଥିବା ତାଙ୍କ ଗାଉନ୍‌ର ଶେଷାଂଶ ଦୋହଲି, ମେହଗ୍ନି କାଠର ଆସବାବ ଭିତରେ ବଡ଼ ସୁନ୍ଦର ଦିଶୁଥାଏ ।

ମିଷ୍ଟର୍ ନର୍ଟନ୍ ଡାକ୍ତରଖାନାରେ ପ୍ରାଣ ଛାଡ଼ିବାକୁ ପ୍ରସ୍ତୁତ ନଥାନ୍ତି । ତାଙ୍କୁ ୭୫ ବର୍ଷ ହେଲାବେଳେ ତାଙ୍କ ଯୁବତୀ ବିଶ୍ୱାସୀ ସ୍ତ୍ରୀ ତାଙ୍କୁ ଛାଡ଼ି ଦେଇ ଚାଲିଗଲା ; ସେଇଦିନଠାରୁ ବହୁବର୍ଷ ଯାଏଁ ସେ ତାଙ୍କ ନିଜ ଘରେ ନିଜର ପୂର୍ବସ୍ମୃତି ସବୁ ଧରି ରହିଥିଲେ । ଯେତେବେଳେ ସେ ଜାଣିଲେ ଯେ, ଯେତେ ଯାହାକଲେ ବି ଖୁବ୍ ବଡ଼ ହେଲେ ଛ' ମାସ ବା ଆଠମାସରୁ ଅଧିକ ସେ ଆଉ ଥାଇବେ ନାହିଁ, ସେତେବେଳେ ସେ ଅଧିକ ସୁଖସ୍ୱାଚ୍ଛନ୍ଦ୍ୟ ପାଇବା ସକାଶେ ଡାକ୍ତରଖାନାକୁ ଆସିଲେ । ଡାକ୍ତରମାନେ, ଯେତେ ଦିନ ବଞ୍ଚିବା ସମ୍ଭବ ବୋଲି କହିଥିଲେ ସେ ସମସ୍ତ ପାର ହୋଇ ଯାଉଥାଏ । ତା'ବାଦ୍ ଆଉ ଯେତେ ଦିନ ଜୀବନ ରହୁଥାଏ ସେତିକି

ଭଗବାନ ଅନୁଗ୍ରହ କରି ଦେଇଛନ୍ତି ବୋଲି ସେ ମନେ କରୁଥାନ୍ତି ଓ ଅନୁଗ୍ରହରେ ନିଜର କିଛି ସ୍ୱତ୍ୱ ନାହିଁ ବୋଲି ଧରି ନେଇଥାନ୍ତି । ମରିବାକୁ ତାଙ୍କର ଆଉ ଭୟ ନଥାଏ । ପ୍ରକୃତିର ବିଚିତ୍ର ଲୀଳାରେ, ମଣିଷ ସ୍ୱଭାବତଃ ପରବର୍ତ୍ତୀ ଅବସ୍ଥା ପାଇଁ ନିଜକୁ ପ୍ରସ୍ତୁତ କରିନିଏ ।

ତନ୍ଦ୍ରାଭିଭୂତ ଅବସ୍ଥାରେ ସେ କହିଲେ, "ଯାଅ, ତୁମ ଯୁବକକୁ ଟେଲିଫୋନ୍ କର । କହ, ମାର୍ବଲ ଫୁଆରା ପାଖ ଗୋଲପ କୁଞ୍ଜରେ ତାଙ୍କ ସଙ୍ଗେ ଭେଟ ହେବ । ସେଇ ଯେଉଁଠି ଶଙ୍ଖ ଧରି କ୍ଷୁଦ୍ର ଇଟାଲୀୟ ବାଳକଟି ଅଛି । ମନେ ଅଛି ସେଠା ? ମୁଁ ଏଥି ପୂର୍ବରୁ ଯେଉଁଦିନ ମେଲାକୁ ଯାଇଥିଲି—ହଁ—ବିଗତ ଜୁନ୍ ମାସରେ ହେବ ପରା, ଆମେ ସେଇଠାରେ ବସିଥିଲେ, ନା ?"

କ୍ରୋଧ ପ୍ରକାଶ କରି ଗ୍ରନ୍ତ-ନର୍ସ କହିଲେ, "ମୁଁ ଆପଣଙ୍କୁ ଛାଡ଼ି କଦାପି ଯିବିନାହିଁ । ସେପରି ଗଲେ ମୋର କର୍ତ୍ତବ୍ୟରେ ଅବହେଳା ହେବ । ମୁଁ ଯିବି, ଏଣେ ମନେ କରନ୍ତୁ ଆପଣ—"

"ତୁମେ ନଥିଲା ବେଳେ ମୁଁ ଯଦି ମରିଯାଏ, ନା ?"

"ମୁଁ ତା' କହୁ ନଥିଲି, ମୁଁ କହୁଥିଲି ଯଦି ମୁଁ ନଥିଲା ବେଳେ ଆପଣ ମୋତେ ଖୋଜନ୍ତି; ତେବେ ?"

"ମୁଁ କଦାପି ତୁମକୁ ଖୋଜିବି ନାହିଁ; ଏକୁଟିଆ ହେଲେ ମୋତେ ସୁଖ ।"

ଶେଷରେ ତାଙ୍କ କଥାରେ ନର୍ସ ପ୍ରବର୍ତ୍ତିଗଲେ ; ପ୍ରବର୍ତ୍ତିଯିବେ ବୋଲି ଆଗରୁ ତାଙ୍କୁ ଜଣାଥିଲା । ନର୍ସ ଟେଲିଫୋନ୍‌ରେ ଯୁବକଙ୍କୁ ଡାକି, ମିଳନର ସଙ୍କେତସ୍ଥଳ ତାଙ୍କୁ କହିଥିଲେ । ତାଙ୍କ ଅନୁପସ୍ଥିତିରେ ମିଷ୍ଟର୍ ନର୍ଟନ୍ କିଛି ଗୋଳମାଳ କରିବେ ନାହିଁ, ନ ଶୋଇଲେ ବି ଧୀର ହୋଇ ପଡ଼ି ରହିବେ ବୋଲି ଶୁଣି, ଗ୍ରନ୍ତ ନର୍ସ ମନ ଆନନ୍ଦରେ ତାଙ୍କ ଆଡ଼କୁ ଟିକିଏ ଚାହିଁ ଦୁଆର ଆଡ଼କୁ ଚାଲିଗଲେ । ଦୁଆର ପାଖରେ ଠିଆ ହୋଇ କହିଲେ, "ଆପଣ ବିଶ୍ୱାସ କରନ୍ତୁ, ମୋର ବେଶୀ ଡେରି ହେବନାହିଁ ।"

ମିଷ୍ଟର୍ ନର୍ଟନ୍ କହିଲେ, "ତୁମେ ତାଙ୍କୁ ଭଲପାଅ, ଏକଥା ତାଙ୍କର ହୃଦ୍‌ବୋଧ ହେବାକୁ ଯେତେ ସମୟ ଦରକାର, ସେତେ ସମୟ ତୁମେ ତାଙ୍କ ପାଖେ ନିଶ୍ଚିନ୍ତ ରହିବ ।"

ଆଜ ରାତିରେ ତାଙ୍କ ଦେହରେ କୌଣସି ପୀଡ଼ା ନଥାଏ ; ତାଙ୍କୁ ଅଦ୍ଭୂତ ରକମ ଆରାମ ଲାଗୁଥାଏ । ପରିଷ୍କାର ଜଣାଯାଉଥାଏ, ତାଙ୍କ ଶରୀର ମାଟିରେ ମିଶିଯିବାକୁ ପ୍ରସ୍ତୁତ ହୋଇ ରହିଛି । ଠିକ୍ ଅନ୍ତିମ ସମୟ ପୂର୍ବରୁ ପ୍ରକୃତି ଜୀବକୁ କେତେ ଘଣ୍ଟାର ଆରାମ ଦିଏ, ସେଇ ସୁଖ ସ୍ମୃତି ଧରି ଚିର-ବିଦାୟ ନେବା ନିମନ୍ତେ ।

ରାତି ନର୍ସ ଯିବାବେଳେ କୃତଜ୍ଞତାପୂର୍ଣ୍ଣ ସ୍ୱରରେ କହିଗଲେ "ସେଥିପାଇଁ ବେଶୀ ସମୟ ଲାଗିବ ନାହିଁ ।"

ପୋଷାକ ଖସ୍‌ଖସ୍ କରି ରାତି ନର୍ସ୍ ବାହାରିଯାଇ ଆସ୍ତେ ଦୁଆର ଆଉଜାଇ ଦେଲେ । ମିଷ୍ଟର୍ ନର୍ଟନ୍‌ଙ୍କ ଆଖି ଥାଏ ଚନ୍ଦ୍ର ଉପରେ, ମନଶ୍ଚକ୍ଷୁରେ କିନ୍ତୁ ସେ ଦେଖୁଥାନ୍ତି, ରାତି ନର୍ସ୍ ପାନଆଲି ହଲ୍‌ର ପ୍ରଶସ୍ତ ବକ୍ଷରେ ଦ୍ରୁତ ପଦକ୍ଷେପଣ କରି ବାହାରି ଯାଉଥିବାର । ବୋଧହୁଏ, ନେପଥ୍ୟଗୃହଠାରେ ସେ ହଲ୍‌ରୁ ବାହାରିବେ ଓ କାଚଦରଜା ବାଟେ ବାହାରକୁ ଚାଲିଯିବେ । ମିଷ୍ଟର୍ ନର୍ଟନ୍‌ଙ୍କର ଟିକିଏ ମନହେଲା, ସେ ତାଙ୍କ ଖଟିଆରୁ ମେଲିକୁ ଯାଇ ରାତି-ନର୍ସ୍‌ଙ୍କ ଶୁଭ୍ର ପରିଚ୍ଛଦ-ପରିବେଷ୍ଟିତ ଶରୀର ସେପ୍‌ଟେମ୍ବର ରାତିରେ ବୃକ୍ଷପନ୍ତି ଭିତରେ ଡଗ ଡଗ ହୋଇ ଚାଲିଯାଉ-ଥିବାର ଦେଖନ୍ତେ । ଏ ପର୍ଯ୍ୟନ୍ତ ବେଶୀ ଥଣ୍ଡା ପଡ଼ିନାହିଁ । ସେ ଶେଯରୁ ଉଠିବାକୁ ଚେଷ୍ଟାକରି ଅଧେ ଉଠିଲେ ; ଆଉ ହୋଇ ନପାରିବାରୁ ପୁଣି ମାଣ୍ଡିରେ ମୁଣ୍ଡ ଦେଇ ଶୋଇ ପଡ଼ିଲେ । ନାଃ, କେବଳ ପଡ଼ିରହି ଅତୀତକୁ ସ୍ମରଣ କରିବା ବ୍ୟତୀତ ଆଉ କିଛି ତାଙ୍କ ଦ୍ୱାରା ହେବନାହିଁ ।

ତେବେ, ଏ ସମୟଟିକ ଭଲରେ କଟିଯାଉ ବୋଲି ସେ ଚାହୁଁଥିଲେ । ହୁଏତ ଏଇ ସମୟଟିକ ବ୍ୟତୀତ ଆଉ ଏକୁଟିଆ ରହିବାକୁ ତାଙ୍କୁ ବେଳ ମିଳିବ ନାହିଁ । ନର୍ସ୍ ପ୍ରେ କାମରେ ଥପ୍ ହୋଇ କେତେ-ବେଳେ ଥିଲା, ତାଙ୍କର ମନେପଡ଼ିଲା ନାହିଁ । ଟୋକା ବୟସରେ ସମସ୍ତେ ଏଇପରି ଅଥୟ ।

ସେ ନିଜେ ବି ଦିନେ ଏଇପରି ଥିଲେ । ଭଗବାନ୍ ! ଯୌବନରେ ସେ କେଡ଼େ ଅଥୟ ନଥିଲେ ସତେ ! ଏଇ ଶରୀର, ଆଜ ଏତେ ଶୁଖିଶାଖି ଗଲାଣି, ସେତେବେଳେ ଓଜରେ ଭରପୂର ହୋଇଥାଏ । ଖାଲି ଯେ ଓଜ (ଶାରୀରିକ ସାମର୍ଥ୍ୟ) ଥାଏ ତାହା ନୁହେଁ, ତେଜ ଥାଏ—ଯଥେଷ୍ଟ ତେଜର

ମୂଳରେ ଥାଏ ଶରୀରର ସୁସ୍ଥ ରକ୍ତ ଓ ମାଂସପେଶୀର ସୁଦୃଢ଼ତା । ତୁଏତ, ଭଲ ପିତାମାତାଙ୍କ ରଜଃ ବୀର୍ଯ୍ୟ ସାଙ୍ଗକୁ ସୁଖାଦ୍ୟ ଓ ଶୁଦ୍ଧ ଜଳବାୟୁର ଯଥାଯଥ ସମ୍ମିଶ୍ରଣରେ ମଣିଷର ମାନସିକ ତେଜ ସୃଷ୍ଟିହୁଏ । ତାଙ୍କର ପିତୃପୁରୁଷ ଥିଲେ ଭଲ, ଇଂଲଣ୍ଡରୁ ଆସିଥିବା ବଳିଷ୍ଠ ଲୋକେ, ସଂଭ୍ରାନ୍ତ ପରିବାରର ଅବରଜ ସନ୍ତାନ । ସେତେବେଳର ସମାଜରେ ସମସ୍ତଙ୍କର ନିର୍ଭର ଥିଲା ଜମି ଉପରେ । ଏମାନେ ଇଂଲଣ୍ଡରେ ଭୂମିହୀନ ହୋଇ ଏଠାକୁ ଚାଲି ଆସିଥିଲେ ।

ଏ ସବୁ କଥା ମନେ ପକାଇବାକୁ ଏତେବେଳେ ତାଙ୍କର ସମୟର ଅଭାବ । ଏ ଯେଉଁ ଅଳ୍ପ ସମୟ ଏତେବେଳେ ତାଙ୍କ ହାତରେ ଅଛି, ସେତକ ସେ କଟାଇବେ ନିଜେ ବ୍ୟକ୍ତିଗତ ଜୀବନର କଥା ମନେ ପକାଇ —ଯେଉଁ କଥା ସବୁ ତାଙ୍କ ନିଜ ବଂଶୀତ ଆଉ କାହାରିକୁ ଜଣାନାହିଁ । ପ୍ରଥମେ ମନେ ପକାଇବେ ସେଇସବୁ କଥା, ଯାହାପାଇଁ ତାଙ୍କ ମନରେ ଅବଶୋଷ ରହିଯାଇଛି ; ଯାହାକି ସେ ଜୀବନରେ କରି ପାରିନାହାନ୍ତି, ଅଥଚ ଏତେବେଳେ ବୁଝିପାରୁଛନ୍ତି; କରିଥିଲେ ଭଲ ହୋଇଥାନ୍ତା ।

ପ୍ରାୟ ଅଶୀ ବର୍ଷ ପଛକୁ ତାଙ୍କ ମନ ଫେରିଗଲା ; ଏଥିରୁ ୭୦ ବର୍ଷର କଥା ପ୍ରାୟ ଭଲଭାବେ ତାଙ୍କର ମନେଅଛି । ଆଜି ତାଙ୍କର ମନେ ହେଉଛି, ସେ ହେଲେ ଆହୁରି ଅଧିକ ଅମାନିଆ ହୋଇ ତାଙ୍କ ବାପାଙ୍କ ବାରଣ ଅମାନ୍ୟ କରିଥାନ୍ତେ ! ତାଙ୍କର ସ୍ମୃତି, ତାଙ୍କ ବ୍ୟକ୍ତିଗତ ଜୀବନର ପ୍ରାରମ୍ଭିକ ଅସ୍ପଷ୍ଟ ଅନୁଭୂତି ଭିତରେ ଖଣ୍ଡିଜଡ଼ା ଦେଇ ଯାଇ ପହଞ୍ଚିଲା, ତାଙ୍କ ଘରର ପୃଷ୍ଠପଟ ବିସ୍ତୀର୍ଣ୍ଣ ପ୍ରାନ୍ତରରେ । ଏଇ ପ୍ରାନ୍ତରଗୁଡ଼ିକର ପ୍ରାନ୍ତରୁ ଲମ୍ବିଥାନ୍ତି ଭର୍ଜିନିଆ ଉପତ୍ୟକାର ଦୀର୍ଘ ତୃଣଭୂମି । ତାଙ୍କ ପିତା ତ ଭାରି କଡ଼ା ଲୋକ ; ପୁଅ ସ୍କୁଲରେ ପଢ଼ିବାକୁ ନାରାଜ ହେବାରୁ, ଟିଉଟର୍ ନିଯୁକ୍ତ କରି ଘରେ ପାଠ ପିଆଇବାର ବ୍ୟବସ୍ଥା କରିଥିଲେ । ଫଳରେ ଗ୍ରୀଷ୍ମକାଳର ରମଣୀୟ ପ୍ରାତଃକାଳରେ, ଏ ତୃଣଭୂମି ଓ ତନ୍ମଧ୍ୟବର୍ତ୍ତୀ ଛଟିମା ସୂର୍ଯ୍ୟକିରଣରେ ପ୍ଲାବିତ ହେଉଥିବାବେଳେ ତାଙ୍କୁ ଘର ଭିତରେ ବସି ରହି ଲାଟିନ୍ ଓ ଗ୍ରୀକ୍ ଘୋଷିବାକୁ ପଡ଼ୁଥିଲା ।

ମିଷ୍ଟର ନର୍ଟର ମନର କ୍ଷୋଭରେ ଆର୍ତ୍ତ ଚିତ୍କାର କଲେ ; ମନକୁ ମନ କହିଲେ, "ମୁଁ ବଞ୍ଚିତ ହୋଇଛି, ସୂର୍ଯ୍ୟ କିରଣର ଅନୁଭୂତିରୁ;

ବଂଚିତ ହୋଇଛୁ ନଦୀଧାରଧୌତ ତୃଣଶଯ୍ୟାରେ ନଗ୍ନ ପଦସଂଚରଣର ସୁଖ ଅନୁଭବ କରିବାରୁ ; ମୋଟ ଉପରେ ବଞ୍ଚିତ ହୋଇଛି ପ୍ରାତଃକାଳର ଉପଭୋଗରୁ ।”

ଲାଟିନ୍ ଓ ଗ୍ରୀକ୍ କେଉଁ କାଳରୁ ଭୂମି ପାସୋର ଗଲେଣି । କିନ୍ତୁ ସକାଳର ଯେଉଁ ସମୟତକ ତାଙ୍କୁ ଏଥିପାଇଁ ଆବଦ୍ଧ ହୋଇ ରହିବାକୁ ହୋଇଥିଲା, ସେ ସମୟର ଅଭାବ-ବୋଧ ତାଙ୍କର ଆଜି ବି ମନରେ ସଦ୍ୟ ହୋଇ ରହି, ଦୁଃଖ ଦେଉଛି । ସେ ସମୟତକ ତାଙ୍କର ଫେରି ପାଇବାକୁ ଆଜି ପ୍ରବଳ ଇଚ୍ଛା ହେଉଛି । ପିଲାଦିନର ଅସ୍ଥିରତା ଧରି ଆଜି ତାଙ୍କର ଅନ୍ତରାତ୍ମା ସେଇ ନଷ୍ଟ ହୋଇଥିବା ସମୟତକ ଅନ୍ୱେଷଣ କରି-ବାକୁ ପଛକୁ ଧାଉଁଛି । ଶରୀର ମୃତ୍ୟୁରେ ତ ଆତ୍ମା ଅଂଶୀଦାର ନୁହେଁ ! ନୁହେଁ ବୋଲି ଆଜି ପରିଷ୍କାର ମନେ ପଡ଼ୁଛି, ସେତେବେଳେ ସୂର୍ଯ୍ୟ କିରଣର ସ୍ନିଗ୍ଧତା ନଦୀ କୂଳରେ କଟାଇଥିବା ମୁହୂର୍ତ୍ତମାନଙ୍କର ରମଣୀୟତା, ନଦୀକୂଳର ଶୈବାଳାବୃତ ଶିଳା ଖଣ୍ଡର ମସୃଣ ଆର୍ଦ୍ର ସ୍ପର୍ଶ, ନଦୀକୂଳବର୍ତ୍ତୀ ବନାନୀର ଗଭୀର ନିସ୍ତବ୍ଧତା ତାଙ୍କ ଇନ୍ଦ୍ରିୟମାନଙ୍କୁ କପରି ଅଭିଭୂତ କରି ରଖିଥିଲା—ଆଜିର ଏ ଶ୍ଳଥ ଶରୀରର ଅଙ୍ଗପ୍ରତ୍ୟଙ୍ଗଙ୍କୁ ନୁହନ୍ତି, ପ୍ରଥମ ଜୀବନର ବଳିଷ୍ଠ ଓ ପୁଷ୍ଟ ସେଇ ଅଙ୍ଗ ପ୍ରତ୍ୟଙ୍ଗଙ୍କୁ, ଯାହାଙ୍କର କି ଅନୁଭବ କରିବାର, ଉପଭୋଗ କରିବାର ସାମର୍ଥ୍ୟ ଥିଲା । ଆହା ! ସେତେବେଳେ ଏ ସବୁ ଉପଭୋଗ ପାଇଁ ସେ ଯେଉଁତକ ସମୟ ପାଇଥିଲେ, ତହିଁରୁ ବହୁ ଗୁଣରେ ଅଧିକ ସମୟ ସେ ପାଇଥାନ୍ତେ କି ? ତାଙ୍କ ମନ କ୍ରୋଧରେ ଜଳି ଉଠିଲା ; ଏହି କ୍ରୋଧର ତାପ ତାଙ୍କ ଦେହକୁ କ୍ଷଣକ ପାଇଁ ବଳୁଆ କରିଦେଲା । ସେ ମାଣ୍ଡିରୁ ମୁଣ୍ଡ ଟେକି ପ୍ରକୋଷ୍ଠର ଚତୁର୍ଦ୍ଦିଗରେ ଚକ୍ଷୁ ଫେରାଇ ନେଲେ । ସନ୍ଧ୍ୟା ରାତିରେ ରୂପାନ୍ତରିତ ହେଲାବେଳେ ସେ ଲାଇଟ୍ ସୁଇଚ୍ ଟିପି ନାହାନ୍ତି । ବର୍ତ୍ତମାନ ଗବାକ୍ଷ ବାଟେ ଚନ୍ଦ୍ର କିରଣ ତାଙ୍କ ପ୍ରକୋଷ୍ଠକୁ ଆଲୋକିତ କରୁଛି । ଏହିପରି ବନେ ରାତିରେ ଚନ୍ଦ୍ର ଆଲୋକ ବର୍ଷାଇଣ କରିଥିଲା, ଯେତେବେଳେ ତାଙ୍କୁ ହୋଇଥିଲା ମାତ୍ର ସତର ବର୍ଷ, ଇଜାବେଲ କେନ୍‌ଙ୍କ ପ୍ରେମରେ ସେ ପାଗଳ ହୋଇଥିଲେ ।

ଇଜାବେଲ୍‌ଙ୍କ କେଶର ସୁଗନ୍ଧ ଅଦ୍ୟାପି ତାଙ୍କର ମନେ ଅଛି । ଉଚ୍ଚରେ ସେ ଥିଲେ ଖୁବ୍ ଶ୍ରେଷ୍ଠ । ତାଙ୍କ ନିଜର ୬ଫୁଟ ଉଚ୍ଚତା ପାଖରେ ଇଜାବେଲ୍ ତାଙ୍କ ଗ୍ରୀବ ପର୍ଯ୍ୟନ୍ତ ବି ହୁଅନ୍ତି ନାହିଁ । ଦୁହେଁ ମଫସଲର ଗୋଟିଏ ରାସ୍ତାରେ ସାଙ୍ଗ ହୋଇ ଯାଉଥିଲେ । କାହିଁକି ସେ ଦୁହେଁ ଏପରି ଯାଉଥିଲେ, ତାହାର କାରଣ ମନେ ପକାଇବାକୁ ଚେଷ୍ଟା କରି ସେ ଆଗ ବିଫଳ ହୋଇଥିଲେ ! ହଁ, ହଁ. ପଛକୁ ମନେ ପଡ଼ିଲା । ତାହାର ପୂର୍ବ ରାତ୍ରିରେ ସେ ଦୁହେଁ ମାଉଣ୍ଟ ରୋଜ୍ କ୍ଲବ୍ ହାଉସରେ ନାଚିଥିଲେ । ସାମାଜିକ ମିଳନରେ ସେ ପ୍ରଥମ ଥର ପାଇଁ ସେଦିନ ଆତ୍ମପ୍ରକାଶ କରିଥିଲେ । ମାଉଣ୍ଟ୍ ରୋଜରେ ଏଭଳି ନୂତନ ଯୁବତୀଙ୍କ ଆବିର୍ଭାବ ବିରଳ । ସମସ୍ତଙ୍କଠାରୁ ସୁନ୍ଦର ଓ ଆକର୍ଷଣୀୟ ହୋଇଥାଏ ତାଙ୍କର ରୂପ—ନାଗରୀ ଜୀବନର କଳୁଷତା ତାଙ୍କୁ ସ୍ପର୍ଶ କରି ନଥାଏ । ଏଇଭଳି ଶୁଦ୍ଧ-ଚରିତ୍ରା ପ୍ରଥମ-ଯୌବନାଙ୍କର ଥିଲା ସେତେବେଳର ପୁରୁଷ ସମାଜରେ ଆଦର । ତାଙ୍କୁ ଦେଖିଲେ ଜଣାଯାଉଥିଲା ସେ କେବେ ହେଲେ କୌଣସି ପୁରୁଷକୁ ଚୁମ୍ବନ ବି ଦେଇ ନାହାନ୍ତି । ଏହି କାରଣରୁ ତାଙ୍କ ମନରେ ଜାତ ହୋଇଥିଲା ଲାଳସା, ଖାଲି ଲାଳସା କାହିଁକି ଦୃଢ଼ ସଂକଳ୍ପ, ତାଙ୍କଠାରୁ ପ୍ରଥମ ଚୁମ୍ବନ ପାଇବା ନିମନ୍ତେ । ତହିଁ ଆରଦିନ ସକାଳେ ସେ ଯାଇ ଇଜାବେଲ୍ ହୋନ୍‌ଙ୍କ ଘରେ ହାଜର ହେଲେ, ହାତରେ ଗୋଲାପ କଢ଼ି ଓ ମେଡ଼ନ ହେଆର ଗଛର କ୍ଷୁଦ୍ର ଡାଳ କେତୋଟିରେ ତିଆରି ଗୋଟିଏ ତୋଡ଼ା ଧରି । ସେଦିନର ସ୍ମୃତି ଆଜି କେଡ଼େ ଆମୋଦକର ହେଉଛି ! ସେ ନେଇଥିଲେ, ଛଅଟି ଲାଲ୍ ମସ-ଗୋଲାପର କଳି । ଇଜାବେଲ୍ ସେଗୁଡ଼ିକ ଟିକିଏ ଶୁଂଘି, ଅତି ଆଦରରେ ନେଇ ଗୋଟିଏ କ୍ଷୁଦ୍ର ମ୍ୟାହୋଗାନି ଟେବୁଲରେ ଥୁଆ ହୋଇଥିବା ଚିନାମାଟିର ଫୁଲଦାନିରେ ରଖିଲେ । ସେ ଦିନ ପାଗ ଭଲ ଥାଏ, ସେ ଇଜାବେଲଙ୍କୁ ଅନୁରୋଧ କଲେ ତାଙ୍କ ସଙ୍ଗେ ବାହାରେ ଟିକିଏ ବିଚରଣ କରିବାକୁ ; ବଗିଚାରୁ ସେମାନେ ରାସ୍ତା ଉପରକୁ ବାହାରିଲେ । ସେଇଠାରେ ରାସ୍ତାକଡ଼ ବାଡ଼ର ଆଢ଼ୁଆଳରେ ସେ ପ୍ରେମଭିକ୍ଷା କରିଥିଲେ ।

"ଇଜାବେଲ୍ ମୋର ପ୍ରେମର ପ୍ରତିମା, ମୋତେ ଗୋଟିଏ ଚୁମା ଦିଅ ।" ସେ ଇଜାବେଲଙ୍କ ହାତ ଧରିବାକୁ ନିଜ ହାତ ବଢ଼ାଇଲେ ।

ଇଜାବେଲ ହାତ ଧରିବାକୁ ଦେଲେ । ତାଙ୍କ ସୁନ୍ଦର ମୁହଁ କମ୍ପିତ ଚକିତ ହୋଇ ମିଷ୍ଟର ନର୍ଟନ୍‌ଙ୍କ ଆଡ଼କୁ ଘୁରିଲା ; ମିଷ୍ଟର ନର୍ଟନ୍ ମୁହୂର୍ତ୍ତକ ପାଇଁ ଭାବୁଥିଲେ, ବୋଧହୁଏ ସେ ତାଙ୍କ କାମନା ପୂରଣ କରିବାକୁ ଦେବେ । ତାଙ୍କ ମନରେ କାମାସକ୍ତି ପ୍ରବଳ ହୋଇ ଉଠିଲା । ଆଜି ଏତେ ବର୍ଷ ପରେ ବି ସେଇ ଆସକ୍ତିର ଅବଶେଷ ମନରେ ରହିଯାଇଛି । ଇଜାବେଲଙ୍କ ପାଟଳ ଛଳ ଛଳ ଆଖି ଦୋ'ଟି ଆଜି ବି ସ୍ମୃତିରେ ଜାଗି ଉଠୁଛି, ତାଙ୍କ ଉଦ୍ୟାନ-ଟୋପି ତଳେ ପାଟଳ କେଶଗୁଛ ବି ଦିଶିଯାଉଛି—ସେଦିନ ସକାଳେ ଇଜାବେଲ ପିନ୍ଧିଥାନ୍ତି ଗୋଟିଏ ଧଳା ପୋଷାକ—ସୁନ୍ଦର ଓ ପାତଳ । ସେ ମନେ କଲେ, ବାସ୍ତବିକ୍ ଧଳା ପୋଷାକ ନବଯୁବତୀଙ୍କୁ ବେଶ୍ ମାନେ । ସେତିକବେଳେ ଅଭିଭୂତ ହୋଇ ଯୁବତୀର ଅଧର ସ୍ପର୍ଶ କରିବାକୁ ସେ ନଇଁ ପଡ଼ନ୍ତେ ଇଜାବେଲ୍ ମୁହଁକୁ ଆଡ଼େଇ ଦେଲେ ।

କ୍ଷୀଣ ସ୍ୱରରେ କହିଲେ, "ନା, ନା ।"

"ନାହିଁ କାହିଁକି, ପ୍ରିୟେ !"

"କାରଣ—" ।

"କ'ଣ କାରଣ ?"

"ମୁଁ ସେମିତି ଟୋକି ନୁହଁ ।"

"କେମିତି ଟୋକି, ଇଜାବେଲ ?"

ଇଜାବେଲ୍‌ଙ୍କ ଅଧର ସ୍ପର୍ଶ କରିବା ପାଇଁ ସେତେବେଳେ ତାଙ୍କ ମନରେ ଅଦମ୍ୟ ପିପାସା ଜାଗି ଉଠିଥାଏ ; ତାଙ୍କୁ ପାଖରେ ପାଇବାକୁ ସେ ସ୍ୱର୍ଗସୁଖ ବୋଲି ମନେ କରୁଥାନ୍ତି ।

ଇଜାବେଲ୍ ତାଙ୍କୁ ଦୂରକୁ ଠେଲି ଦେଇ କହିଲେ, "କେମିତି ଟୋକି, ତୁମେ ଜାଣ ।"

"ତୁମେ ଏମିତି ସେମିତି ଟୋକି ନୁହଁ, ଇଜାବେଲ୍ ! ତୁମେ ଗୋଟିଏ ଗୋଲାପର କଳି ।"

ସେ ତାଙ୍କୁ ପାଲେଇବାକୁ ଖୁବ୍ ଚେଷ୍ଟାକଲେ ! କିନ୍ତୁ ସେ ବୁଢ଼ୀଙ୍କଠାରୁ ଯେଉଁ ଶିକ୍ଷା ପାଇଥିଲେ, ତାହାର କିଣା ହେଲା । ମାଙ୍କଡ଼ ବୁଢ଼ୀଙ୍କର ସେଇ ପୁରୁଣାକାଳିଆ ଶିକ୍ଷା—ପିଲା ଦିନୁ ଆରମ୍ଭ କରି ଯୁବତୀ ହେବା ଯାଏଁ ଏମାନେ କାନରେ ଫୁଙ୍କିଥାନ୍ତି—"ପୁରୁଷ ଯାହା ମାଗିବେ

ତା' ଯଦି ତାଙ୍କୁ ସାଙ୍ଗେ ସାଙ୍ଗେ ଦେଇ ବସିବ, ତେବେ ସେ ଆଉ ତୁମକୁ ବାଧା ଦେବାକୁ ମଙ୍ଗିବେ ନାହିଁ ।"

ସେ ଯାହା ମାଗିଲେ, ଇଜାବେଲ୍‌ଙ୍କଠାରୁ ତାହା ମିଳିଲା ନାହିଁ । ଧୀର ସ୍ଥିର ଭାବରେ ଦୁହେଁ ତାଙ୍କ ଘରକୁ ଫେରିଲେ, ସେ ଇଜାବେଲ୍‌ଙ୍କ ଠାରୁ ବିଦାୟ ନେଇ ଆସିଲେ । ତା'ପରେ ଥରେ ଦି'ଥର — ମୋଟ ଉପରେ ତିନିଥର — ସେ ଇଜାବେଲ୍‌ଙ୍କ ଘରକୁ ଯାଇଛନ୍ତି । ପ୍ରଥମ ଦିନର ପ୍ରତ୍ୟାଖ୍ୟାନ ପାସୋରି ପାରି ନ ଥିବାରୁ ବୋଧହୁଏ, ତାଙ୍କୁ ବିଭା ହେବାକୁ ଇଚ୍ଛା ପ୍ରକାଶ କରିନାହାନ୍ତି । ବୁଢ଼ୀଙ୍କ କଥା ଠିକ୍, ନା ଇଜାବେଲ୍ ପ୍ରଥମ ଦିନ ତାଙ୍କ ଅନୁନୟ ରକ୍ଷା କରିଥିଲେ, ସେ ତାଙ୍କୁଇ ବିଭା ହୋଇଥାନ୍ତେ; ସେ କଥା ସେ ଠିକ୍ କରି କହି ପାରିବେ ନାହିଁ । ସେତେବେଳେ ସେ କାହାକୁ ବିଭା ହୋଇ ବାନ୍ଧି ହୋଇଯିବାକୁ ପ୍ରସ୍ତୁତ ନଥିଲେ—ଖାଲି ଚାହୁଁଥିଲେ, କୌଣସି ସୁନ୍ଦରୀକୁ ପ୍ରେମ କରିବା ପାଇଁ ।

ସ୍ମୃତି ଶୀତେଇଗଲା । ହାୟ ! ସେ ଏ ସ୍ଥଳରେ ବି ବଞ୍ଚିତ ହୋଇଛନ୍ତି । ଇଜାବେଲ୍‌କୁ ଚୁମା ଦେବାକୁ ସେ ଜିଦ୍ କରିଥାନ୍ତେ, ବଳ ପ୍ରୟୋଗ କରି ତା'କୁ ଚୁମା ଦେଇଥାନ୍ତେ । ତେବେ ଆଜ ବଞ୍ଚିତ ହୋଇ ନଥାନ୍ତେ । ସେଦିନ ଯେକୌଣସିମତେ ଚୁମା ଦେଇଥିଲେ, ତାହା ସ୍ମୃତିର ସଂପତ୍ତି ହୋଇ ରହିଥାନ୍ତା । ସେପରି ନ କରିବାରୁ ଆଜ ମନର ଏ ଶକ୍ତିଭାବ !

ଅବଶ୍ୟ ପରେ ସେ ବିବାହ କଲେ ସିନ୍ଥିଆଙ୍କୁ । ସିନ୍ଥିଆ ସ୍ତ୍ରୀ ହିସାବରେ ଭଲ ଯେପରି, ତାଙ୍କୁ ବିଭାହୋଇ ସେ ସୁଖ ପାଇଛନ୍ତି ସେହିପରି । କିନ୍ତୁ ସିନ୍ଥିଆ ତ ଆଉ ଇଜାବେଲ୍ ନୁହନ୍ତି । ଇଜାବେଲ୍ ତାଙ୍କ ଦୃଷ୍ଟିରେ ଇଜାବେଲ୍ ନାମଧେୟ ନାରୀ ନୁହନ୍ତି, ସେ ହେଉଛନ୍ତି ସେଇ ଗୋଟିଏ ମୁହୂର୍ତ୍ତର ସୁନ୍ଦରୀ ଯୁବତୀ; ଯେଉଁ ମୁହୂର୍ତ୍ତରେ ତାଙ୍କୁ ଗୋଟିଏ ଚୁମ୍ବନ ଦେବାକୁ ସେ ଚାହିଁଥିଲେ । ଏତେ ବର୍ଷ ଚାଲିଗଲା କିନ୍ତୁ ଇଜାବେଲ୍ ତାଙ୍କୁ ବଞ୍ଚିତ କରିଥିବାର ଅବବୋଧ ତାଙ୍କର ଅନୁଭୂତ ହୋଇ ନଥିଲା, ଆଜ ହେଉଛି । ସିନ୍ଥିଆଙ୍କ ସଙ୍ଗେ ସଂସାର କରି ସେ ଖୁବ୍ ସୁଖ ପାଇଛନ୍ତି; ସିନ୍ଥିଆଙ୍କ ଯୋଗୁଁ ସେ ପୁଅ କନ୍ୟା ପାଇଛନ୍ତି । ସିନ୍ଥିଆ ଥିଲେ ଟାଣୁଆ ଓ ଭାବରେ ଗମ୍ଭୀର , ଶରୀର ଯେପରି ହୃଷ୍ଟପୁଷ୍ଟ ଥିଲା ମନ ଥିଲା ସେହିପରି ସୁସ୍ଥ

ଓ ସରସ । ବାସ୍ତବିକ୍ ତାଙ୍କ ବିବାହ ଥିଲା ସୁଖମୟ । ସିନ୍ଥିଆଙ୍କ ଆଚରଣରେ ଛଳନାର ସ୍ପୃଷ୍ଟ ନଥିଲା । ତାଙ୍କର ଧୂସର ଚକ୍ଷୁ, କୃଷ୍ଣ କବରୀ, ମସୃଣ ଶୁଭ୍ର ଶରୀର, ମମତାମୟ ରକ୍ତ ଅଧର ଓ ଆରାମଦାୟକ ବାହୁଲତା···ସିନ୍ଥିଆଙ୍କର ଗୋଟିଏ ନୁହେଁ, ହଜାରେ ସ୍ମୃତି ଏକ ସମୟରେ ତାଙ୍କ ମନରେ ଆସି ଆନ୍ଦୋଳନ ସୃଷ୍ଟି କରୁଛି । ସିନ୍ଥିଆଙ୍କୁ ସେ ପୂର୍ଣ୍ଣଭାବରେ ନିଜର କରି ପାରିଥିବେ ବୋଲି କହି ପାରିବେ ନାହିଁ, ସିନ୍ଥିଆ ମଧ୍ୟ ତାଙ୍କୁ ପୂର୍ଣ୍ଣପୂରି ଅଧିକାର କରି ନଥିଲେ । ଦୁହେଁ ସଂସାର ବେଉସାରେ ଥିଲେ ଦୁଇ ଅଂଶୀଦାର ; ସିନ୍ଥିଆଙ୍କ ଉପରେ ତାଙ୍କର ଥିଲା ପୂର୍ଣ୍ଣ ବିଶ୍ୱାସ । ସିନ୍ଥିଆ ତାଙ୍କୁ ଦେଇଥିଲେ ପାଞ୍ଚଟି ସନ୍ତାନ—ଦୁଇଟି କନ୍ୟା, ତିନୋଟି ପୁତ୍ର । ଏମାନେ ପ୍ରତ୍ୟେକ ଏତେବେଳକୁ ବିବାହ ହୋଇ ସାରିଲେଣି ; ଏମାନଙ୍କର ନିଜର ସନ୍ତାନ ବି ହେଲେଣି ନାତି ନାତୁଣୀଙ୍କ ପ୍ରତି ତାଙ୍କର ମମତା ନାହିଁ । ସିନ୍ଥିଆ ବଞ୍ଚିଥାନ୍ତା କି, ଉଭୟେ ନିଜ ପୁତ୍ରକନ୍ୟାଙ୍କ ପିଲାପିଲିଙ୍କୁ ଧରି ଆନନ୍ଦ ଉପଭୋଗ କରିଥାନ୍ତେ । ପିଲାଙ୍କୁ ଚଳାଇବାର ଦକ୍ଷତା ସିନ୍ଥିଆର ଥିଲା । ସେ ନିଜେ ସିନ୍ଥିଆଙ୍କୁ ହରାଇ, ବୃଦ୍ଧ ଜୀବନ ଏକୁଟିଆ କଟାଇବା ଯୋଗୁଁ, ନାତି ନାତୁଣୀଙ୍କ ଆକର୍ଷଣ ଅନୁଭବ କରିପାରି ନାହାନ୍ତି । ଅବଶ୍ୟ ସିନ୍ଥିଆଙ୍କ ପରେ କ୍ରୀଷ୍ଟିନ୍‌ଙ୍କୁ ବିବାହହେଲେ । କିନ୍ତୁ ଏ ବିବାହ ତାଙ୍କୁ ଅଧିକ ନିଃସଙ୍ଗ କରିଦେଲା ବୋଲି କହିଲେ ଚଳେ । କ୍ରମେ ସବୁ ପିଲାଙ୍କଠାରୁ ତାଙ୍କର ମମତା କମିଗଲା ; ନିଜେ ତ ସେ ଗୋଟିଏ ପିଲା ପରି ଥିଲେ, ନିଜ ପ୍ରତି ମଧ୍ୟ ଅନାସ୍ଥା ଆସିଲା ।

ତାଙ୍କର ଆଠୋଟି ନାତି ନାତୁଣୀ – ବାସ୍ତବିକ୍ କି ଭୟାନକଭାବେ ମଣିଷ ନିଜର ସଂଖ୍ୟା ବୃଦ୍ଧି କରିବାରେ ଲାଗିଛି । ତାଙ୍କର ନିଜ ପିଲେ, ଅନ୍ୟ ପିଲାଙ୍କ ସହିତ ମିଶି ସୃଷ୍ଟିକ୍ରିୟାରେ ଲାଗିବା ତାଙ୍କୁ ବିଷଦୃଶ ବୋଧ ହୋଇଛି । ସ୍ୱେ ଯେଉଁମାନେ ଜାତ ହୋଇଛନ୍ତି ସେମାନଙ୍କର, ତାଙ୍କ ନିଜ ସହିତ କି ସମ୍ପର୍କ ! ସେ ନିଜେ ବୁଢ଼ା ହୋଇଗଲାବେଳକୁ ଏଗୁଡ଼ାକ ପିଲା । ତାଙ୍କ ନିଜ ଜୀବନ ସରି ଆସିଲାବେଳକୁ ଏମାନଙ୍କର ଜୀବନ ଆରମ୍ଭ ହେଉଛି ।

ପୁଣି ସେଇ ସିନ୍ଥିଆ କଥା ମନେ ପଡ଼େ । ତାଙ୍କ ନିଜ ପିଲାଙ୍କ ସାଙ୍ଗେ ଜୀବନ ଉପଭୋଗ କରିବାରେ ଏଇ ସିନ୍ଥିଆ ଏକରକମ ବାଧା

ଦେଉଥିଲା ବୋଲି କହିଲେ ଚଳେ । ଆଜ ଅସ୍ପଷ୍ଟଭାବରେ ମନେ ପଡ଼ୁଛି ସେଇ ସମୟ, ଯେତେବେଳେ ତାଙ୍କୁ ଘେରି ରହିଥିବା କୋମଳ ଶିଶୁଗୁଡ଼ିକୁ —ନାତି ନାତୁଣୀ ନୁହନ୍ତି, ଯାଙ୍କୁ ସେ ନିଜର ବୋଲି କେବେଁ ମନେ କରିପାରି ନାହାନ୍ତି— ତାଙ୍କ ନିଜ ଅଙ୍ଗର ଗୋଟିଏ ଗୋଟିଏ ଅଂଶ ବୋଲି ସେ ଅନୁଭବ କରୁଥିଲେ । ହସଖୁସି ତାଙ୍କୁ ସବୁବେଳେ ସୁଖଲାଗେ ; ଏଇ ପିଲାମାନେ ତାଙ୍କ ସଙ୍ଗେ ହସଖୁସିରେ ମାତିଥାନ୍ତି ; ଏତିକବେଳେ ହଠାତ୍ ସିନ୍ଥିଆ ଆସି ତାଙ୍କୁ ତାଗିଦ୍ କରେ, ସେମାନେ ଲୁଗାପଟା ଯଥାସ୍ଥାନରେ ରଖିନାହାନ୍ତି, ଦାନ୍ତ ସଫା କରି ନାହାନ୍ତି, ପିଆନୋ ବଜାଇ ନାହାନ୍ତି, ଶ୍ରାନ୍ତିଦାୟକ ଇତର ସବୁ କାର୍ଯ୍ୟରେ ହେଳା କରିଛନ୍ତି । ପିଲାଙ୍କର ହସଖୁସି ମଉଳିଯାଏ ।

ସେ ପ୍ରତିବାଦ କରନ୍ତି, "ଥାଉ, ଥାଉ, ସିନ୍ଥିଆ । ପିଲା ଟିକଏ ଯଦି ଖୁସିବାସି କରି ନ ପାରିବେ, ତେବେ ତାଙ୍କ ଜୀବନ ଯେ ବେକାର୍ !"

ଧୀର ସ୍ଥିର ଭାବରେ ସିନ୍ଥିଆ ଉତ୍ତର ଦିଅନ୍ତି, "ସେମାନଙ୍କର ଯାହା କରିବାର କଥା ସେତିକ କରିସାରି ମଉଜ କରୁଥାନ୍ତୁ ।" ତାଙ୍କର ଏ ଭାବରେ କିନ୍ତୁ ପ୍ରକୃତ ଶାନ୍ତିର ସତ୍ତା ନଥାଏ ।

ସିନ୍ଥିଆଙ୍କ ଯୋଗୁଁ ସେ ତାଙ୍କ ପିଲାଙ୍କ ସହିତ ଗାତରେ ପଶିଲା ପରି ଲୁଚ୍‌କ୍ଲେର୍ କାରବାର ଆରମ୍ଭ କଲେ । ସେମାନେ ଭୁଇଁତଳେ ଛପିଗଲେ ବୋଲି କହିଲେ ଯଥାର୍ଥ ହେବ । ବାହାରେ ସେମାନେ ଶାନ୍ତଶିଷ୍ଟ ଆଚରଣ କରୁଥାନ୍ତି ; ସିନ୍ଥିଆକୁ ଏହା ବେଶ୍ ଭଲ ଦିଶୁଥାଏ । କିନ୍ତୁ ଯେତେବେଳେ ସେ ବାହାରକୁ ବୁଲିଯା'ଏ —ସେ ମୁଣ୍ଡବାଳ ସଜାଡ଼ିବାକୁ ଯାଇ ଘଣ୍ଟା ଘଣ୍ଟା ସେଠାରେ ବାଳ ସୁଖାଉଥାଏ, ଏ ସମୟତକ ଆମ ପକ୍ଷରେ ବଡ଼ ଆନନ୍ଦଦାୟକ ହୁଏ, କେତେବେଳେ କମିତ ଦରଜି ଦୋକାନରେ ନିଜ ପୋଷାକର ମାପ ଦେବାକୁ ଯାଏ ; ପୁଣି କେତେବେଳେ ବାଦ୍ୟ ସଙ୍ଗତକୁ ଯା'ଏ, ସବୁଠାରୁ ଯନ୍ତ୍ର ସଙ୍ଗୀତ ଶୁଣିବାକୁ ତା'ର ବେଶୀ ସଉକ—ସେତେବେଳେ ତାଙ୍କୁ ସମୟ ମିଳେ ପିଲାଙ୍କ ସଙ୍ଗେ ଆମୋଦ କରିବାକୁ । ଏଇ ଆମୋଦରେ ସେ ଏକାବେଳକେ ମଜ୍ଜି ଯାନ୍ତି ! ବର୍ତ୍ତମାନ ଜଣାଯାଉଛି, ଏ ଆମୋଦରେ ତାଙ୍କର ସ୍ୱାର୍ଥ ଥାଏ

ଖୁବ୍—ପିଲାଙ୍କ ଆମୋଦରେ ସେ ନିଜେ ଆମୋଦ ଅନୁଭବ କରୁଥାନ୍ତି, ସେମାନଙ୍କ ଆନନ୍ଦରେ ତାଙ୍କର ନିଜର ଆନନ୍ଦ ହୁଏ ଓ ସେମାନଙ୍କ ହାସ୍ୟରୋଳ ହୋଇଥାଏ ତାଙ୍କ ନିଜ ହାସ୍ୟର ଉତ୍ସ । ସିନ୍ଥିଆ ବାଦ୍ୟ-ସଂଗତରୁ ଫେରିଲାବେଳେ ଦିନେ ଯେପରି ସେ ସେଠାରେ କାନ୍ଦୁଥିଲା । ଅପରିଚିତ ଲୋକଙ୍କ ଭିତରେ ବସି ସଂଗୀତ ଶୁଣୁ ଶୁଣୁ ସେ କିପରି କାନ୍ଦପାରେ ବୋଲି ତାଙ୍କୁ ଆଶ୍ଚର୍ଯ୍ୟ ଲାଗେ । ଏ ସବୁ ଶ୍ରୋତାମାନେ ଅପରିଚିତ ହେଲେ ବି ପରସ୍ପରର ଚିର ପରିଚିତ କହିବାକୁ ହେବ, କାରଣ ସଂଗୀତର ବନ୍ଧା ଗତିରେ ରଚିତ ବନ୍ଧନରେ ଏମାନେ ସମସ୍ତେ ଏକାଠି ବନ୍ଧା ହୋଇଥାନ୍ତି । ସଂଗୀତ ପ୍ରତି ତାଙ୍କ ନିଜର ଆଦର ଆଦୌ ନଥିଲା, କାରଣ ସଂଗୀତର ପ୍ରାଣମତାଣିଆ ମୂର୍ଚ୍ଛନା ଭିତରେ ସେ ଲକ୍ଷ୍ୟ କରୁଥିଲେ ବନ୍ଧା ଗତି ଓ ସ୍ୱର, ଏହି ବଧିବଦ୍ଧ ଗତି ଓ ସୁରକୁ ଛାଡ଼ିଲେ ସଂଗୀତ ଅସଂଭବ ହୋଇପଡ଼ିବ । ସିନ୍ଥିଆର ଜୀବନର ମୂଳ ସୂତ୍ର ଥିଲା ଏଇ ବନ୍ଧା ଗତି । ସେ ନିଜେ ଏଥିରୁ ମୁକ୍ତ ଥିଲେ । ମୁକ୍ତ ବିହଙ୍ଗ ପରି ବୁଲି ସେଇଁଠି ମୁକ୍ତ ଆନନ୍ଦ ମିଳିବ ତାକୁ ଆହରଣ କରିବା ଥିଲା ତାଙ୍କର ନିଜର ଲକ୍ଷ୍ୟ ।

ପିଲାମାନେ ବଡ଼ ହୋଇସିବାରୁ ସେ ସେମାନଙ୍କୁ ହରାଇଲେ । ଗୋଟି ଗୋଟି ହୋଇ ସେମାନେ ନିଜ ନିଜର ସଂସାର କରିବାକୁ ବାହାରିଗଲେ । ବେଳେ ବେଳେ ସେମାନେ ଘରକୁ ଫେରିଲେ, ହସଖୁସି କରନ୍ତି, ତାଙ୍କୁ ଆମୋଦ ଦେବା ପାଇଁ ହସ ସୃଷ୍ଟି କରନ୍ତି, କିନ୍ତୁ ସେ ହସରେ ଆନ୍ତରିକତା ନଥାଏ ବୋଲି ସେମାନଙ୍କ ଗମ୍ଭୀର ଆଖିକୁ ଦେଖିଲେ ଜଣାଯାଏ । ତାଙ୍କର ହୋଇ ରହିଲା ମାତ୍ର ଗୋଟିଏ ପିଲା, ଦଶବର୍ଷ ବୟସ୍କ ରବର୍ଟ୍, ଯେ କି ଗୋଟିଏ ଗ୍ରୀଷ୍ମ ଋତୁରେ ସମୁଦ୍ରରେ ବୁଡ଼ି ପ୍ରାଣ ହରାଇଥିଲା । ତା ମୃତ ଶରୀରକୁ ବହୁ ଚେଷ୍ଟା କରି ମଧ୍ୟ ସେମାନେ ପାଇ ପାରିନଥିଲେ । ଅନ୍ୟମାନେ ଶୀଘ୍ର ବାହାରୁନାହାନ୍ତି ବୋଲି ଅଧୈର୍ଯ୍ୟରେ ସେ ଏକୁଟିଆ ସମୁଦ୍ରରେ ପଶି ଯାଇଥିଲା, ଦିନେ ସକାଳେ । ସମୁଦ୍ର ଆଜି ତାକୁ ଛାଡ଼ିଲା ନାହିଁ, ରବର୍ଟ୍ ସମୁଦ୍ରରେ ରହିଲା । ସେଦିନ ସମୁଦ୍ର ତରଙ୍ଗର ଥିଲା ମନ୍ଦ ଉଦ୍ଦେଶ୍ୟ; ସେ ଥିଲା ଗମ୍ଭୀର ଓ କୁଟିଳ, ତା'ର ଫେନ ଥିଲା ପଂଝାର ନଖ ପରି, ବାଘ ପରି ସେ ରବର୍ଟ୍‌କୁ

ଝାମ୍ପିନେଲା । ଖବର ଶୁଣି, ସେ ଯେତେବେଳେ ପାଗଳ ପରି ଯାଇ ସମୁଦ୍ର କୂଳରେ ପହଞ୍ଚିଲେ, ସେ ଜାଣିଲେ, ଅପହରଣ କରି ନେଇଥିବା ତାଙ୍କ ପିଲଟିକୁ ତରଙ୍ଗମାଳା ଆଉ ଫେରାଇବେ ନାହିଁ । ତଥାପି କେତେ ସପ୍ତାହ ଯାଏଁ ସେମାନେ ତା'ର ସଂଧାନ କରିବାକୁ ଛାଡ଼ିଲେ ନାହିଁ ।

ସେ ପିଲାଟି ଦେଖିବାକୁ ଥିଲା ସିନ୍ଥିଆ ପରି । ତା'ର ପ୍ରକୃତି ଥିଲା ତାଙ୍କ ନିଜ ପରି । ସିନ୍ଥିଆ ଯେପରି ହେବା ଉଚିତ ବୋଲି ସେ କଳ୍ପନା କରୁଥିଲେ; ତାହା ଏଇ ରବର୍ଟଠାରେ ରୂପାୟିତ ହେବ ବୋଲି ତାଙ୍କର ଆଶା ଥିଲା । ଆଜି ସେଇ ସୁନ୍ଦର ପିଲାଟି କଥା ମନେ ପକାଇ ତାଙ୍କର ମନରେ ହେଉଛି ଯେ, ସମୁଦ୍ର ସେ ପିଲାଟିକୁ ଫେରାଇ ନଦେଇ ଭଲ କରିଛି । ମୃତ ପୁଅର ମୁହଁ କପରି ଦିଶୁଥିଲା ମନେ ପକାଇବାକୁ ସେ ପ୍ରୟୋଜନ ବୋଧ କରି ନାହାନ୍ତି, କଲେ ବି ମନେ ପକାଇ ପାରନ୍ତେ ନାହିଁ । ଯଦି ତାର ମୃତ ଶରୀର ସେ ଦେଖିଥାନ୍ତେ – ନଷ୍ଟଳ ଶରୀର,ଅଙ୍ଗ-ପ୍ରତ୍ୟଙ୍ଗ ତଳକୁ ଝୁଲୁଥାନ୍ତା, ମୁଣ୍ଡ ତଳକୁ ଢଳିଥାନ୍ତା —ତେବେ ସେ ରୂପ ତାଙ୍କ ମନରୁ ପାସୋ'ର ଯାଇନଥାନ୍ତା । ଏରୂପ ଯେ ସେ ଦେଖିନାହାନ୍ତି ତାହା ଭଗବାନଙ୍କ ଅନୁଗ୍ରହ ଯୋଗୁଁ ବୋଲି ମନେ ହେଉଛି । ବର୍ତ୍ତମାନ ରବର୍ଟ ତାଙ୍କ ଦୃଷ୍ଟିରେ ଚିରଜୀବନ୍ତ ହୋଇ ରହିଛି । ତାଙ୍କର ଏକମାତ୍ର ଦୁଃଖ, ବେଳେ ବେଳେ ସେ ରବର୍ଟର ଆତ୍ମାକୁ ଭୁଲି, କେବଳ ତା'ର ଆକୃତି ଓ ରୂପକୁ ମନେପକାନ୍ତି । ତା'ର ଆତ୍ମା ଯେ ତାଙ୍କ ନିଜ ଆତ୍ମାର ଅଂଶ । ଆତ୍ମାକୁ ଭୁଲି ରୂପ ଚିନ୍ତା କରି ସେ ଦେଖନ୍ତି ତା'ର ଧୂସର ଚକ୍ଷୁ, ଅକୁଞ୍ଚିତ କୃଷ୍ଣ କେଶ । ସିନ୍ଥିଆ ଏଇ ଶିଶୁଟିକୁ ରୂପ ଦେଇ ଗଢ଼ିଥିଲା । ବେଳେ ବେଳେ ରବର୍ଟ ପ୍ରତି କଠୋର ହୋଇଥିବାରୁ ତାଙ୍କର ଦୁଃଖ ହୁଏ । କଠୋରତାର ଗୋଟିଏ ଦୃଷ୍ଟାନ୍ତ ତାଙ୍କ ମନରେ ଜାଗ୍ରତ ରହିଛି । ସେଦିନ ସେ ସ୍କୁଲକୁ ନଯାଇ, ନିଜେ ତିଆରି କରିଥିବା ଗୋଟିଏ ଗୁଡ଼ି ଉଡ଼ାଇବାକୁ ବାହାରିଥିଲା । ସେ ଘରରେ ଯାଇ ତା'କୁ ଆଣି ପାଠରେ ବସାଇଥିଲେ । ଥରେ ଥରେ ସିନ୍ଥିଆ ପରି, ସେ ନିର୍ମମ ଭାବେ ତାକୁ ଶାସନ କରି, ଘରରେ ତାକୁ ବସାନ୍ତି ନିରର୍ଥକ କାର୍ଯ୍ୟ କରିବାକୁ— ଧାଡ଼ି ଧାଡ଼ି ସଂଖ୍ୟା ମିଶାଇବାକୁ, ପୃଷ୍ଠା ପରେ ପୃଷ୍ଠା ପଢ଼ିବାକୁ, ନକ୍ସା ଅଙ୍କନ କରି ସେଥିରେ ରଙ୍ଗ ଦେବାକୁ । ଏ ସବୁ କାର୍ଯ୍ୟ ପିଲମନ ବୁଝେ ନାହିଁ କି

ଏଥିରେ କିଛି ଲାଭ ଅଛି ବୋଲି ମନେ କରେନାହିଁ । ଥରେ ଏଇମିତି ଗୋଟିଏ ରାତିରେ, ଆଜି ତାଙ୍କର ମନେ ପଡ଼ୁଛି, ଦରଜା ବାହାରୁ ମୁହଁ ଟେକି ତାଙ୍କ ଆଡ଼କୁ ଚାହିଁଲା । କୃଷ୍ଣଚନ୍ଦ୍ରଙ୍କ ସ୍ୱରରେ ସନ୍ତୁଷ୍ଟ ଭାବ । ସେ କହିଲା, "ବାପା, ମୋତେ ଶୁଭୁଛି, ପବନ କାନ୍ଦୁଛି । ପବନର ଦୁଃଖର କାରଣ କ'ଣ ?"

ବାପ ହୋଇ ମଧ୍ୟ ନିର୍ମମ ଭାବେ ସେ ଉତ୍ତର ଦେଇଥିଲେ, "ଧେତ, ଶୋଇବାବେଳ ହେଲାଣି, ଏତେ ଗୁଡ଼ାଏ ପୃଷ୍ଠା ତୋ'ର ପଢ଼ିବାକୁ ଅଛି । ଏମିତି ଗୁଡ଼ାଏ କ'ଣ ବକୁଚୁ ?"

ସେ ଯଦି ଯଥାର୍ଥ ପିତା ହୋଇଥାନ୍ତେ, ତେବେ ସେ ପୁସ୍ତକପତ୍ର ଆଡ଼େଇ ଦେଇ ପୁଅକୁ ମେଲକୁ ନେଇଥାନ୍ତେ ଓ ରାତିର ଅନ୍ଧାରରେ ପବନକୁ ଖୋଜି, କାହିଁକି ତାହା କାନ୍ଦୁଛି, ସେ କଥା ହୁଏତ ଆବିଷ୍କାର କରିବାକୁ ସୁବିଧା ଦେଇଥାନ୍ତେ । ସେଇ ଯେଉଁ ଘଣ୍ଟାକ ପିଲାଟି ସୁଖ ଅନୁଭବ କରିଥାନ୍ତା, ସେଥିରୁ ତାକୁ ବଂଚିତ କରି, ସେ ନିଜକୁ ବି ବଞ୍ଚିତ କଲେ । ଆଜି କେହି ତାଙ୍କୁ କିଛି କରିବାକୁ ବାଧ୍ୟ କରିନାହାନ୍ତି କି ନ କରିବାକୁ ବାରଣ କରିନାହାନ୍ତି । କେବଳ ସିନ୍ଥିଆର ମନକୁ ଧରି ସେ ଚାଲିବାରୁ, ତା'ର ଇଚ୍ଛାକୁ ନିଜର ଇଚ୍ଛା ବୋଲି ବିଚାରି ଚାଲିଛନ୍ତି । ସେଦିନ ତା'ର ଇଚ୍ଛା ପୂରଣ କରିବାକୁ ଯାଇ, ପିଲାକୁ ବାରଣ କରିବା-ଦ୍ୱାରା ସେ ତା'ର ମା ସିନ୍ଥିଆକୁ ହିଁ ଦଣ୍ଡ ଦେଇଛନ୍ତି ।

ତେବେ ଏକଥା ମାନିବାକୁ ହେବ ଯେ, ସେ ସିନ୍ଥିଆକୁ ପ୍ରେମ କରୁଥିଲେ । ତା'ଠାରେ ଗୋଟିଏ ମାତ୍ର ଦୋଷ ଥାଏ, ଯାହାକି ସେ କ୍ଷମା କରି ପାରିନାହାନ୍ତି—ଏଇ ଦୋଷ ଯୋଗୁଁ ସେ ପ୍ରେମ କରିବାରେ ଆନନ୍ଦ ଉପଭୋଗ କରିପାରେ ନାହିଁ । କର୍ତ୍ତବ୍ୟବୋଧରେ ସେ ପ୍ରେମ କରୁଥିଲା । ତେଣୁ ସିନ୍ଥିଆ ତାଙ୍କ ପ୍ରେମ ସଙ୍ଗେ ପ୍ରୀତି ଦେଇ ପାରିନାହିଁ । ଆଜି ସେ ବୃଦ୍ଧ, ମୁମୂର୍ଷୁ—ଆଜି ସିନା ସେ ବୁଝିଛନ୍ତି, ଏ ଜୀବନର ଲକ୍ଷ୍ୟ ହେଲା ସୁଖ ଭୋଗ । ଏହି ସୁଖ ବଢ଼ି ବଢ଼ି ଆନନ୍ଦରେ ଯଦି ପରିଣତ ହୋଇ ପାରିଲା ତେବେ ଯାଇ ଜୀବନ ସାର୍ଥକ ହୁଏ । ଆନନ୍ଦ ଉପଲବ୍ଧି ଯଦି ଜୀବନର ଲକ୍ଷ୍ୟ ନୁହେଁ, ତେବେ ମଣିଷର ଜ୍ଞାନେନ୍ଦ୍ରିୟ ଅଛି କାହିଁକି, ବୁଝିବାର କ୍ଷମତା ଅଛି କାହିଁକି, ଶେଷରେ ସ୍ମୃତି ଅଛି କାହିଁକି ? ସ୍ମୃତିରୁ

ଦୁଃଖ ଅପସର ଯାଏ, ସ୍ମୃତିରେ ରହେ କେବଳ ସୁଖର ଅନୁଭୂତି, ଆନନ୍ଦ ।

ଆହା, ଏହି ଆନନ୍ଦର ଉପଭୋଗ ପାଇଁ ସେ ସିନ୍ଥିଆ ଅନ୍ତେ ଖ୍ରୀଷ୍ଟିନ୍‌କୁ ବଶ ହୋଇଥିଲେ—ଅଳ୍ପ ବୟସ୍କା ଖ୍ରୀଷ୍ଟିନ୍ । ଆନନ୍ଦ ପାଇବେ ବୋଲି ତା'କୁ ସେ ପ୍ରେମ କରଥିଲେ । ଶେଷରେ ସେ ତାଙ୍କୁ ଛାଡ଼ପତ୍ର ଦେଇ ଚାଲିଗଲେ ଅବଶ୍ୟ, କିନ୍ତୁ ତା'ର ଦୋଷ କ'ଣ ? ସେ ଯେ କେତେଆଗରୁ ଜନ୍ମ, ଖ୍ରୀଷ୍ଟିନ୍ ତାଙ୍କର କେତେଗୁଡ଼ାଏ ଦିନ ପରେ ! ହୁଏତ ଏଇ ମୁହୂର୍ତ୍ତରେ ସେ ଅନ୍ୟତ୍ର ତା'ର ନିଜ ଆନନ୍ଦ ଉପଭୋଗ କରୁଥିବ । ଆଜ ତାଙ୍କୁ ସୁଖ ଲାଗୁଛି ଯେ, ସେ ନିର୍ବିଗ୍ନର ବଦାନ୍ୟତାରେ, ବଦାନ୍ୟତା ପାଗଳ ହୋଇ, ଅଥବା ବାର୍ଦ୍ଧକ୍ୟର ବୁଦ୍ଧିହୀନତା ଯୋଗୁଁ— ତାଙ୍କ ବଡ଼ ପୁଅ ରାଗରେ ଏଇଆ କହିଥିଲା—, ସେ ଖ୍ରୀଷ୍ଟିନ୍ ନାମରେ ଟଙ୍କା ଖଞ୍ଜି ଦେଇଛନ୍ତି, ଏପରି ଖଞ୍ଜିଛନ୍ତି ଯେ ସେ ଏକାଥରକେ ତା'କୁ ନିଜସ୍ୱ କରି ଦେଇ ତାଙ୍କ ବଦାନ୍ୟତାରୁ ମୁକ୍ତ ହୋଇ ପାରିବ ନାହିଁ —ଏ ଟଙ୍କା ବର୍ଷକୁ ବର୍ଷ ତାଙ୍କର ଦାନ ରୂପେ ତା'କୁ ମିଳୁଥିବ । ଏଇ ଟଙ୍କାରେ ସେ ଅନ୍ୟ ପୁରୁଷ ସଙ୍ଗେ ଜୀବନ ଉପଭୋଗ କରି ପାରିବ ।

ଖ୍ରୀଷ୍ଟିନ୍ ଚାଲିଯିବାରେ ତାଙ୍କ ମନରେ ଆଘାତ ହେବାର କଥା । ସେ କିନ୍ତୁ ଏ ଆଘାତକୁ ଏଡ଼ି ଚାଲିଛନ୍ତି । ଯଦିବା ମନରେ ଘା ହୋଇଥାଏ । ତାହା ଆଉ ଏତେବେଳେ ଶୁଖିବାକୁ ବେଳ କାହିଁ ? ଏବେ କେତେ ମାସ ତଳେ ତା'ଠାରୁ ଶେଷ ଚିଠି ମିଳିଛି । ସେ କାଲିଫର୍ନିଆର ରମଣୀୟ ସୂର୍ଯ୍ୟକିରଣରେ କେଉଁଠି ଅଛି । ଖ୍ରୀଷ୍ଟିନ୍ ପରି ରମଣୀ ରମଣୀୟ ସୂର୍ଯ୍ୟକିରଣ ବ୍ୟତୀତ ଅନ୍ୟ କେଉଁଠି ରହିବା କଳ୍ପନା କରି ହେଉନାହିଁ ।

'ପ୍ରିୟ କପ୍ତାନ୍—'

ଏଇପରି ସଂବୋଧନ କରି ସେ ପତ୍ର ଲେଖିଛି । ସବୁବେଳେ ସେ ତାଙ୍କୁ 'କପ୍ତାନ' ବୋଲି କହି ଆସିଛି, ଟିକିଏ ରହସ୍ୟରେ, ଅଧିକ ଚଳିରେ । ସେ ସବୁବେଳେ କହେ ଯେ, ମିଷ୍ଟର ନର୍ଟନ୍ ତା' ଭାଗ୍ୟତରୀର କପ୍ତାନ୍, ତା' ଆତ୍ମାର ମାଲିକ । ତା' ଢଙ୍ଗରେ ସେ ତାଙ୍କୁ ସୁଖ ପାଉଥିଲି; ସେ ତ ଗୋଟିଏ ଅରଣା, ଅବାଧ୍ୟ ପିଲା, ଅତି ପିଲାଦିନେ ବାପକୁ ହରାଇ ସ୍ନେହାନ୍ଧ ମା' ପାଖରେ ବଢ଼ିଥିଲା । ତାଙ୍କ ପରିଣତ ବୟସ ଯୋଗୁଁ ସେ

ପ୍ରଥମେ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲା, ଓ ସେଇ ବୟସ ଯୋଗୁଁ ପୁଣି ତାଙ୍କୁ ଛାଡ଼ିବାକୁ ବାଧ୍ୟ ହେଲା । ଏପରି ହେବ ବୋଲି ତାଙ୍କର ଆଶଂକା ଥିଲା । ଏ ଆଶଂକା ସତ୍ୟ ବୋଲି ସେ ଜାଣିଲେ ଯେତେବେଳେ, ସେ ତାଙ୍କ ଆଡ଼ୁ ମୁହଁ ଫେରାଇ—ସେ ଯାହାହେଉ, ଖ୍ରୀଷ୍ଟିନ ତାଙ୍କୁ ମନ ପ୍ରାଣ ଦେଇ ପୂର୍ଣ୍ଣ ପ୍ରେମରେ ଚୁମ୍ବନ ଦେଇଛି । ସେ ଯାଇଛି ଘର ବୋଲି ତାଙ୍କ ମନରେ ଅବଶୋଷ ନାହିଁ, ବରଂ ସେ ତାଙ୍କୁ ଯାହା ଦେଇଛି ସେଥିପାଇଁ ସେ ତା'ଠାରେ କୃତଜ୍ଞ । ଖ୍ରୀଷ୍ଟିନ୍‌କୁ ସେ ଯାହା ଦେଇଛନ୍ତି ସେଥିପାଇଁ ତାଙ୍କର ପଶ୍ଚାତ୍ତାପ ନାହିଁ, କାରଣ ତା ସଙ୍ଗେ ସେ ଯେତୋଟି ଦିନ କଟାଇଛନ୍ତି ତାହା ସେ ସୁଖରେ କଟାଇଥିଲେ । ସେ ଯେତେବେଳେ ତାଙ୍କୁ ବାହା ହେବାକୁ ଇଚ୍ଛା ପ୍ରକାଶ କଲା ସେତେବେଳେ ସେ ମନେ କରିଥିଲେ, ତାଙ୍କର ସ୍ୱପ୍ନ ସଫଳ ହୋଇଛି । କହିବାକୁ ଗଲେ ଏହା ହୋଇଥିଲା ତାଙ୍କ ସ୍ୱପ୍ନ-ଠାରୁ ବି ଅଧିକ, କାରଣ ବୃଦ୍ଧ ବୟସରେ ସେ ଏପରି ତରୁଣୀଟିକୁ ନିଜର ଭାର୍ଯ୍ୟା କରି ପାରିବେ, ଏ ଭଳି ସ୍ୱପ୍ନ ସେ କେଉଁ ସାହସରେ ଦେଖିଥାନ୍ତେ ? ତାଙ୍କ ମନରେ ଯାହା ସବୁ ଗ୍ଲାନି ଥିଲା, ସେଥିରୁ ଖ୍ରୀଷ୍ଟିନ୍ ତାଙ୍କୁ ମୁକ୍ତ କରିଥିଲା । ପୁଣି ସ୍ୱପ୍ନ ରାଜ୍ୟରେ ବିଚରଣ କରିବାକୁ ସେ ତାଙ୍କୁ ମନୋବୃତ୍ତି ଦେଇଥିଲା । ଖ୍ରୀଷ୍ଟିନ୍ ସଙ୍ଗେ ତାଙ୍କର କଟିଥିଲା ତିନୋଟି ପିଲ୍‌ଲିଆ, ଆନନ୍ଦ ଓ ସୁଖମୟ ସମ୍ବତ୍ସର । ଏହା ଥିଲା ତାଙ୍କ ପକ୍ଷରେ ବଡ଼ ଦୁଃସାହସର ସମୟ । ଏ ସମୟରେ ସେ ଲୋପ ହୋଇଯାଇଥିବା ଶକ୍ତିକୁ ଜାବୁଡ଼ି ଧରିବାକୁ ଚେଷ୍ଟା କରିଥିଲେ, ଯେଉଁ ଆକାଂକ୍ଷାର ତେଜ ମଉଳି ଯାଉଥିଲା ତା'କୁ ପୂରଣ କରିବାକୁ ବସିଥିଲେ ; ସେ ନିଜକୁ ଜଗାଇବାକୁ ଚେଷ୍ଟା କରୁଥିଲେ, ଯେତେବେଳେ ପ୍ରକୃତି ତାଙ୍କୁ ଶୁଆଇବାକୁ ବସୁଥିଲା ।

ସେ ସମୟର ଆରମ୍ଭରେ ସେ ନିଜର ବାହାର କାମଦାମ ସାରି ବେଳ ଥାଉ ଥାଉ ଘରକୁ ଫେରିବାକୁ ଲାଗିଲେ । କ୍ରମେ ସେ ଏକା ବେଳକେ କାମ ଦାମ ଛାଡ଼ି ତା' ପାଖେ ରହିବେ ବୋଲି ସବୁବେଳେ ଘରେ ରହିଲେ । ପୁଣି ଯେତେବେଳେ ଦେଖିଲେ, ସେ ତା'ର ମୁହଁରୁ ବିଷାଦର ଛାୟା ଅପସରି ପାରୁନାହାନ୍ତି ସେ ତାକୁ ଅନୁମତି ଦେଲେ ଅନ୍ୟପୁରୁଷ ସଙ୍ଗେ ଚଳପ୍ରଚଳ ହେବାକୁ, ସେ ପୁରୁଷ ଯେ ହେଉନା କାହିଁକି ? ଏହାର

ଶେଷ ପରିଣାମ କ'ଣ ହେବ ତାଙ୍କୁ ବେଶ୍ ଜଣା ଥିଲା ; ସେ ଜାଣିଥିଲେ, ଏପରି ଦିନ ଆସିବ, ଯେଉଁ ଦିନ ସେ ତାଙ୍କଠାରୁ ମୁକ୍ତି ଭିକ୍ଷା କରିବ ।

ସେ ଦିନ ଆସିଲା । ଖ୍ରୀଷ୍ଟିନ୍ ଅବଶେଷରେ ଆସି ଖୁବ୍ ନମ୍ର, ମଧୁର ଓ ମିନତିଭରା ଢଙ୍ଗରେ ତା'ର କୁଞ୍ଚିତ କେଶଭରା ମସ୍ତକଟି ତାଙ୍କ ବକ୍ଷ-ସ୍ଥଳରେ ରଖି, କିଛି ନକହି କାନ୍ଦିବାକୁ ଲାଗିଲା ।

"ହାଁ, ହାଁ, ଏ କ'ଣ ?" ବୋଲି ସେ କହି ଉଠିଲେ, ଖ୍ରୀଷ୍ଟିନ୍‌କୁ ନିବିଡ଼ ଭାବେ ଆଲିଙ୍ଗନ କଲେ । କିନ୍ତୁ ଭୟ ଓ ବେଦନାର ସହିତ ସେ ଅନୁଭବ କଲେ, ଖ୍ରୀଷ୍ଟିନ୍ ପ୍ରତି ତାଙ୍କର ଦରଦ ଓ ସ୍ନେହ ଯଥେଷ୍ଟ ହେଉଥିଲେହେଁ, ତା' ପ୍ରତି ତାଙ୍କର ଲେଶମାତ୍ର କାମାଶକ୍ତି ଜାଗ୍ରତ ହେଉନାହିଁ । ବଡ଼ ବିଚିତ୍ର, ବଡ଼ ବିଡ଼ମ୍ବନାର କଥା, ମନରେ ଶ୍ରଦ୍ଧା ଜାଗ୍ରତ ହେଉଛି, ବାହୁ ବନ୍ଧନରେ ଯେ ଅଛି ସେ କେଡ଼େ ଲୋଭମୟ, କେଡ଼େ ଦୁର୍ଲଭ ସେ ବିଷୟର ଉପଲବ୍‌ଧି ହେଉଛି, କିନ୍ତୁ ତା'କୁ ନିଜର ବୋଲି ଅଧିକାର କରିବାକୁ ପ୍ରବୃତ୍ତି ହେଉନାହିଁ । ସେତିକିବେଳେ ସେ ଅନୁଭବ କରିଥିଲେ, ସେ ବାସ୍ତବିକ ବୁଢ଼ା ହୋଇଗଲେଣି ।

ସେ ସବୁ ଜାଣି, କିଛି ନ ଜାଣିଲା ପରି ପଚାରିଲେ, "ମନରେ ଏତେ ଦୁଃଖ କାହିଁକି, କହ ।"

ଖ୍ରୀଷ୍ଟିନ୍ ଉତ୍ତର ଦେଲା, "କିଛି ନାହିଁ ।"

ସେ କହିଲେ, "ନା, ନିଶ୍ଚୟ କିଛି ନା କିଛି ଅଛି ।"

କାନ୍ଦି କାନ୍ଦି ସେ ଜବାବ ଦେଲା, ମୁଁ ତୁମକୁ ପ୍ରାଣର ସହିତ ସୁଖ ପାଏ । ମୁଁ ଅନୁଭବ କରୁଛି, ତୁମେଇ ମୋର ସବୁ । ତୁମ ବ୍ୟତୀତ ଆଉ କେହି ମୋ ମନରେ ସ୍ଥାନ ପାଇନାହିଁ । ତୁମ ବ୍ୟତୀତ ଆଉ କାହାକୁ ମୁଁ ଚିହ୍ନେ ନାହିଁ । ମୁଁ ଯେତେ ପୁରୁଷଙ୍କୁ ଜାଣେ ସେ ସମସ୍ତଙ୍କ ଭିତରେ ତୁମେ ବୁଦ୍ଧିରେ ବଡ଼ ଓ ପ୍ରକୃତିରେ ମହତ୍ତର । ତୁମଠାରୁ ଅଧିକ, ଏପରି ଲୋକ ଭବିଷ୍ୟତରେ ଦେଖିବି ବୋଲି ମଧ୍ୟ ମୋର ବିଶ୍ୱାସ ନୁହେଁ । ତୁମକୁ ଛାଡ଼ିଲେ ମୁଁ ଅଥଳ ଜଳରେ ଯାଇ ପଡ଼ିବି । ତୁମେଇ ମୋର ସର୍ବସ୍ୱ—ପ୍ରେମିକ, ସ୍ୱାମୀ, ସଖା ଓ ପିତା ।"

ଭୟାନକ ! ଭୟାନକ ଆତ୍ମନିବେଦନ । ମାଥା ବଢ଼ିଗଲା ପରି ତାଙ୍କୁ ଲାଗିଥିଲା । ଭୟ ଓ ଆଶଙ୍କାରେ ବିହ୍ୱଳ ହୋଇ ଚରିତରରେ

ଖ୍ରୀଷ୍ଟିନ୍ ଏସବୁ କହିଗଲା ସିନା, ତା'ର ବୁଦ୍ଧି ତା' ମନ ସାଙ୍ଗେ ଲଢ଼ୁଛି । ତା'ର ହାତ ମନର ଆହ୍ୱାନକୁ ଅବଜ୍ଞା କରି ତାଙ୍କୁ ଜାବୁଡ଼ି ଧରୁଛି । ମନ କିନ୍ତୁ ବୁଦ୍ଧିର ଲଗାମ ନମାନି, ନିଜର ସ୍ୱଚ୍ଛନ୍ଦଗତିରେ ନିଜର ପଥ ଧରିବାକୁ ତିଆର ।

ସେ ଖୁବ୍ ଧୀର ସ୍ଥିର ଭାବରେ ଖ୍ରୀଷ୍ଟିନ୍‌କୁ କହିଥିଲେ, "ତୁମେ ମୋ ପାଖରେ ରହ ବା ଅନ୍ୟତ୍ର ଯାଅ, ମୁଁ ତୁମର ସବୁ ଦେବାକୁ ସବୁ ବେଳେ ପ୍ରସ୍ତୁତ । ହୁଏତ ସ୍ୱାମୀ ହୋଇ ପାରିବିନାହିଁ, ତୁମେ ବି ମୋତେ ସ୍ୱାମୀ କରିବାକୁ ହୁଏତ ଚାହିଁବ ନାହିଁ । ମନେ ଅଛି ନା, ମୁଁ ଏକଥା ତୁମକୁ ଚେତାଇ ଦେଇଥିଲି, ଯେତେବେଳେ ତୁମେ ମୋତେ ବାହା ହେବାକୁ ଇଚ୍ଛା ପ୍ରକାଶ କରିଥିଲ ?"

ବାସ୍ତବିକ୍ ବାହା ହେବା କଥା ପ୍ରଥମେ ଖ୍ରୀଷ୍ଟିନ୍ ଆଉ୍ଟ ଉଠିଥିଲା । ସେ ଯଦି ଜିଦ୍‌କରି ନଥାନ୍ତା ତେବେ ସେ ତାଙ୍କୁ ବାହା ହେବାକୁ ସାହାସ କରି ନଥାନ୍ତେ । ସେ ଆସି ତାଙ୍କ ମୁଣ୍ଡକୁ ଧରି ବସିଲା—କହିଲା, ସୁନ୍ଦର ମୁଣ୍ଡ, ଯଦିଓ ତାଙ୍କ ମୁଣ୍ଡର ବାଳ ସେତେବେଳକୁ ସମୁଦ୍ରଫେଣ ପରି ଧୋବ । ଆଜି ମନେ ପଡ଼ିଯିବାରୁ ବଡ଼ ଆନନ୍ଦ ଲାଗୁଛି, ବିବାହ କଥା ଘୁଣାକ୍ଷରରେ ତାଙ୍କ ମନରେ ନଥିବା ବେଳେ, ଖ୍ରୀଷ୍ଟିନ୍ ତାଙ୍କୁ ବାହା ହେବାକୁ ପ୍ରସ୍ତାବ କରିଥିଲା ।

ଆଜିର ଚନ୍ଦ୍ରକିରଣ ସ୍ନିଗ୍ଧ ରାତିକୁ ଚାହିଁ ସେ ସେଦିନର କଥା ମନେ ପକାଇ କହିଲେ, "କେଡ଼େ ଅସ୍ୱାଭାବିକ ପ୍ରସ୍ତାବ, ପ୍ରିୟେ !" ସେ ଦିନର କଥାବାର୍ତ୍ତା ତାଙ୍କ ଶୁଖିଲା ଓଠକୁ ଗୋଟିକଠୁ ଆସିଗଲା । ସେଦିନ ଖ୍ରୀଷ୍ଟିନ୍ କହିଥିଲା, "ଯୁବକ ଲୋକଙ୍କୁ ମୋର ଘୃଣା ।"

ଯୁବକଙ୍କ ପ୍ରତି ତା'ର ଏପରି ଘୃଣା ହେବାର କାରଣ କ'ଣ ? ତାଙ୍କ ମନ ପୂର୍ବର ମଧୁର ସ୍ମୃତିରେ ଖେଳିଯାଇ ଏହି କାରଣ ଅନ୍ୱେଷଣ କରିବାରେ ଲାଗିଲା । ନିଶ୍ଚୟ ପୂର୍ବରୁ କିଛି ଗୋଟାଏ ଘଟଣା ଘଟିଥିଲା । ହୁଏତ କୌଣସି ଯୁବକ ତା'କୁ ପ୍ରେମରେ ପକାଇ ଶେଷରେ ଠକି ଦେଇ ଚାଲି ଯାଇଥିଲା । ଆଜିକାଲିର ଯୁବକମାନଙ୍କ ଗତି ବିଚିତ୍ର—ବିଶେଷତଃ ଯେଉଁମାନଙ୍କର କ୍ଷମତା ଅଛି, ବଳ ଅଛି ସେମାନଙ୍କର । ସେମାନେ ବିବାହର ବୋଝ—ତା'ର ଦାୟିତ୍ୱ, ତା'ର ଅନିଶ୍ଚିତତା ମୁଣ୍ଡାଇବାକୁ

ପ୍ରସ୍ତୁତ ନୁହନ୍ତି । ଭବିଷ୍ୟତରେ ପିଲାଙ୍କ ଦାୟିତ୍ୱ ମୁଣ୍ଡାଇବାକୁ ପଡ଼ିବ, ସ୍ତ୍ରୀର ବ୍ୟବହାର, ତା'ର ବଦ୍‌ଖର୍ଚ୍ଚ ସମ୍ଭାଳି ହେବନାହିଁ—ଏହି ଭୟରେ ସେମାନେ ଯୁବତୀ ସହିତ କିଛିଦିନ ପ୍ରେମରେ ମାତି, ଧୋକା ଦେଇ ପଳାଇଛନ୍ତି । ଏହିପରି ଘଟଣା ବୋଧହୁଏ ଖ୍ରୀଷ୍ଟିନ୍‌ର ଭାଗ୍ୟରେ ସେହି ସମୟରେ ଘଟିଥିବାରୁ, ସେ ସେତେବେଳେ ବିଚଳିତ ହୋଇ ଯାଇଥିଲା । ପରେ ତାଙ୍କ ସଙ୍ଗେ ବିବାହିତ ଜୀବନ ନୀରସ ହୋଇଯିବାରୁ ଖ୍ରୀଷ୍ଟିନ୍ ଯାହା ସଙ୍ଗେ ଚାଲିଗଲା, ସେ କ'ଣ ସେଇ, ଯେ ପ୍ରଥମେ ଖ୍ରୀଷ୍ଟିନ୍ ମନରେ ଆଘାତ ଦେଇଥିଲା ? ସେଇ ଯେଉଁ ଟୋକାଟା—ଦେହର ଚେହେରା ଖରାରେ କାମ କରିକରି ରଙ୍ଗାଳିଆ ହୋଇଥାଏ, ମୁଣ୍ଡର ବାଳ ହଳଦିଆ, ଆଖି କୋରଡ଼ିଆ ହେଲେ ବି ଚକ୍‌କଣ ନୀଳବର୍ଣ୍ଣ—ଯାହା ସଙ୍ଗେ ଖ୍ରୀଷ୍ଟିନ୍ ଚଳବୁଲା କରୁଥିଲା, ସେଇ ବୋଧହୁଏ ତା'ର ପୂର୍ବ ପ୍ରେମିକ, ଯେ ଅବଶେଷରେ ପୁଣି ତା' ମନକୁ ଘୁଞ୍ଚିନେଲା । ଏ ଯୁବକର ଆଖିର ଗାଢ଼ ନୀଳରଙ୍ଗ, ଦୃଷ୍ଟିର କଠିଣତା ଓ ଶରୀରର ସ୍ୱାସ୍ଥ୍ୟ ଦେଖି ତା'ରି ଉପରେ ମିଷ୍ଟର ନର୍ଟନ୍‌ଙ୍କର ସନ୍ଦେହ ରହିଯାଇଛି ।

ସେ ଯୁବକମାନଙ୍କ ଉପରେ ବିରକ୍ତ ହେବାଦିନ ତାକୁ ସାନ୍ତ୍ୱନା ଦେଇ କହିଥିଲେ, ମନେ ପଡ଼ୁଛି, "ଯୁବକମାନଙ୍କୁ ତୁ ଏତେ ଘୃଣା କଲେ ଚଳିବୁ କିପରି ?" କହିଲାବେଳେ ସେ ଖ୍ରୀଷ୍ଟିନ୍‌ର ବେକମୁଣ୍ଡାକୁ ଆଉଁସୁଥାନ୍ତି । "ଦେଖୁଛୁ, ମୁଁ ବୁଢ଼ାଟେ; ଆଜି ହେଉ କାଲି ହେଉ ମରିବି, ତୋ'ର ବହୁ ପୂର୍ବରୁ, ସ୍ତ୍ରୀ ପରେ ଶରୀରର ଯେଉଁ ସ୍ୱାଭାବିକ ପରିବର୍ତ୍ତନ ହୁଏ, ସେଥିପାଇଁ ମୋ ଶରୀର ପ୍ରସ୍ତୁତ ହୋଇ ରହିଲାଣି । ମୋଠାରେ ଏତେ ଆସ୍ଥା କାହିଁକି ରଖୁଛୁ; ଯା, ତୋ'ର ମନଲାଖି ଯୁବକଟିଏ ବାଛି ନେ; ହୁଏତ ଏପରି ଯୁବକ ଗଳିମୁଣ୍ଡରେ ଏବେ ବି ତୋତେ ଚାହିଁକରି ରହିଥିବ । ଯୁବକ ଯୁବତୀଙ୍କର ଏଇପରି ଲୀଳା ହୁଏ, ତାହା ତୋତେ ଅଜଣା, ନା ମୋତେ ଅଜଣା ?"

ତା' ପାଇଁ ଯୁବକ ହାତ ପହଞ୍ଚରେ ଅପେକ୍ଷା କରି ରହିଥିବ, ଏ ଧାରଣା ତାଙ୍କ ମନରେ ବଦ୍ଧମୂଳ ହୋଇ ରହିଥିବାରୁ, ଶେଷରେ ତା'କୁ ବିଦାୟ ଦେବା ଦିନ ସେ ଧୀର ସ୍ଥିରଭାବରେ ତା'କୁ କହିଥିଲେ, "ବାସ୍ତବିକ୍ ଖ୍ରୀଷ୍ଟିନ୍, ମୁଁ ଅନେକଦିନୁଁ ବିଚାରିଲିଣି, ମୋର ଯିବା ଆଗରୁ, ମୁଁ

ତୋ'ର ଉପଯୁକ୍ତ ଯୁବକକୁ ଦେଖି, ତା' ହାତରେ ତୋତେ ଟେକିଦେଲେ ଖୁସୀ ହେବ । ସେପରି ହେଲେ ମୁଁ ପରିତୋଷ ଲାଭ କରନ୍ତି ଯେ, ତୁ ଭବିଷ୍ୟତ୍‌ରେ ସୁଖଶାନ୍ତିରେ ରହିବୁ । ତା' ନହେଲେ ମୋ ମନରେ ଆଶଂକା ରହିଯିବ ଯେ, ମୋ ଅନ୍ତେ, ଯେ କୌଣସି ଲୋକ ତୋ'ପରି ସୁନ୍ଦରୀ ଯୁବତୀ ବିଧବାର ଭାଗ୍ୟ ସଙ୍ଗେ ଖେଳିବାର ସୁଯୋଗ ପାଇବ ।"

ସେ ଚିତ୍କାର କରି ଉଠିଥିଲା, "ଏଭଳି ଦୈବଛଡ଼ା କଥାଗୁଡ଼ାଏ କାହିଁକି କହୁଛ ?" ଯଥାର୍ଥ ଶବ୍ଦଟାଏ ସେ ବ୍ୟବହାର କଲା ବୋଲି ତାଙ୍କର ମନେ ହୋଇଥିଲା । ଗୋଟିଏ ଯୁବତୀ ପ୍ରତି ଯୁବକର ଯେପରି ଆସକ୍ତି ହେବାର କଥା, ତାହା ତାଙ୍କର ପୂର୍ବ ସ୍ମୃତିରେ ଥାଏ ସିନା, ସେପରି ଆସକ୍ତି ଅନୁଭବ କରିବାର ସମସ୍ତ ତାଙ୍କର ଗଡ଼ିଯାଇଥାଏ । ସେଇ ଆସକ୍ତିକୁ ମନେ ପକାଇ, ତାଙ୍କ ପରିବର୍ତ୍ତେ ଆଉ ଜଣେ ଯୁବକ ନିଜର ବିବାହିତା ପତ୍ନୀ ସଙ୍ଗେ ସେଇ ଆସକ୍ତିରେ ମାତୁ ବୋଲି କାମନା କରିବାରେ, ଦୈବଛଡ଼ା ମାନସିକ ବିକୃତି ଥିବା ଅସମ୍ଭବ ନୁହେଁ ।

ସେ ଖ୍ରୀଷ୍ଟିନ୍‌କୁ ବୋଧ କରିବାକୁ କଥାଟାକୁ ଟିକିଏ ମାଜିକରି କହିଲେ, ନା, ନା; ସେମିତି କାହିଁକି ଭାବୁଛୁ ? ମୁଁ କେବଳ ଏତିକି ଚାହେଁ, ମୋ' ଅନ୍ତକୁ ଅପେକ୍ଷା ନକରି, ମୁଁ ଥାଉ ଥାଉ ତୁ ମୋ'ଠାରୁ ମୁକ୍ତ ହୋଇ ଯା' ।"

ଏଭଳି ଚିନ୍ତା ତାଙ୍କ ମନରେ କାହିଁ ବୋଲି ଖ୍ରୀଷ୍ଟିନ୍ ଖୁବ୍ ତ କହିଲା, କହିଲା ବେଳେ ତା'ର ନିମ୍ନୋଷ୍ଠ ଥରୁଥାଏ, କମ୍ପିତ ସ୍ୱରରେ କଥା ବାହାରୁଥାଏ, ଆଖିରୁ ଲୋତକ ବି ଝରୁଥାଏ । ଏହା ଅଭିନୟ ବୋଲି ସେ ମନେ କରୁ ନଥିଲେ । ସେ ଯାହା କହୁଥିଲା ସତ କହୁଥିଲା, କିନ୍ତୁ ତା' ଅନ୍ତର ଭିତରେ ମନ ଓ ବୁଦ୍ଧିର ଦ୍ୱନ୍ଦ୍ୱ ଲାଗିଥାଏ । ସେ ଯାହା ଠଉରାଇଥାନ୍ତି, ସେ କଥା ସ୍ୱୀକାର କରି ଯିବାକୁ ସେ ପ୍ରସ୍ତୁତ ନଥାଏ । ଯାହା ହେଉ ତା'ର ଯିବା ପାଇଁ ସେ ଦ୍ୱାର ଉନ୍ମୁକ୍ତ କରିଦେଲେ ଓ ଖ୍ରୀଷ୍ଟିନ୍ ଅବଶେଷରେ ବାହାରିଗଲା । ଆଗେ ସେ ଯିବାକୁ କୁଣ୍ଠ କୁଣ୍ଠ ହେଉଥାଏ; କ୍ରମେ ଗଲା କିନ୍ତୁ ଫେରି ଆସୁଥାଏ । ଠିକ୍ ପକ୍ଷୀଶାବକ ପ୍ରଥମେ ପ୍ରଥମେ ଖଣ୍ଡି ଉଡ଼ାଦେଇ ବାହାରକୁ ଯାଇ ମା ପାଖକୁ ଫେରି ଆସିଲା ପରି । ପ୍ରଥମେ ପ୍ରଥମେ ଭୋଜି ଖାଇବାକୁ ବା ନାଚିବାକୁ ଯାଇ

ଫେରିବାକୁ ଉଚ୍ଛୁକ କଲା, ଶନିବାର ରବିବାରରେ ଘରୁ ଯାଇ ବାହାରେ ବନ୍ଧୁମାନଙ୍କ ସଙ୍ଗେ ରାତି କଟାଇଲା ; ଥରେ ଦକ୍ଷିଣ ଆମେରିକାକୁ ଅବକାଶ ଭ୍ରମଣରେ ଏକୁଟିଆ ଗଲା ; ଦୁର୍ବଳ ସ୍ୱାସ୍ଥ୍ୟ ଯୋଗୁଁ ସେ ସାଙ୍ଗରେ ଯାଇ ପାରିନଥିଲେ । ତା’ପରେ ଗଲା ଯେ ଆଉ ଫେରିଲା ନାହିଁ ।

ତାଙ୍କ ସଙ୍ଗେ ଦେଖା କରିବାକୁ ଆସିବ – ଏଥିପାଇଁ ତାକୁ ବହୁତ ଚେଷ୍ଟା କରିବାକୁ ହୋଇଥିଲା । ସେ ଖାଲି ଦେଖା କରିବାକୁ ତା’କୁ ଡାକିଥିଲେ, ତା’ ସଙ୍ଗେ ଶୋଇବାକୁ ନୁହେଁ । କିନ୍ତୁ ସେ ଏ ଦୁଇଟାର ପାର୍ଥକ୍ୟ ଧରି ପାରି ନଥିଲା । ସେତେବେଳେ ଏକୁଟିଆ ନିଶ୍ଚିନ୍ତ ହୋଇ ଶୋଇବା ଥିଲା ତାଙ୍କର କାମ୍ୟ ! କିନ୍ତୁ ଶେଷପର୍ଯ୍ୟନ୍ତ ତା’କୁ ମଝିରେ ମଝିରେ ଦେଖିବାକୁ ସେ ପ୍ରୟୋଜନ ମନେ କରୁଥିଲେ । ଦେଖା କରିବାକୁ ଆସିବାକୁ ତା’କୁ ବଡ଼ ଅଡ଼ୁଆ ଅଡ଼ୁଆ ଲାଗୁଥିଲା । ଶେଷରେ ଯେତେ-ବେଳେ ଆସିଲା, ନୂଆ ବିବାହ-ମୁଦି ପିନ୍ଧି, ସେ ଚାହିଁଲେ, ତା’ର ନୀଳଚକ୍ଷୁ ଯୁବକକୁ ଦେଖିବାକୁ ।

ସେତେବେଳେ ସେ ଚଉକିରେ ବସିଥାନ୍ତି, ତାଙ୍କ ପାଖରେ ଅଣ୍ଟୁମାଡ଼ି ବସିପଡ଼ି ଖ୍ରୀଷ୍ଟିନ୍ କହିଲା, "ନା, ମୁଁ ତାଙ୍କୁ ଏଠାକୁ ଆଣି ପାରିବି ନାହିଁ ।" ଯନ୍ତ୍ରଣାଦାୟକ ମୃତ୍ୟୁର ମନ୍ଥର ଚାପ ତାଙ୍କ ଉପରେ ପଡ଼ୁଥାଏ, ଉଠି ଠିଆ ହୋଇ ପଡ଼ିବାକୁ ତାଙ୍କର କ୍ଷମତା ନଥାଏ । ତା’ କବଳରୁ ଖସି ଯିବାକୁ ତାଙ୍କର ଆସ୍ପୃହା ନଥାଏ । ସେ ବାଧ୍ୟ ହୋଇ ବସି ରହି ତା’ ମୁଣ୍ଡର ବାଳକୁ ଆଉଁସୁଥାନ୍ତି । ବେକମୁଣ୍ଡାରେ ହାତ ଚଳାଉଥାନ୍ତି ।

ଭଙ୍ଗା ସ୍ୱରରେ ଚୁପ୍ ଚୁପ୍ କରି ସେ କହିଲା, "ଏତେବେଳେ ମୁଁ ତୁମ ପାଖରେ ରହି ତୁମର ସେବାରେ ଲାଗିବା ଉଚିତ ହୋଇଥାନ୍ତା ।" ତା’ର ଲୁହରେ ତାଙ୍କ ହାତ ଓଦା ହୋଇଗଲା ।

ସେ ପଚାରିଲେ, "ମୋ’ର ତୁ କ’ଣ ସେବା କରନ୍ତୁ ? ମୋର ଦିନ ପାଇଁ ଜଣେ, ରାତିପାଇଁ ଜଣେ ଏପରି ଦୁଇଜଣ ନର୍ସ୍ ଅଛନ୍ତି । ଦିନ ନର୍ସର ଅଧାବୟସ, ଠିଆ ହୋଇ ରହିଲେ ତା’ର ଗୋଡ଼ କ’ଣ ହେଉଛି ବୋଲି କହେ । ତେଣୁ ମୁଁ ତା’କୁ ଅନୁରୋଧ କରେ, ବସି

ରହିବାକୁ । ତା'ଙ୍କୁ କହେ, 'କେଡେ ହାସ୍ୟକର କଥା, ମିସେସ୍ ଗ୍ରାଇଟ୍‌ଲି, ତୁମର ମୋ'ର ସ୍ଥାନ ବଦଳାଇ ପାରୁ ନଥାଇଁ । ହେଲଣି ମୁଁ ପଡ଼ୁଛି ଯେ ମୋର ମନ ବୁଲଚଲା କରନ୍ତି, ଆଉ ତୁମର ମନ ବସି ରହନ୍ତି ! ମୋ କଥାରେ ସେ ଟିକଏ ହସି ପଡ଼ନ୍ତି, କିନ୍ତୁ ସେଇ ଟିକଏ ମାତ୍ର । ତା'ପରେ ଉଠି ନିଜ କାମରେ ଲାଗନ୍ତି । ଆଉ ରାତିରେ ଯେ ନର୍ସ, ସେ ଅଲଗା କିସମର ପଦାର୍ଥ, ତୁମରି ପରି ଜଣେ ; ତୁମପରି ସୁନ୍ଦରୀ ନ ହେଲେ ବି ସୁନ୍ଦରୀ କହିବାକୁ ହେବ । ତାଙ୍କ ପଛରେ ଲାଗିଛନ୍ତି ଜଣେ ଯୁବକ ; ମୋର ମନେ ହୁଏ ସେଇ ଡାକ୍ତରଖାନା ହତାର ବଗିଚାରେ ତାଙ୍କୁ ଅପେକ୍ଷା କରି ରହିଥାନ୍ତି । ସେଦିନ ତାଙ୍କୁ କହିଥିଲି, ବଗିଚାର ମାର୍ବଲ୍ ବେଞ୍ଚ ଉପରେ ଠାଣ, ମାଣ୍ଡିଟିଏ ଧରି ତାଙ୍କ ଯୁବକ ପାଖକୁ ଯା'ନ୍ତୁ ; ବରଂ ଦୁଇଟି ମାଣ୍ଡି ନେଇ ଯା'ନ୍ତୁ ବୋଲି କହିଥିଲି, ଉଭୟଙ୍କ ପାଇଁ ଗୋଟିଏ ଗୋଟିଏ । ମୋ କଥା ଶୁଣି ରାତ୍ରି ନର୍ସ୍ ମୋ ଉପରେ ବିଗିଡ଼ି ଗଲେ ।

ଖ୍ରୀଷ୍ଟିନ୍ ଉଦାସ ପରି କହିଲା, ''ତୁମେ ତ ସବୁଦିନେ ଏଇପରି ବେଢଙ୍ଗିଆ କଥା କହ ।'' ଏହା କହି ମୁହଁ ଟେକି ଟିକଏ ହସିବାକୁ ସେ ଚେଷ୍ଟା କରିଥିଲା ।

ସେ ଖ୍ରୀଷ୍ଟିନ୍‌ର କାନ୍ଦିବାର ଦେଖି କହିଲେ, "କାନ୍ଦି କାନ୍ଦି ଆଖିପତା ଓଦା ହୋଇଥିବ, ସୁନ୍ଦରୀର ଏପରି ଆଖିକୁ ଦେଖିଲେ ଯେତେବେ ଆନନ୍ଦ ସେତେ ଆନନ୍ଦ ଆଉ କୌଣସିଥିରେ ନାହିଁ ।'' ଏକଥା ଶୁଣି ଖ୍ରୀଷ୍ଟିନ୍ ସାଙ୍ଗେ ସାଙ୍ଗେ ଉଠିପଡ଼ି ତାଙ୍କ କାନକୁ ଭିଡ଼ି ଦେଲା ।

ରୁଷ୍ଟ ହୋଇ କହିଲା, ''ତୁମେ କୌଣସି କଥାକୁ ଗୁରୁ କରୁନାହିଁ । ତୁମେ ପ୍ରକୃତରେ ମୋତେ କେବେ ସୁଖ ପାଉଥିଲ ବୋଲି ମୋର ବିଶ୍ୱାସ ହେଉନାହିଁ । ମୋର ମନେ ହେଉଛି, ମୁଁ ଚାଲିଯିବାରୁ ତୁମକୁ ଭଲ ହୋଇଛି, ତୁମର ନର୍ସ୍ ଦୁଇଟିଙ୍କୁ ଧରି ତୁମେ ରହିଛ । ସେ କିନ୍ତୁ ତୁମକୁ ଖାଇଣାଇବାରେ ବିଗାଡ଼ି ଦେଲେଣି । ଗୋଟାଏ ବୁଢ଼ା ଭୁଆ ବିରାଡ଼ି ପରି ଦିଶୁଛ, ସେଇମିତି ଚକ୍‌କଣ ଓ ଗେହ୍ଲା ହେଇଚ ।''

ସେ ସ୍ୱୀକାର କଲେ, "ମୁଁ ଖୁବ୍ ଗେହ୍ଲା ହୋଇଛି ଯେ, ହକ ପଇସା ଦେଇ ହେଇଚି ।'' ତାଙ୍କର ମନ ହୋଇଥିଲା, ପଚାରିଥାନ୍ତେ,

କଠିଣ ନେଳି ଆଖିବାଲା ତା'କୁ ଭଲ ପାଉଛି କି ନାହିଁ । କିନ୍ତୁ ପ୍ରଶ୍ନଟା ତୋଟିଠେଇ ଅଟକି ଗଲା । ପଗୁରିଲେ ପୁଣି କହିବ, ଅସଭ୍ୟ ବୋଲି । ଅଣ୍ଟାଠାରୁ ତଳକୁ ତାଙ୍କର ନିର୍ଜୀବ ହୋଇ ଯାଇଥିବାରୁ ଏଭଳି ଚିନ୍ତା ତାଙ୍କୁ ଆମୋଦ ଦେଉ ନାହିଁ । ଆଜି ଘଡ଼ିଏ ଖଣ୍ଡେ କଥାବାର୍ତ୍ତା ହୋଇ ଖ୍ରୀଷ୍ଟିନ୍ ରାତି ନର୍ସକୁ ତାଙ୍କ ପାଖକୁ ଡାକି କହିଲା, "ଦେଖ, ଶୋଇବା ପୂର୍ବରୁ ଯେଉଁ ଗରମ ଦୁଧ ଦେଉଛ ସେଥିରେ ଟିକିଏ ରମ୍ (ମଦ) ଓ ଜାଇଫଳ ପକାଉଥିବ ।"

ରାତି ନର୍ସ ଉଦ୍ଧତ ଭାବେ ଠିଆ ହୋଇ ଫୋପାଡ଼ିଲା ପରି କହିଲା, "ମା ! ସେଇପରି ଦିଆ ହେଉଛି ।" ଏତିକି କହି ନର୍ସ ଗଲାବେଳେ ତା'ର ଗାଉନ ଟିକିଏ ବେଶୀ ଫଡ଼ ଫଡ଼ ହେବାର ସେ ଲକ୍ଷ୍ୟ କଲେ ।

ଖ୍ରୀଷ୍ଟିନ୍ ଟିପ୍ପଣୀ କଲା, "ମୁଁ ସ୍ୱାକୁ ଈର୍ଷା କରୁ ନାହିଁ ତ !"

ସେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ, "ତୋ'ର ଈର୍ଷା କରିବାର ଆଉ କେଉଁ ଅଧିକାରଟା ଅଛି କି ?"

ସେ ପ୍ରତ୍ୟୁତ୍ତର କଲା, "ତୁମ ପାଇଁ ମୁଁ ସବୁବେଳେ ଈର୍ଷା କରିବି । ତୁମେ ପରା ମୋ ମନ-ଜହାଜର କପ୍ତାନ୍ !" ତା'ପରେ ସେ ଚାଲି ଯାଇଥିଲା । ତା ସଙ୍ଗେ ଯେଉଁ ଅଧଘଣ୍ଟାଏ କଟିଲା, ତା ଭିତରେ ସୁଖ ଦୁଃଖର ମିଶ୍ରିତ ଭାବ ତାଙ୍କ ମନରେ ଅଦ୍ଭୁତ ଭାବେ ଖେଳିଯାଇଥିଲା । ମନରେ ସେ ଭାବର ଅବଶେଷ ରହିଲା, ଖ୍ରୀଷ୍ଟିନ୍‌ର ଲୋତକପୂର୍ଣ୍ଣ ଆଖିରେ ସ୍ମିତହାସ୍ୟ । ଏହା ତାଙ୍କ ସ୍ମୃତିରେ ସ୍ଥାୟୀ ସମ୍ପତ୍ତି ହୋଇଯାଇଛି । ଖ୍ରୀଷ୍ଟିନ୍‌କୁ ଆଂଶିକ ଭାବେ ସେ ସ୍ଥାୟୀଭାବେ ନିଜର କରି ରଖିଛନ୍ତି । ସେ ଅଂଶ ଯୁବକର ଆଖିରେ ପଡ଼ିବ ନାହିଁ କି ଯୁବକ ତାର ଅନୁଭୂତି ମନରେ ସାଇତି ରଖି ପାରିବ ନାହିଁ । ତାହା ତାଙ୍କ ସ୍ମୃତିରେ ରହିଛି—ସେ ତା'ର ଅଙ୍ଗସମ୍ଭାକୁ ଅକତିଆର କରି ନାହାନ୍ତି, କିନ୍ତୁ ତା'ର ଯୌବନ ଢଳ ଢଳ ସୌନ୍ଦର୍ଯ୍ୟର ଗଭୀର ଅନୁଭୂତି ତାଙ୍କ ପାଖେ ଅଛି । ଯୁବତୀର ଶ୍ରମକାନ୍ତ ସୌନ୍ଦର୍ଯ୍ୟର ଉପଲବ୍ଧି କେବଳ ବୃଦ୍ଧ ହିଁ କରିପାରେ, ଯୁବକର କାମାସକ୍ତ ଦୃଷ୍ଟିକୁ ତାହା ଦିଶେ ନାହିଁ । ଯୌବନ ଓ ବାର୍ଦ୍ଧକ୍ୟର ପାର୍ଥକ୍ୟ ଏଇଠାରେ··· ।

ଏହିସବୁ ପୂର୍ବସ୍ମୃତିରେ ବୁଡ଼ି ବୁଡ଼ି ମିଷ୍ଟର ନର୍ଟନ୍ ଯେତେବେଳେ ବର୍ତ୍ତମାନକୁ ଫେରି ଆସିଲେ, ସେ ଦେଖିଲେ ଘର ଅନ୍ଧାର ।

ଚନ୍ଦ୍ର ମେଘ ଭିତରେ ଆତ୍ମଗୋପନ କରିଛନ୍ତି । କମ୍ପିତ ମସ୍ତିଷ୍କ ମୁହାଁ ଘୁରାଇ ସେ ଦେଖିଲେ ସମଗ୍ର ଆକାଶ ମେଘାଚ୍ଛନ୍ନ । ତାଙ୍କୁ ଘରଟି ଦୁର୍ବଳ ଲାଗୁଥାଏ । ହଠାତ୍ ତାଙ୍କ ଗୃହରେ କ'ଣ ଅଟକିଲା ପରି ଲାଗିଲା । ତାଙ୍କ ପାଦର ସ୍ନାୟୁମାନଙ୍କର ଶେଷ ଭାଗ ଆଡ଼କୁ ଆସ୍ତେ ଆସ୍ତେ କୋଳ ମାରି ଆସୁଥିଲା । ସେ ଅନୁଭବ କଲେ, ଜଡ଼ତାର ଗ୍ଲେଟ ଗ୍ଲେଟ ଅସଂଖ୍ୟ ଅଣ୍ଡା ହାତ ତାଙ୍କର ମାଂସପେଶୀ ଓ ଶିରା ପ୍ରଶିରାରେ ସ୍ପର୍ଶ କରି ଯାଉଛନ୍ତି ।

ଏତିକିବେଳେ ଦ୍ୱାର ଖୋଲିଗଲା ଓ ସନ୍ତ-ନର୍ସ ପ୍ରକୋଷ୍ଠ ଭିତରେ ପଶିଲେ । ତାଙ୍କ ସଙ୍ଗେ ସଙ୍ଗେ ଶିଶିର ସିକ୍ତ ପଲ୍ଲବର ସୁଗନ୍ଧ ଆସି ପ୍ରକୋଷ୍ଠଟିକୁ ସୁବାସିତ କରିଦେଲା । ସେ ଦଉଡ଼ି ଦଉଡ଼ି ଇଲେକ୍‌ଟ୍ରିକ ସୁଇଚ୍ ଟିପି ଦେଲେ, ସମସ୍ତ ପ୍ରକୋଷ୍ଠଟି ଆଲୋକିତ ହୋଇଗଲା । କିନ୍ତୁ ଆଲୋକଠାରୁ ଅଧିକ ଉଜ୍ଜ୍ୱଳ ଦିଶୁଥିଲେ ସେ ନିଜେ—ସନ୍ତ ନର୍ସ । ଉଦ୍ୟାନର କୁହୁଡ଼ି ଯୋଗୁଁ ତାଙ୍କ କେଶ ଆର୍ଦ୍ର ହୋଇଥାଏ, ତାଙ୍କ କପୋଳ ରକ୍ତିମ ଅଧର କୁଞ୍ଚିତ ହୋଇଥାଏ ।

ଶଯ୍ୟା ଆଡ଼କୁ ଚାହିଁ ଦେଇ ସେ ବ୍ୟସ୍ତ ହୋଇ ଚିତ୍କାର କଲେ, "ମିଷ୍ଟର ନର୍ଟନ !" ମିଷ୍ଟର ନର୍ଟନ, ସନ୍ତ ନର୍ସଙ୍କୁ ଆଶ୍ୱାସନା ଦେବାକୁ କିଛି କହି ପାରିଥିଲେ କେଡ଼େ ଆନନ୍ଦିତ ହୋଇ ନଥାନ୍ତେ । ଜୀବନ ପ୍ରତି ଅନ୍ତିମ କୃତଜ୍ଞତା ପ୍ରକାଶ କରି ସେ କହିଥାନ୍ତେ "ପ୍ରିୟେ, ମୋର ଶେଷ ମୁହୂର୍ତ୍ତରେ ତୁମେ ମୋତେ ଏ ରୂପବିଭବ ଦେଖାଇ କେଡ଼େ ଆନନ୍ଦିତ କରିଛ ।" ଏପରି କହି ପାରିଥିଲେ ତାଙ୍କର କି ଗଭୀର ଆତ୍ମସନ୍ତୋଷ ନ ହୋଇଥାନ୍ତା !

କିନ୍ତୁ ତାଙ୍କର ଆଉ କଥା କହିବାର ଶକ୍ତି ନଥିଲା ।

———

# ଆଲୋକିତ ବାତାୟନ

ରାତିଟା ବେଶ୍ ପରିଷ୍କାର ଥାଏ । ଓ୍ୱାଲ୍‌ଷ୍ଟ୍ରିଟ୍‌ର ଗୋଟିଏ ପ୍ରାସାଦର ଅଠର ମହଲାରେ ଥିବା ତାଙ୍କ ଅଫିସ ଘରର ଝରକା ବାଟେ ଟେଡ୍ ହଣ୍ଟର୍ କାହିଁ ତଳେ ଥିବା ସଂକୀର୍ଣ୍ଣ ଗଳି ଉପରକୁ ଦୃଷ୍ଟି ପକାଇଲେ । ଗଳିର ଉଭୟ ପାର୍ଶ୍ୱର ଉଚ୍ଚ କୋଠାମାନଙ୍କ ଯୋଗୁଁ ଭ୍ରମ ହେଉଥାଏ ଯେ, ବୋଧହୁଏ ଏହା ଭ୍ରମ ନୁହେଁ -- ଗଳି ମୁଣ୍ଡରେ ଥିବା ପୁରୁଣା ଛୋଟ ଗିର୍ଜା ଆଡ଼କୁ ଗଳିଟି ଉଠି ଉଠି ଯାଇଛି । ତନ୍ଦ୍ରା କାରଣରେ ମନେ ହେଉଥାଏ, ଗିର୍ଜାଟି ଗୋଟିଏ ଛୋଟିଆ ଅନୁଚ୍ଚ ପାହାଡ଼ ଉପରେ ଚାରିପଟରେ ଅତି ଉଚ୍ଚ ଅଟ୍ଟାଳିକା ମାନଙ୍କଠାରୁ ଅଲଗା ହୋଇ ରହିଛି । ଟେଡ୍ ହଣ୍ଟର୍ ଝରକା ପାଖେ ଠିଆ ହୋଇ ଏ ଦୃଶ୍ୟର ରମଣୀୟତା ଅନୁଭବ କରିବାକୁ ଲାଗିଲେ । ସେ ସବୁଦିନେ ଏଇଭଳି ଚାହାନ୍ତି; ଏପରି ଚାହିଁଲେ ତାଙ୍କ ନିଃସଙ୍ଗ ଜୀବନରେ ଟିକିଏ ଆନନ୍ଦ ଆସେ ।

ନିଶ୍ଚୟ ବେଶୀ ରାତି ହୋଇଥିବ । ତାଙ୍କ ଅଫିସର ଏଇ ଗୋଟିକ ଝରକା ବ୍ୟତୀତ, ଅନ୍ୟ କୌଣସି ଝରକାରୁ ଆଲୋକ ଦିଶୁ ନଥାଏ । ତଥାପି ମିଷ୍ଟର୍ ହଣ୍ଟର୍ ନିଜ ଘରକୁ ଫେରିବାକୁ ଚାହୁଁ ନଥାନ୍ତି । ସଅଳ ହେଉ ବା ବିଳମ୍ବ ହେଉ, ତାଙ୍କ ସ୍ତ୍ରୀ 'ସ୍ୟୁ' ତାଙ୍କୁ ଚାହିଁ ବସିନଥିବ । ବହୁ ସପ୍ତାହ ହେଲା ସେ ତାଙ୍କୁ ପ୍ରତୀକ୍ଷା କରିବା ଛାଡ଼ି ସାରିଲାଣି । ଯଦି ଏଇ ଅଫିସ୍‌ର ଚମଡ଼ା ସୋଫାରେ ସେ ରାତି ତମାମ କଟାଇ ଦିଅନ୍ତି ତେବେ ବି ସେ ଜାଣିବ ନାହିଁ କି ଜାଣିବାକୁ ଚାହିଁବ ନାହିଁ । ପ୍ରଥମେ ପ୍ରଥମେ କଳି ଲାଗିଲା ସେ ଅଫିସ୍‌ରେ ଯେତେବେଳେ ରାତି କଟାନ୍ତି, ତା'କୁ ଏତେ ଡର ମାଡ଼ୁଥିଲା ଯେ, ସେ ଆଉ କଳିକରିବାକୁ ଶଙ୍କୁଥିଲା । ସେ ଅବସ୍ଥା ପାର ହୋଇଗଲାଣି । ରାତିରେ ଘରକୁ ନ ଗଲେ ସେ ଆଉ ଡରୁନାହିଁ; ପରେ

ଦେଖିଲେ ବଡ଼ ଖୁସି କରୁଛି । ତାଙ୍କର ଏ କଳର କାରଣ କ'ଣ ? ପ୍ରଥମେ ପ୍ରଥମେ କିଛି ନା କିଛି କାରଣ ଥିଲା ; ତା'ର ଉପରେ କଥା କଟାକଟି ହେଉଥିଲା, ପଛକୁ ମନେ ପଡ଼ୁଥିଲା, "ମୋର ଠିକ୍ ତା'ର ଭୁଲ୍ ।" ଏବେ କଳର କାରଣ ଖୋଜିଲେ ମନେ ପଡ଼ୁନାହିଁ । ଏବେ ବିନା କାରଣରେ, ପ୍ରତି କଥାରେ କଳି ଲାଗୁଛି । ଏ ଅବସ୍ଥାରେ ଆଉ ବେଶୀ-ଦିନ ଏକାଠି ରହିହେବ ନାହିଁ । କିନ୍ତୁ ସେ କଥା ପ୍ରଥମେ ବାହାରିବ କାହା ମୁହଁରୁ ? ଦୁହିଁଙ୍କ ଯାକ ମୁଣ୍ଡରେ ନାଲି ବାଳ, କେହି ଟିପ ଗୁଡ଼ିବା ବାଲା ନୁହନ୍ତି ।

ହଉ ଦେଖିବା ! ସେ ବିରକ୍ତିରେ ନାକ ନଗୁଇଲେ ଓ ଉଠି ଡେସ୍କ ପାଖରେ ଠିଆ ହୋଇ, କହୁଣୀ ପାଖରେ ଥିବା ପିଆଲାରୁ ଗୋଟିଏ ସ୍ୟାଣ୍ଡୱଇଚ୍ ଆଣି ଥର୍ମୋସ୍‌ଫ୍ଲାସ୍କରୁ କଫି କପେ ଢାଳିଲେ । ତା'ପରେ, ପାତଳା ଧଳା କାଗଜ ଉପରେ ଘରର ଯେଉଁ ନକ୍‌ସା ଆଙ୍କୁଥିଲେ ତା' ଉପରକୁ ଝୁଙ୍କି ପଡ଼ି ଗୁହାଁଲେ । ରୁଲର୍ ଧରି, ପେନ୍‌ସିଲ ଖୋଜିଲେ; କାନରେ ଖୋସିଥିବା ପେନ୍‌ସିଲ୍ ମନେ ପଡ଼ିଲାନାହିଁ । ରାତିର ଗଭୀର ନିସ୍ତବ୍‌ଧତା ତାଙ୍କୁ ସୁଖ ଲାଗୁଥାଏ । ଏତେବେଳକୁ ପୃଥିବୀ ନୀରବ ହୋଇ ଯାଇଥିବା ଗଳିର ଖୁବ୍ ଉଚ୍ଚରେ ତାଙ୍କ ଅଫିସ୍‌ର ନିସ୍ତବ୍‌ଧତା ତାଙ୍କୁ ଭଲ ଲାଗୁଥାଏ । ଆଜି କାଲି ସେ ନିସ୍ତବ୍‌ଧତାର ତତ୍ତ୍ୱ ସମଝୁଥାନ୍ତି । ବିଷର୍ଣ୍ଣ ଭାବରେ ସେ ଭାବିଲେ, ଏକାକୀ ହୋଇ ରହିବା ତାଙ୍କ ଭାଗ୍ୟରେ ଅଛି, ତେଣୁ ନୀରବତାକୁ ସୁଖ ପାଇବାକୁ ପଡ଼ିବ । ଲ୍ୟାମ୍ପର ସବୁଜ ଢାଙ୍କୁଣୀଟି ଇଞ୍ଚେ ତଳକୁ ଟାଣି ସେ କାମରେ ପୁଣି ମନ ଦେଲେ । ଘୁଷୁରି ମାଂସ ଦିଆ ସ୍ୟାଣ୍ଡୱଇଚ୍ ଚୋବାଉ ଚୋବାଉ ସେ ଯତ୍ନ ସହକାରେ, ନକ୍‌ସା ଉପରେ ସିଧାସିଧା ଗାର ଟାଣୁଥାନ୍ତି । ଆଜଯାଏଁ ଯେତେ ଘର ସେ କରିଛନ୍ତି, ସେ ସବୁଠାରୁ ସୁନ୍ଦର ଘରଟିର ଏ ନକ୍‌ସା ।

ଏଇ ସମୟରେ ଆଉଜା ହୋଇଥିବା କବାଟରେ ଠକ୍ ଠକ୍ ଶବ୍ଦ ଶୁଭିଲା; ଶବ୍ଦ ଧୀର କିନ୍ତୁ ସ୍ପଷ୍ଟ । ସେ ମୁଣ୍ଡ ଟେକି କାନ ଡେରିଲେ । ପୁଣି ଶବ୍ଦ ହେଲା । ଏତେ ରାତିରେ କିଏ ଡାକୁଛି ?

ସଫା ଗଳାରେ କଡ଼ା ପାଟିକରି ସେ କହିଲେ "ଆସ ।"

କ୍ଷଣକରେ ଦୁଆର ଫିଟିଲା । ସେ ଯାହା ଦେଖିଲେ ତାହା ବାସ୍ତବ ବୋଲି ବିଶ୍ୱାସ କରି ପାରିଲେ ନାହିଁ । ନିପୁଣ ସଜ୍ଜିତ ସହରରେ, ପୁଣି ତାଙ୍କର ନିଜ ଅଫିସ୍ ଭିତରେ ଠିଆ ହୋଇଥାନ୍ତି ଦୁଇଜଣ ଚୀନା ଲୋକ— ଜଣେ ପୁରୁଷ ଓ ଆଉ ଜଣେ ନାରୀ । ପୁରୁଷଟି ଡେଙ୍ଗା, ପତଳା, ତାଙ୍କ ଆଖିରେ ଚଷମା, ଗାଢ଼ ନୀଳବର୍ଣ୍ଣ-ସର୍ଜ କନାର ପୋଷାକ ପିନ୍ଧିଥାନ୍ତି । ପୋଷାକଟି ପୁରୁଣା ହେଲେ ବି ପରିଷ୍କାର । ସ୍ତ୍ରୀ-ଲୋକଟି ସବୁଜ ରେଶମ୍ କନାର ଚୀନ୍‌ଦେଶୀୟ ପୋଷାକ ପିନ୍ଧିଥାନ୍ତି ; ପୋଷାକଟି ତାଙ୍କ ପାତଳା ସୁନ୍ଦର ଶରୀରରେ ଲାଗି ରହିଲା ପରି ରହିଥାଏ । ତାଙ୍କ ଲମ୍ବା ମୁହଁଟି ଭାରି ସୁନ୍ଦର ଦିଶୁଥାଏ । ଖୁବ୍ ଲାଜକୁଳୀ ହୋଇ ସେ ମୃଦୁଭାବରେ ହସୁଥାନ୍ତି ।

"ଏଁ, ଆପଣମାନେ !" ଟେଡ୍ ବିସ୍ମୟରେ କହିଲେ; "ଆପଣ-ମାନଙ୍କର ମୁଁ କ'ଣ କରିପାରେ ?"

ଲୋକଟି ଏ ପ୍ରଶ୍ନ ପାଇଁ ଆଗରୁ ପ୍ରସ୍ତୁତ ହୋଇଥିଲେ । କିଞ୍ଚିତ୍ ବ୍ୟସ୍ତସମସ୍ତ ହୋଇ ସେ ହସି ହସି ବ୍ୟାକରଣ ଦୃଷ୍ଟିରୁ ଶୁଦ୍ଧ ଇଂରେଜୀରେ କହିଲେ, "ଯେ ହେଉଛନ୍ତି, ଚୀନ୍‌ଦେଶର ପ୍ରସିଦ୍ଧ ଚିତ୍ରକର ମିସ୍-ଲି । ଏଭଳି ବିରାଟ ପ୍ରାସାଦର ଭିତର ସେ କେବେ ଦେଖିନାହାନ୍ତି । ଆମେ ଏବାଟେ ଯାଉଥିଲୁଁ । ଆପଣଙ୍କ ଝରକାରେ ଆଲୁଅ ଦେଖି, ସେ ଏ ଜାଗା ଟିକିଏ ଦେଖିବେ ବୋଲି ଆମେ ଆସିଛୁ । ଆମେରିକା ଲୋକମାନେ ସହୃଦୟ ବୋଲି ଜାଣି ଆମେ ଏଭଳି ଅନଧିକାର ଚର୍ଚ୍ଚା କରିଛୁ । ଆମକୁ ମାଫ୍ କରିବେ । ମୋ'ର ନାମ ମିଷ୍ଟର୍ ଶେନ୍ ।"

ଟେଡ୍ ପୂର୍ଣ୍ଣ ବିସ୍ମୟରେ ଆଗନ୍ତୁକ ଦୁହିଁଙ୍କୁ ଚାହିଁଲେ । ସତେ ଦୁଇଜଣ ଚୀନାଲୋକ ଏ ସମୟରେ ଆସି ତାଙ୍କ ପାଖରେ ପହଞ୍ଚିପାରନ୍ତି ଏକଥା ତାଙ୍କର ବିଶ୍ୱାସ ନ ହେଉଥିଲେହେଁ, ଅଗତ୍ୟା ତାଙ୍କୁ ଏହି ଅସମ୍ଭବତ ବାସ୍ତବତା ସ୍ୱୀକାର କରିବାକୁ ପଡ଼ିଲା ।

ତଥାପି ତାଙ୍କର ମନେ ହେଉଥାଏ, ଏ ଦୁଇଜଣ ତାଙ୍କ କଳ୍ପନାରେ ହିଁ ମୂର୍ତ୍ତିମନ୍ତ ହୋଇଛନ୍ତି । ତେଣୁ କଥଞ୍ଚିତ ଠାଣି ହୋଇ ସେ କହିଲେ, "ଆସନ୍ତୁ ଆସନ୍ତୁ । ଏ ସ୍ଥାନକୁ ଆପଣଙ୍କର ନିଜ ଘର ବୋଲି ବିଚାରି ସଂକୋଚ ଛାଡ଼ନ୍ତୁ । ହେଇଟି କଫି ଓ ସ୍ୟାଣ୍ଡୱିଚ୍ ଅଛି, ନିଅନ୍ତୁ ।"

ଅତିଥି ଦୁହେଁ ଭଦ୍ରଭାବେ ଅଥଚ ନିଃସଙ୍କୋଚରେ ଆସି ଦୁଇଟି ଭଲ ଚୌକିରେ ବସିଲେ; କଫି ଓ ସ୍ୟାଣ୍ଡୱଇଚ୍ ଗ୍ରହଣ କଲେ । ଟେଡ୍ ବି ବସିଲେ, ତଥାପି ତାଙ୍କ ଦ୍ବିଧାଣିରୁ ହସୁ‌ସ୍ଥ ଯାଉନଥାଏ । ଅବଶେଷରେ ସେ କହିଲେ, "ମୋର ଆଶା, ଆପଣମାନଙ୍କର କିଛି ଅସୁବିଧା ହେଉ-ନାହିଁ । ସେ ନିଜେ ଟିକିଏ ଆଶ୍ୱସ୍ତ ହୋଇ ନିଜେ ଆଉ ଗୋଟିଏ ସ୍ୟାଣ୍ଡୱଇଚ୍ ଖାଇଲେ; କହିଲେ, "ଆପଣମାନେ ଆସି ମୋ ପାଖରେ କିପରି ପହଞ୍ଚିଲେ ଜାଣି ପାରିବି କି ?"

ମିସ୍-ଲି ମଧୁର ସ୍ୱରରେ କହିଲେ, "କେବଳ ଆପଣଙ୍କର ଝରକାଟିରେହିଁ ଆଲୁଅ ଦିଶିଲା ।"

ଟେଡ୍ ପଚାରିଲେ, "ମୋ ଦୁଆର କେମିତି ପାଇଲେ ?"

ମିଷ୍ଟର୍ ଶେନ୍ କହିଲେ, "ଗଳି ଉପରୁ ଆମେ ଗୋଟି ଗୋଟି କରି ଅଠର ମହଲା ଗଣିଲୁ । ତା'ପରେ ଆପଣଙ୍କର ଆଲୋକିତ ଝରକାଟିର ବାଁ ଡାହାଣରେ ଯେତୋଟି ଝରକା ତା'କୁ ବି ଗଣିଲୁ ।"

ଟେଡ୍ କହିଲେ, "ବୁଝିଲି ; ଘର ଠିକଣା କରିବାକୁ ଆପଣମାନେ ବେଶ୍ ଉପାୟ କରିଛନ୍ତି । କିନ୍ତୁ ଆଜି ଯଦି ମୋ ଝରକାରେ ଆଲୁଅ ଦେଖିଲେ, ଅନ୍ୟ କୋଉଦିନ ଏହା ବି ଆଲୋକିତ ହୋଇନଥାନ୍ତା ।"

ମିଷ୍ଟର୍ ଶେନ୍ ଖୁବ୍ ଭଦ୍ରଭାବେ ପଚାରିଲେ. "ଆପଣ କ'ଣ ତେବେ ସବୁଦିନ ରାତିରେ ଏଠାରେ କାମ କରନ୍ତି ନାହିଁ ?"

ଟେଡ୍ କହିଲେ, "ବାଧ୍ୟ ନହେଲେ ମୁଁ ରାତିରେ କାମ କରେ ନାହିଁ । ନିଜର ବିଶାଳ ବକ୍ଷରେ ଡାହାଣ ହାତରେ ଚାପୁଡ଼ା ମାରି ସେ ଅଜ୍ଞାତ ଆଗନ୍ତୁକ ଦୁହିଁଙ୍କୁ କହିଲେ; "ଜାଣନ୍ତୁ ଯେ ମୋର ଖୁବ୍ ଉଚ୍ଚ ଆକାଂକ୍ଷା ଥିଲେ ବି ବାସ୍ତବରେ ମୁଁ ଗୋଟିଏ ମାମୁଲିଧରଣର ଲୋକ, ଜଣେ ସାମାନ୍ୟ ଗଣିତଜ୍ଞ । ମୁଁ ଧାଡ଼ି ଧାଡ଼ି କରି ଅଙ୍କ ଲେଖେଁ, ଡାହାଣରୁ ବାଁକୁ, ବାଁରୁ ଡାହାଣକୁ ତାକୁ କଷେ ଏବଂ ସେଥିରୁ ତତ୍ତ୍ୱ ବାହାର କରିବାକୁ ମୋ ମାଲିକଙ୍କୁ ଦେଇଦିଏ । ଦିଶାଣ ଫେଡ଼ାଣ ତାଙ୍କୁ ଅଜଣା, ହରଣ ଗୁଣନ ତାଙ୍କ ପକ୍ଷରେ କଥାର କଥା । ସେଥିପାଇଁ ତାଙ୍କର ଶୋଚନା ନାହିଁ । ସେ କହନ୍ତି, ସାମାନ୍ୟ ଟଙ୍କା କେତୋଟା ଦେଲେ, ଗଣିତଜ୍ଞ ଜଣେ ଦାଣ୍ଡରୁ ଡ଼ାକିଆଣି ହେବ । ତାଙ୍କ ଭଳି ଲୋକର 'ଭିତର ମସ୍ତିଷ୍କ ମୋପରି

ଗଣିତଜ୍ଞଙ୍କ ଶ୍ରେଷ୍ଠ କାମରେ ଆବଦ୍ଧ ହେବାର ନୁହେଁ ବୋଲି ତାଙ୍କର ମତ ।" ଟେଡ୍ ବିଷଣ୍ଣ ଦୃଷ୍ଟିରେ ସ୍ୱୀକାର କହିଲେ; "ତାଙ୍କ କଥା ଠିକ୍ । ସେ ମୋ ଅଙ୍କରୁ ପୃଷ୍ଠେ ନେଇ, ସେଥିରୁ କେତେ କଥା ବାହାର କରି ଲେଖିଯା'ନ୍ତି । ମୋ କାମରେ ମୁଁ ଏତେ ନିରୁତ୍ସାହ ହୋଇଗଲଣି ଯେ, ଆଜି ଗୋଟାଏ ବୃତ୍ତି ଧରିବାକୁ ଆରମ୍ଭ କରିଛି ।"

ମିଷ୍ଟର୍ ଶେନ୍ ପୁଣି ନମ୍ରଭାବରେ ପଚାରିଲେ, "ଆଜି କେଉଁ ବୃତ୍ତି ।"

ଟେଡ୍ କହିଲେ, ଗୃହନିର୍ମାଣ ବିଦ୍ୟା । ନୈଶବିଦ୍ୟାଳୟରେ ମୁଁ ଏହା ଶିକ୍ଷା କରୁଛି । ହେଇଟି ଡେସ୍କ୍ ଉପରେ ରଖା ହୋଇଛି, ମୋତେ ଘରେ କରି ନେବାକୁ ନକ୍ସା । ଗୃହସ୍ଥ ପାଇଁ କଳ୍ପିତ ଗୋଟିଏ ଘରର ନକ୍ସା । ନିଯୁକ୍ତ ଅନ୍ତଃପାଖ ମଫସଲରେ ଏପରି ଘରଟିଏ ତୋଳିଲେ ପ୍ରାୟ ଦେଡ଼ ଲକ୍ଷ ଟଙ୍କାରୁ ବେଶୀ ପଡ଼ିବ ନାହିଁ ।"

ଏ କଥାରେ ମିଷ୍ଟର୍ ଶେନ୍ ଖୁବ୍ ଆଗ୍ରହୀ ହୋଇଥିବାର ଦେଖାଗଲା । ମନେ ହେଉଥିଲା, ସେ ଯେପରି ଆଶା କରୁଛନ୍ତି, ନିଜର ବୃତ୍ତି ବଦଳାଇବାକୁ । ସେ ନମ୍ରଭାବେ ପଚାରିଲେ, "ଆପଣଙ୍କ ନାମ ଜାଣିପାରେ କି ?"

ଟେଡ୍ କହିଲେ, "କ୍ଷମା କରିବେ, ମୋ ନାମ ଆଗରୁ କହିବା ଉଚିତ ଥିଲା । ମୁଁ ଟେଡ୍ ହଣ୍ଟର୍ । କିନ୍ତୁ ଅସାଧାରଣ ନାମ ନୁହେଁ ; ମୁଁ ତ ନିଜେ ଅତି ସାଧାରଣ ଲୋକ, ନାମ ଅସାଧାରଣ ହୁଅନ୍ତା କାହିଁକି ? ମୋ ଜୀବନରେ ଏକମାତ୍ର ଅସାଧାରଣ ଘଟଣା ଆଜି ଘଟିଛି—ଦ୍ୱାର ଫିଟାଇ ଆପଣ ଦୁହିଁଙ୍କୁ ଠିଆ ହୋଇଥିବାର ଦେଖିବା । ଆଚ୍ଛା, ଆପଣ ଦୁହେଁ ଏ ନଗରରେ ଆସି ପହଞ୍ଚିଲେ କିପରି ? ଆପଣ ଆପଣଙ୍କ ଚୀନ୍ ଦେଶରେ ରହିଲେ ନାହିଁ କାହିଁକି ?

ମିସ୍-ଲି ବେଦନାଭରା ସ୍ୱରରେ କହିଲେ; "ଇତିମଧ୍ୟରେ ଆମ ଦେଶରେ କମ୍ୟୁନିଷ୍ଟଙ୍କ ରାଜତ୍ୱ ହୋଇଯିବାରୁ, ଆମ ଭଳି ଲୋକେ ସେଠାକୁ ଫେରିବାର ସମ୍ଭାବନା ନାହିଁ ।"

କୌତୂହଳୀ ହୋଇ ଟେଡ୍ ପଚାରିଲେ, "ଏବେ ଆପଣମାନେ ଏଠାରେ କ'ଣ କରନ୍ତି ?"

ମିସ୍‌ଲି କହିଲେ, "ମିଷ୍ଟର୍ ଶେନ୍‌ଙ୍କର ସୁନ୍ଦର ହସ୍ତଲିପି ଯୋଗୁଁ ଚୀନ୍‌ରେ ଖୁବ୍ ନାମ ଥିଲା । କିନ୍ତୁ ଏଠାରେ ସୁନ୍ଦର ଚୀନ୍‌ଦେଶୀୟ ହସ୍ତଲିପି ଖୋଜୁଛି କିଏ ? ତେଣୁ ଗୋଟିଏ ରେସ୍ତୁରାଁରେ ତାଙ୍କୁ କାମ କରିବାକୁ ପଡ଼ୁଛି ।"

"ଆଉ ଆପଣ ?"

ଏଥର ମିଷ୍ଟର୍ ଶେନ୍‌ଙ୍କର କହିବା ପାଳି ପଡ଼ିଲା "ରେସ୍ତୁରାଁରେ ମୋର ମିସ୍‌ଲିଙ୍କ ସଙ୍ଗେ ପ୍ରଥମେ ସାକ୍ଷାତ ହୁଏ । ଆଗରୁ କହିଛି, ସେ ଜଣେ ପ୍ରସିଦ୍ଧ ଚିତ୍ରକର । ଆଜକାଲି ଚୀନ୍‌ଦେଶର ଅବସ୍ଥା ଯାହା, ତାଙ୍କ ପରିବାର ତାଙ୍କ ପାଖକୁ ଟଙ୍କା ପଠାଇବା ଅସମ୍ଭବ । ତେଣୁ '୫୭ଶ' ଷ୍ଟ୍ରିଟ୍‌ରେ ଥିବା ଗୋଟିଏ ଚିତ୍ରାଳୟରେ ତାଙ୍କ ଚିତ୍ରାବଳୀ ବିକିବାକୁ ସେ ଚେଷ୍ଟା କରୁଛନ୍ତି । କିନ୍ତୁ ଏଠାର ଲୋକେ ତାଙ୍କ ଚିତ୍ର, ଚୀନଦେଶର ପ୍ରାକୃତିକ ଦୃଶ୍ୟ, ଚୀନ୍ ଦେଶର ପର୍ବତର ଚିତ୍ର—କିଣିବାକୁ ଗୃହୁଁ ନାହାନ୍ତି । ଚିତ୍ରାଳୟର ଯେଉଁ ଯୁବକଟି । ମାଲିକ, ସେ ସ୍ୟାଙ୍କୁ କହୁଛନ୍ତି, ଆମ ସ୍ଥାନୀୟ ଦୃଶ୍ୟର ଚିତ୍ର କରିବାକୁ । ଆପଣଙ୍କ ଏଇ ଗଳିର କ୍ଷୁଦ୍ର ଗିର୍ଜାଟିର ଚିତ୍ର କରିବାକୁ ମୁଁ ସ୍ୟାଙ୍କୁ ଆଣିଛି । କିନ୍ତୁ ସ୍ୟାଙ୍କୁ ସାଙ୍ଗରେ ଆଣିବାକୁ ମୋତେ କେବଳ ମିଳୁଛି, କେବଳ ରାତିରେ । ଆଜି ଆପଣଙ୍କ ଆଲୋକିତ ବାତାୟନ ଦେଖି ସ୍ୟେ କହିଲେ ଉଚ୍ଚ ଅଟ୍ଟାଳିକାମାନଙ୍କର ବାହାର ଦୃଶ୍ୟ ତ ଦେଖିଲି, ପାହାଡ଼ ପରି ଦିଶୁଛନ୍ତି । ଭିତର ଦେଖି କିଛି ପ୍ରେରଣା ପାଇବାକୁ ମୋର ଇଚ୍ଛା ।' ତେଣୁ ସ୍ୟାଙ୍କୁ ମୁଁ ଆପଣଙ୍କ ଏଠାକୁ ଆଣିଛି । ଏଭଳି ଅଯାଚିତ ଭାବେ ଆସିବା ଆମ ପକ୍ଷରେ ଅନଧିକାର ଚର୍ଚ୍ଚା ହୋଇଛି । ଚିତ୍ରାଳୟର ଯୁବକଙ୍କ କଥାରେ; ଆମେ ସ୍ଥାନୀୟ ପରିବେଶ ଦେଖିବାକୁ ଏଭଳି ଆସିଛୁଭଳି । ଆମକୁ କ୍ଷମା କରିବେ ।"

ଟେଡ୍ ଜବାବ୍ ଦେଲେ, "ସ୍ୟେ ତ ପଶ୍ଚିମରାଜ୍ୟର କଥା—ଚୀନା ପଶ୍ଚିମରାଜ୍ୟ । ହଉ, ଆଉ କିଛି ସ୍ୟାଣ୍ଡ୍‌ଉଇଚ୍ ଖାଆନ୍ତୁ । ମୁଁ ସାଧାରଣତଃ ଅଧରାତିପର୍ଯ୍ୟନ୍ତ କାମ କରେ । କିନ୍ତୁ ଆଜି ଆଉ କିଛି କରି ପାରିବି ନାହିଁ । ଆପଣ ଦୁହେଁ ରହନ୍ତି କେଉଁଠି ?"

ମିସ୍ ଲି ତରତର ହୋଇ ଉତ୍ତର ଦେଲେ, "ଦୁହେଁ ଏକସ୍ଥାନରେ ରହୁନାହିଁ । ମୁଁ ମିସେସ୍ ଫିଲ୍‌ଡମ୍ୟାନ୍‌ଙ୍କ ଘରେ ରହେ । ମୋତେ ଗୋଟିଏ କୋଠରୀ ମିଳିଛି ।"

ମିଷ୍ଟର୍ ଶେନ୍ ଭାବୁଥାନ୍ତି । ଏଇ ଯୁବକଜଣଙ୍କଦ୍ୱାରା ତାଙ୍କର କିଛି ସୁବିଧା ହୋଇପାରେ । ସେ ତାଙ୍କର ବନ୍ଧୁ ହେବେ ବୋଲି ସମ୍ଭବ ହେଉଛି । ଜଣେ ବନ୍ଧୁଙ୍କ ସାହାଯ୍ୟ ମିଳିଲେ, ରେସ୍ତୁରାଁରେ ବାସନମାଜିବା ରୂପକ ଘୃଣ୍ୟ କାମରୁ ସେ ଅବ୍ୟାହତି ପାଇପାରନ୍ତେ । ଆମେରିକା ଲୋକେ ଖୁବ୍ ସଦ୍‌ଭାବାପନ୍ନ । କିନ୍ତୁ ତାଙ୍କ ସଙ୍ଗେ ଘନିଷ୍ଠତା କଲେ ଯାଇ କାମ ହୋଇପାରେ । ନହେଲେ ସେମାନେ ଅଭ୍ୟାସଗତ ସୌଜନ୍ୟରେ ହସନ୍ତି, ଆନ୍ତରିକତା ସହିତ ଅଭିବାଦନ କରନ୍ତି, ଖୁବ୍ ବନ୍ଧୁଭାବ ଦେଖାନ୍ତି, ଶେଷରେ ଅଚିହ୍ନା ଲୋକପରି ଚାଲିଯା'ନ୍ତି । କିନ୍ତୁ ଏ ଜଣଙ୍କ ସାଙ୍ଗେ ବେଶ୍ ଘନିଷ୍ଠତା ହୋଇ ସାରିଲାଣି ବୋଲି ମିଷ୍ଟର୍ ଶେନ୍‌ଙ୍କର ବିଶ୍ୱାସ ହେବାରୁ ଆଶା ଜାଗରିତ ହେଲା । ମୁଣ୍ଡରେ ନାଲି ବାଳ (ତାଙ୍କ ଦୃଷ୍ଟିରେ ଅସୁନ୍ଦର ହେଲେ ବି ) ଲୋକର ସାଧୁତା ଓ ସହୃଦୟତାର ପରିଚାୟକ ବୋଲି ମିଷ୍ଟର୍ ଶେନ୍‌ଙ୍କୁ ଜଣାଥିଲା । ମିଷ୍ଟର୍ ଶେନ୍ କହିଲେ, "ମୁଁ ଗୋଟିଏ ଖୁବ୍ ଖରାପ ଜାଗାରେ ରହେ । ଗୋଟିଏ ବଖରାରେ, ମୋ ଭଳି ଆଉ ଦୁ'ଜଣ ଚୀନା ପ୍ରବାସୀଙ୍କ ସଙ୍ଗେ ମୁଁ ରହେ । ମୋର ବୋଲି ଖଣ୍ଡିଏ ଖଟ ମୋତେ ମିଳିଛି ।"

ଏଇ ସମୟରେ ମିସ୍ ଲିଙ୍କର ଶିଷ୍ଟାଚାର ଭଙ୍ଗ ହେଉଛି ବୋଲି ମନେହେଲା । ସେ କହିଲେ, "ଆମ୍ଭେମାନେ ଆପଣଙ୍କର ବହୁତ ସମୟ ନଷ୍ଟ କଲୁଣି । ଏଥର ଆମର ଯିବା ଉଚିତ । କିନ୍ତୁ ଯିବା ପୂର୍ବରୁ ଆପଣଙ୍କ ନକ୍‌ସାଟି ମୋର ଦେଖିବାକୁ ମନ ହେଉଛି । ଆମେରିକା'ର ଗୃହସ୍ଥ ଯେଉଁ ଘରେ ରହନ୍ତି ସେପରି ଘରର ଭିତର ଦେଖିବା ମୋ ଜୀବନରେ ହୋଇନାହିଁ ।"

ଟେଡ୍ କହିଲେ, "ନିଶ୍ଚୟ, ନିଶ୍ଚୟ, ମୋ ନକ୍‌ସାଟି ମୁଁ ଆପଣଙ୍କୁ ବୁଝାଇଦେବି ।"

ସେମାନେ ଉଚା ଡେସ୍କ ଆଗରେ ଠିଆ ହେଲା ବେଳକୁ ଦେଖାଗଲା ମିସ୍ ଲି ଖୁବ୍ ଗେଡ଼ା । ତହୁଁ ଟେଡ୍ ଗୋଟିଏ କାଠ ଚଉକି ଆଣି ଡେସ୍କ ପାଖରେ ଥୋଇଲେ, ମିସ୍ ଲି ଦୁଇ ପୁରୁଷଙ୍କ ମଝିରେ ସେଇ ଚଉକି ଉପରେ ଠିଆ ହେଲେ । ଟେଡ୍ ନକ୍‌ସାଟି ବୁଝାଇଲେ—ବର୍ଗାକାର କ୍ଷେତ୍ରଗୁଡ଼ିକ ଘରର କୋଠରି, ଦୁଆର ଓ ଝରକାର ଚିହ୍ନ ଦେଖାଇ,

ଯେଉଁ ବୃତ୍ତଗୁଡ଼ିକର ଭିତର ଭିଣା ଭୁଲା ପରି ଚିହ୍ନ ହୋଇଛି ସେଗୁଡ଼ିକ ଅଗଣାର ଛୋଟ ଛୋଟ ଫୁଲବୁଦା, ଓ ଖାଲି ବୃତ୍ତଗୁଡ଼ିକ ଗଛ ବୋଲି ବୁଝାଇଦେଲେ । ମିସ୍ ଲି ସନ୍ତୁଷ୍ଟ ନୟନରେ ଚାହିଁ କହିଲେ, "ଏ ତ ଗୋଟିଏ ରାଜପ୍ରାସାଦ ପରି ଦିଶୁଛି ! ଯେଉଁ ଆମେରିକାନ୍‌ମାନେ ଏଭଳି ଘରେ ରହୁଅଛନ୍ତି ସେମାନେ ଖୁବ୍ ସୁଖରେ ଥିବେ ବୋଲି ମୋର ମନେ ହୁଏ ।"

ଚେଉ୍ ହଠାତ୍ କହି ଉଠିଲେ, "ନା, ନା, ଘର ଯେତେ ସୁନ୍ଦର ହେଉପଛେ କଳି-କଜିଆ ଲାଗିବ ହିଁ ଲାଗିବ । କିନ୍ତୁ ସେଥିକି ଆମର ଯାଏ ଆସେ କ'ଣ ? ସତ କହିବାକୁ ଗଲେ, ମୋ ନିଜର ତ ବର୍ତ୍ତମାନ ମୋ ସ୍ତ୍ରୀ ସଙ୍ଗେ ଝଗଡ଼ା ଲାଗିଛି । ସେଇ ହେତୁରୁ ମୁଁ ଆଜିକାଲି ସଂଧ୍ୟାରେ ସଅଳ ସଅଳ ଘରକୁ ଯିବା ବନ୍ଦ କରିଛି ।"

ମିସ୍ ଲି ପଚାରିଲେ, "ଆପଣଙ୍କର କ'ଣ ଏମିତି ଘରଟିଏ ଅଛି ।" ତାଙ୍କ ସ୍ୱରରୁ ଜଣା ପଡ଼ୁଥାଏ, ସତେ ଯେପରି ଏତେ ସୁନ୍ଦର ଘର ବାସ୍ତବରେ ନଥାଇ ପାରେ ।

ଚେଉ୍ ବେଖାତିରିଆ ଢଙ୍ଗରେ ଉତ୍ତର ଦେଲେ, "ଅନେକାଂଶରେ ଏହିପରି । ଆମ ଦୁହିଁଙ୍କ ପରିବାର ମିଶି ଏ ଘରଟି ଯୌତୁକ ସ୍ୱରୂପ ଆମକୁ ଦେଇଛନ୍ତି । ଠାଏ ଠାଏ ତହିଁର ଶ୍ରୀବୃଦ୍ଧି କରିବାକୁ ମୋର ମନରେ ଅଛି । ସେ ସବୁ ଏଇ ନକ୍‌ସାରେ ସୂଚାଇଛି ।" ଲେଉରି ପଛପଟ ନକ୍‌ସାରେ ମାତ୍ର ଘରର ଶ୍ରୀବୃଦ୍ଧି କରିବାକୁ କ'ଣ କ'ଣ ଚାହାନ୍ତି ମୋଟାମୋଟି ଦେଖାଇ, ବିମର୍ଷଭାବେ ସେ କହିଲେ, "ଆମେ ଦୁହେଁ ଛାଡ଼ବାଡ଼ ହେବାକୁ ଯାଉଥିବାବେଳେ ଏ ଶ୍ରୀବୃଦ୍ଧିରେ ଲାଭ କ'ଣ ? ବାସ୍ତବିକ ମୁଁ ବେଳେବେଳେ ଭାବୁରୁଛି, ମୋର ବୃତ୍ତି ନବଦଳାଇ ଯେପରି ଗଣିତଜ୍ଞ ହୋଇଛି ସେପରି ରହିବି ।"

ମିସ୍-ଲି ଭର୍ତ୍ସନା କଲାପରି କହିଲେ, "ଆଉ ଏତେ ସୁନ୍ଦର ଘରଟିଏ ବୃଥା ହୋଇଯିବ ।"

ଚେଉ୍ କାନ୍ଧ ନଚାଇ କହିଲେ, "ଘରଟା ବିକିଦେବୁ ।..."

ହଠାତ୍ ଭାବି ମିସ୍ ଲି କହିଲେ, "ଆପଣଙ୍କ ସ୍ତ୍ରୀ ବର୍ତ୍ତମାନ କେଉଁଠି ?"

ଉଦାସୀନ ଭାବେ ଟେଡ୍ କହିଲେ, "ଏଣେତେଣେ ବୁଲୁଥିବ। ଥିଏଟର ଅଛି, ଗଲ୍ଫ କ୍ଲବ ଅଛି। ସେଥିରେ ଡମରୁ—"

ମିସ୍ ଲି ଶଙ୍କି ପଚାରିଲେ, 'ପିଲାପିଲି ?'

ଟେଡ୍ ଉତ୍ତର ଦେଲେ, 'ସେ ପିଲାପିଲି ବୃଦ୍ଧମାନଙ୍କ ଏପର୍ଯ୍ୟନ୍ତ। ମୋର ବି ଲେଡ଼ାମାନଙ୍କୁ।"

ମିସ୍ ଲି କହିଲେ "ବଡ଼ ଭୟାନକ କଥା।" ଆମେରିକାନ୍‌ମାନେ କଥା କଥାକେ ଏ ଶବ୍ଦ ବ୍ୟବହାର କରନ୍ତି। ମିସ୍ ଲି ଯେଉଁଠି ଏ ଶବ୍ଦ ବ୍ୟବହାର କରିବା ପ୍ରୟୋଜନ ମନେ କରନ୍ତି ସେଇଠି ମାତ୍ର ବ୍ୟବହାର କରନ୍ତି। ସେ କିନ୍ତୁ ଏ ଶବ୍ଦ କହିଲା ବେଳେ ପ୍ରତି ଅକ୍ଷର ଉପରେ ଜୋର୍ ଦେଇ କହନ୍ତି।

ଟେଡ୍ ଉଦାସୀନ ଭାବେ କହିଲେ, "ତା' ମୋତେ ଜଣା। କିନ୍ତୁ—" ସେ ପୁଣି କାନ୍ଧ ନଚାଇଲେ ; କହିଲେ "ଏଇ ତ ଜୀବନ।"

ମିସ୍ ଲି ଦୃଢ଼ ଭାବରେ ଜବାବ ଦେଲେ, 'ଜୀବନ ଏପରି ନୁହେଁ। ଏହା ଅଜବ୍ ନବୋଧତା। ମୋର ମନ, ଆପଣଙ୍କର ଘରକୁ ଯା'ନ୍ତୁ।"

ମିଷ୍ଟର୍ ଶେନ୍ ବିରକ୍ତିରେ କାଶିଲେ। ଜଣେ ଆମେରିକାନ୍‌ର ଘରକୁ ଏପରି ନିଜ ଆଡ଼ୁ ଯିବାକୁ ଚାହିଁବା ସଦାଚାର ନୁହେଁ ବୋଲି ତାଙ୍କର ଦୃଢ଼ ଧାରଣା।

ଟେଡ୍ କିନ୍ତୁ କହିଲେ "ନିଶ୍ଚୟ, ନିଶ୍ଚୟ। ଆସନ୍ତା ରବିବାର ଦିନ ଆସନ୍ତୁ। ଯଦି ଦୈବାତ୍ ଇତିମଧ୍ୟରେ ମୋ' ସ୍ତ୍ରୀ ସଙ୍ଗେ ଦେଖାହୁଏ ତେବେ ଏକଥା ମୁଁ ତା'କୁ କହିବି। ତେବେ, ସେ ମୋ କଥାକୁ ବିଶ୍ୱାସ କରି ନ ପାରେ।"

ମିଷ୍ଟର୍ ଶେନ୍ ଏ ଅବସ୍ଥାରେ ବିଚାରିଲେ, ବାସ୍ତବିକ୍ ବିଦାୟ ନେବାର ବେଳ ହେଲାଣି। ସେ ମିସ୍ ଲି'ଙ୍କୁ ଠାରିଲେ, "ଏଥର ଆମର ବିଦାୟ ନେବା ଉଚିତ।"

ମିସ୍ ଲି ଚଉକି ଉପରୁ ଓହ୍ଲାଇଲେ; ମିଷ୍ଟର୍ ଶେନ୍‌ଙ୍କୁ ଚୀନଦେଶୀ ଭାଷାରେ କହିଲେ, "କି ଅଦ୍ଭୁତ କଥା। ଏତେ ବଡ଼ ଘରମାନଙ୍କରେ

ତେବେ ଏଇ ମାଳା ଗୁଳୁଛୁ । ଗୁଲ, ଆସନ୍ତା ରବିବାର ଦିନ ଏ ନାଲି ମୁଣ୍ଡିଆ ଭଦ୍ର ଲୋକଙ୍କ ଘରକୁ ଯିବା ।"

ମିଷ୍ଟର୍ ଶେନ୍ କଠୋର ଭାବେ ଜବାବ୍ ଦେଲେ, "ଆଉ କ'ଣ ତୁମେ ଏକୁଟିଆ ତାଙ୍କ ଘରକୁ ଯା'ନ୍ତ କି ? ତା' ହୋଇ ନପାରେ ।"

ଟେଡ୍ କିଛି ନ ବୁଝି ଏ କଥୋପକଥନ ଶୁଣୁଥିଲେ । ଖୁବ୍ ଆମୋଦିତ ହୋଇ ସେ କହିଲେ, "ଓଃ ! ଚୀନ୍ଭାଷା ତେବେ ଏଇମିତି ଶୁଭେ ! ରବିବାର ଓପରଓଳି ତିନ ବଜେ ମୁଁ ଗ୍ରାଣ୍ଡ୍ ସେଣ୍ଟ୍ରାଲ୍ ଇନ୍-ଫର୍ମେଶନ୍ ଅଫିସ୍‌ଠାରେ ଆପଣଙ୍କୁ ଭେଟିବି । ଆଶାକରେ ଏ ସମୟ ଆପଣଙ୍କୁ ସୁବିଧା ହେବ । ମୁଁ ମୋ ଗାଡ଼ିରେ ଆସିବି । ଆଚ୍ଛା, ଆପଣମାନେ ବିଦାୟ ନେବା ପୂର୍ବରୁ ମୋ ଝରକାରୁ ଦୃଶ୍ୟଟା କିପରି ଦିଶୁଛି ଦେଖିନିଅନ୍ତୁ ।"

ସେ ଆଗନ୍ତୁକ ଦୁହିଁଙ୍କୁ ତାଙ୍କ ଦୀର୍ଘ ବାତାୟନ ପାଖକୁ ନେଇ ଠିଆ କରାଇଲେ ଓ ଘରର ଇଲେକ୍‌ଟ୍ରିକ୍ ସୁଇଚ୍ ବନ୍ଦ କରିଦେଲେ । ସାଙ୍ଗେ ସାଙ୍ଗେ ଦୃଶ୍ୟଟି ଆଖି ଆଗରେ ନାଚି ଉଠିଲା । ନଦୀର ଧାର ଉପରେ ଦୂରବର୍ତ୍ତୀ ଇଲେକ୍‌ଟ୍ରିକ୍ ଆଲୁଅର ପ୍ରତିବିମ୍ବ ଝଲ୍‌ସି ଉଠିଲା; ତାହାଣ ପାଖକୁ ନଗରର ଦେଦୀପ୍ୟମାନ ଚୂଡ଼ା ଦିଶିଲା । ତଳେ ଦିଶିଲା ସଂକୀର୍ଣ୍ଣ ଗଳିଟି, ଓ ତାହାର ଉଠାଣି ମୁଣ୍ଡେ ଅନ୍ଧକାରବୃତ କ୍ଷୁଦ୍ର ଗୀର୍ଜା ଘରଟି ।

ଟେଡ୍ ସହାସ୍ୟେ କହିଲେ, "ଏଇ ମୋର ସହର । ସୁନ୍ଦର ଦିଶୁନାହିଁ ? ପ୍ରତି ରାତିରେ ଘରକୁ ଯିବା ପୂର୍ବରୁ ସହରର ଏଇ ଦୃଶ୍ୟଟି ଦେଖି ମୁଁ ଯାଏ । ସେ—ମାନେ ମୋ'ର ସ୍ତ୍ରୀ—ଓ ମୁଁ ଉଭୟେ ଏକ ସମୟରେ ଏହି ଦୃଶ୍ୟ ଦେଖୁଥିଲୁଁ । ଆମେ ବାହା ହେବା ପୂର୍ବରୁ ସେ ମୋର ତଳ ମହଲାରେ କାମ କରୁଥିଲା । ଆଜ କାଲି ମୁଁ ଏକାକୀ ଏ ଦୃଶ୍ୟ ଦେଖୁଛି । ଅ.ମର ଅବସ୍ଥା ବଦଳି ଯାଉଛି ସିନା; ଦୃଶ୍ୟ ସେତେବେଳେ ଯେପରି ଦିଶୁଥିଲା, ଆଜ ବି ସେଇପରି ଦିଶୁଛି—ତା'ର କୌଣସି ପରିବର୍ତ୍ତନ ହେଉନାହିଁ । ବେଳେବେଳେ କୁହୁଡ଼ି ମାଡ଼ି ଆସି ସ୍ଥାନକୁ ଘୋଡ଼ାଇ ଦିଏ, କିନ୍ତୁ ଅନ୍ଧାର ରାତିରେ ଇଲେକ୍‌ଟ୍ରିକ୍ ବତୀର ଆଲୋକ—ସ୍ଥାନ ସବୁବେଳେ ସମାନ ରହୁଛି ।" ଏକଥା ମିସ୍ ଲି'ଙ୍କ ହୃଦୟତନ୍ତ୍ରିରେ

ସ୍ପନ୍ଦନ ଆଣିଲା । ସେ ଫୁସ୍‌ଫୁସ୍ କରି କହିଲେ, "ନିଶ୍ଚୟ ପୁଣି ଆପଣଙ୍କ ସ୍ତ୍ରୀ ଆସି ଏଇଠି ଠିଆ ହେବେ । ମୋତେ ତ ଏକଥା ଜଳଜଳ ଦିଶୁଛି ।"

ଟେଡ଼୍ କହିଲେ, "ହୋଇପାରେ—ନହୋଇ ବି ପାରେ ।" ଏତେବେଳକୁ ତାଙ୍କ ସ୍ୱରରେ ସ୍ଫୁର୍ତ୍ତି ଆସି ଯାଇଥାଏ । "ଆଚ୍ଛା, ବନ୍ଧୁଗଣ ! ଶୁଭରାତ୍ରି-ବିଦାୟ । ଚୀନ୍ ଦେଶରୁ ଆସି ସିଧା ମୋ ଦୁଆରେ ଆସି ହାଜର ହୋଇଥିବାରୁ ଧନ୍ୟବାଦ । ବାପ୍‌ରେ ! ମୋର ତ ମନେ ହେଉଛି, ଦିନେ ମଙ୍ଗଳ ଗ୍ରହରୁ ଏଇପରି ଜଣେ ଭଦ୍ର ଲୋକ ଓ ଭଦ୍ରମହିଳା ଆସି ମୋ ଦୁଆରେ ହାଜର ହେବେ ; ମୁଁ ଦୁଆର ଫିଟାଇ ସେମାନଙ୍କୁ ସ୍ୱାଗତ କରିବ । ଏ ଯୁଗରେ କ'ଣ ଯେ ଘଟିବ, ତା'ର ଠିକଣା ନାହିଁ । ଆଚ୍ଛା, ବିଦାୟ ।"

ସେ ହସି ହସି ମୁଣ୍ଡ ଝୁଙ୍କାଇ ହାତଠେକି ବିଦାୟ ଦେଲେ ଓ ସେମାନେ ଯିବା ପରେ ଦୁଆର ବନ୍ଦ କଲେ । ମିସ୍ ଲି ମିଷ୍ଟର୍ ଶେନ୍‌ଙ୍କ ଆଡ଼କୁ ଚାହିଁ କହିଲେ, "ଏଥର ମୁଁ ଆମେରିକାନ୍ ଦୃଶ୍ୟଟିଏ ଆଙ୍କି ପାରିବି ବୋଲି ବିଶ୍ୱାସ କରୁଛି । ଏ ଘର କୋଠରି ଭିତରଟା ମୁଁ ବେଶ୍ ଦେଖି ନେଇଛି ।"

ରବିବାର ଆସିଲା, ଉପରଓଳା ତିନିଟା ବି । ମିସ୍ ଲି ଓ ମିଷ୍ଟର୍ ଶେନ, ପେନସିଲ୍‌ଭେନିଆ ଅଫିସ୍ ସାମନା ଗ୍ରାଣ୍ଡ୍ ସେଣ୍ଟ୍ରାଲ୍ ଷ୍ଟେସନ୍‌ରେ ଆସି ମିଶିଲେ । ମିସ୍ ଲି, ଚେରିଫଳ ପରି ନାଲି ସିଲ୍‌କର ଫ୍ରକ୍ ଖଣ୍ଡିଏ ପିନ୍ଧିଥାନ୍ତି; ତାହାର ହାତକଟା ଓ ବେକର କଲର୍ ଓସାରିଆ । ଖଣ୍ଡିଏ ଛୋଟିଆ କାଳିଆ ଜ୍ୟାକେଟ୍ ବାହୁରେ ଓହଳାଇଥାଆନ୍ତି, କୃଷ୍ଣ କେଶକୁ କୁଣ୍ଡେଇ, ବେକ ମୁଣ୍ଡରେ ବେଣୀ ପାରିଥାନ୍ତି । ତାଙ୍କ ଅଧରର ଭଙ୍ଗିମାରୁ ଶାନ୍ତିପୂର୍ଣ୍ଣ ମୃଦୁହାସ୍ୟ ବାହାରୁଥାଏ, ପ୍ରଶସ୍ତ କୃଷ୍ଣ ଚକ୍ଷୁରୁ ଶାନ୍ତି ଓ ସନ୍ତୋଷ ଫୁଟି ଦିଶୁଥାଏ । ଏହାର କାରଣ ମିଷ୍ଟର୍ ଶେନ୍ ଠଉରେଇ ସାରିଥିଲେ । ତେଣୁ ପଚାରିଲେ, "ରାତିଟି ବହୁତ ଆରାମରେ ଶୋଇଛ ବୋଧହୁଏ ?"

ମିସ ଲି ମସ୍ତକ ସଞ୍ଚାଳନାଦ୍ୱାରା ସମ୍ମତି ଜଣାଇଲେ; କହିଲେ, "କାଲି ରାତିରେ ଯେତେବେଳେ ଶୋଇବାକୁ ଗଲି, ସେତିକିବେଳେ ଶଯ୍ୟାରୁ

ଭାବ ମନରେ ସ୍ପଷ୍ଟ ରୂପ ପାଇଲା । ସକାଳେ ଉଠିବାମାତ୍ରେ ଆଙ୍କିବାକୁ ଆରମ୍ଭ କରି, ଏଠାକୁ ଆସିବା ବେଳଯାଏ ଅବିଶ୍ରାନ୍ତ ଆଙ୍କୁଥିଲି ।"

ମିଷ୍ଟର୍ ଶେନ୍ ତଆରିଲା ପରି କହିଲେ, "ନଖାଇ ନପିଇ କାମ ହେଉଥିଲା ପରା ?" ଏହି କୋମଳାଙ୍ଗୀ ପ୍ରତିଭାଶାଳିନୀ ମହିଳାଟି ଏଭଳି ଅଣହେଳାରେ ନମରି ଯେପରି ବଞ୍ଚିରହିବ ସେ ଦାୟିତ୍ୱ ତାଙ୍କ ନିଜର ବୋଲି ସେ ପରିଷ୍କାର ବୁଝିଲେ । ନିଃସଙ୍ଗ ହୋଇ ଜୀବନଯାପନ କରିବାକୁ ଏ ମହିଳା ଏକାବେଳକେ ଅନୁପଯୁକ୍ତ ।

ମିସ୍ ଲି ଉତ୍ତର ଦେଲେ, "ମୁଁ ଫେରିଲେ ଖାଇବି ଯେ ।"

ମିଷ୍ଟର୍ ଶେନ୍ କହିଲେ, "କାଲିମୁଣ୍ଡିଆ ଭଦ୍ରଲୋକ ନିଶ୍ଚୟ ଆମକୁ ଖାଇବାକୁ କହିବେ । ଆମେରିକାନ୍‌ମାନେ ସବୁବେଳେ ଖାଉଥାନ୍ତି ଆଉ ମଦ ପିଉଥାଆନ୍ତି ।"

ଅନ୍ୟମନସ୍କଭାବେ ମିସ୍ ଲି ଉତ୍ତର ଦେଲେ, "ସତେ ନା ?" ସେତେବେଳେ ମିସ୍ ଲି ତାଙ୍କ କଥା ଶୁଣୁନଥାନ୍ତି । ତାଙ୍କର ମନ ଥାଏ ତାଙ୍କ ଚିତ୍ରରେ । ଏକଥା ଜାଣି ମିଷ୍ଟର୍ ଶେନ୍ ତାଙ୍କ ଚିନ୍ତାରେ ବାଧା ନଦେବାକୁ ତୁନି ହୋଇ ରହିଲେ ।

ସମସ୍ତ ଚାଲିଲା, କିନ୍ତୁ ଦୀର୍ଘକାୟ, ରକ୍ତକେଶ ଉଦ୍ଦାମ ଯୁବକଙ୍କର ଦେଖା ମିଳିଲା ନାହିଁ । କିଛି ଗୋଟାଏ ଭୁଲ୍ ହୋଇ ଯାଇଛି ବୋଲି ମିଷ୍ଟର୍ ଶେନ୍ ଭାବିବାକୁ ଲାଗିଲେ, ହୁଏତ ଟେଡ଼୍ ହଣ୍ଟର ସେମାନଙ୍କୁ ଉପରମନରେ ନିମନ୍ତ୍ରଣଟାଏ କରି ଦେଇଥିଲେ । ଆମେରିକାନ୍‌ମାନେ ଥଟ୍ଟା କରୁଛନ୍ତି କି ଆନ୍ତରିକତାର ସହିତ କହୁଛନ୍ତି ଜାଣିବ କିପରି ? ଯଦି ଟେଡ଼୍ ହଣ୍ଟର୍ ସତରେ ନ ଆସନ୍ତି ? ତେବେ ମିସ୍ ଲି ନୈରାଶ୍ୟରେ ବ୍ୟଥିତ ହେବେ । ମନର ସେ ଅବସ୍ଥାରେ ଚିତ୍ରର ଦଶା କ'ଣ ହେବ ? ତାଙ୍କର ମନ ଅବସନ୍ନ ହୋଇଯିବ; ସେ ପୁଣି ପୂର୍ବପରି ନିରାଶ ହୋଇ ଘରକୁ ଫେରିଯିବାକୁ ଝୁରିହେବେ । ପ୍ରଥମେ ମିଷ୍ଟର୍ ହୋ'ଙ୍କ ରେସ୍ତୁରାଁରେ ପ୍ରଥମେ ତାଙ୍କୁ (ମିସ୍ ଲିଙ୍କୁ) ସେ ଦେଖିଲା ବେଳେ ତାଙ୍କର ଏଇ ଅବସ୍ଥା ହୋଇଥିଲା । ସେଠାରେ ସେ ନିଜେ ବାସନମଜା କାମସଙ୍ଗେ ପରିଷୂଣୀ କାମ କରୁଥାନ୍ତି । ଚୀନ୍‌ଦେଶରେ ପ୍ରଖ୍ୟାତ ପଣ୍ଡିତ ବୋଲି ତାଙ୍କର ନାମ ଥିଲା, କିନ୍ତୁ ସେଠାରୁ ଫେରିବାର ସମ୍ଭାବନା ନଥିବାରୁ ସେ ଏଭଳି

ମାତ କାର୍ଯ୍ୟ କରିବାକୁ ବାଧ୍ୟ ହୋଇଥାନ୍ତି । ଯଦି ମିସ୍ ଲି ଖିନ୍ନଚିତ୍ତ ହୋଇଯାନ୍ତି ତେବେ ତାଙ୍କ ମାନସିକ ସୁଖଶାନ୍ତି ରହିବ ନାହିଁ । କଳାକାର ପକ୍ଷରେ କହିଲେ ସରଳ ; ଅନ୍ୟମାନଙ୍କ କଥା ଯାହାହେଉ କଳାକାର ସବୁବେଳେ ଜୀବନ ସଙ୍ଗେ ତାଳ ଦେଇ ଚାଲିବା ଦରକାର । ସ୍ୱଦେଶରୁ ନିର୍ବାସିତ ହୋଇ ଆମେରିକାରେ ପ୍ରବାସୀ ହୋଇଥିଲେ ହେଁ, ମିସ୍ ଲି'ଙ୍କୁ ଏଠାରେ ଜୀବନର ନୂତନ ଅଧ୍ୟାୟ ପୂର୍ଣ୍ଣପ୍ରାଣରେ ଆରମ୍ଭ କରିବାକୁ ହେବ ।

ସମୁଦ୍ର ମଝିରେ ଥିବା ପଥର ଗୃହପଟେ ତରଙ୍ଗ ଘୂରିବା ପରି, ମିଷ୍ଟର ଶେନ୍‌ଙ୍କ ଗୃହପଟେ ସେତେବେଳର ଗହଳବେଳେ ଶହ ଶହ ଲୋକ ଯିବା ଆସିବା କରୁଥାନ୍ତି । ସେଇଠାରେ ଠିଆହୋଇ, ମିସ୍ ଲି'ଙ୍କ ପାଇଁ ତାଙ୍କୁ ଯେଉଁ କର୍ତ୍ତବ୍ୟ କରିବାକୁ ହେବ, ତାହାର ଗୁରୁତ୍ୱର ଚିନ୍ତାରେ ମିଷ୍ଟର୍ ଶେନ୍ ଅଭିଭୂତ ହୋଇ ପଡ଼ିଥାନ୍ତି । ଯଦି ଟେଡ୍ ହଣ୍ଟର୍ ଦେଖା ନଦିଅନ୍ତି ତେବେ ମିସ୍ ଲି'ଙ୍କୁ ସାନ୍ତ୍ୱନା ଦେବାପାଇଁ ତାଙ୍କୁ କ'ଣ କରିବାକୁ ପଡ଼ିବ ? ଟେଡ୍‌ଙ୍କ ଭଳି ଲୋକ ସେମାନଙ୍କୁ ନିମନ୍ତ୍ରଣ କରିଥିବା କଥା ସହଜରେ ପାସୋର ପାରନ୍ତି । ପୁଣି ତାଙ୍କ ସ୍ତ୍ରୀ ତ ଅକର୍ମ୍ମବାଗିଆ; ଅତଏବ ପୁଣି ଚୀନ୍‌ଦେଶୀୟ ଲୋକଙ୍କୁ ଘରେ ପୂରାଇବାକୁ ସେ ମନା କରିଥିବା ସ୍ୱାଭାବିକ । ସେପରି ସ୍ଥଳେ, ନିଜର ଇଚ୍ଛା ଥିଲେ ବି ଟେଡ୍ ହଣ୍ଟର୍ ସ୍ତ୍ରୀର କଥା ରକ୍ଷାକରିବାକୁ ରହିଯାଇ ଥାଇପାରନ୍ତି ।

ହୁଏତ ଆମେରିକାନ୍‌ଙ୍କ ଆଖିକୁ ସିଧା କଳା କେଶ ଓ ସଂକୀର୍ଣ୍ଣଚକ୍ଷୁ ଭଲ ଦିଶେନାହିଁ । ସେ ମିସ୍ ଲି'ଙ୍କ ଆଡ଼କୁ ସ୍ନେହ ଦୃଷ୍ଟିରେ ଚାହିଁଲେ । ନା, ତାଙ୍କ ଆଖି ତ ସଂକୀର୍ଣ୍ଣ ନୁହେ । ତାଙ୍କ ଆଖି ଲମ୍ବା ଓ ଚେପ୍ଟା ହେଲେ ବି ଖୁବ୍ ସୁନ୍ଦର, ଆମେରିକାନ୍ ଲୋକେ ବି ଏପରି ଆଖି ଦେଖି ଶଙ୍କି ଯିବାର କଥା ନୁହେ ।

ମିଷ୍ଟର୍ ଶେନ୍‌ଙ୍କ ଏହିପରି ଅଭିନବ ଓ କ୍ଲେଶଦାୟକ ଚିନ୍ତା ଭିତରେ, ତରଙ୍ଗପରି ମାଡ଼ି ଚାଲିଥିବା ଜନତା ଭିତରୁ, ପର୍ଦ୍ଦାରକର ବାହାରିଲା ପରି, ଜଣେ ଦୀର୍ଘକାୟ ରକ୍ତକେଶୀ ପୁରୁଷ ବାହାରି ଆସିଲେ ।

ଅଣନିଃଶ୍ୱାସୀ ହୋଇ ସେ କହିଲେ, "ଅହୋ ! ଆପଣମାନେ ଏତେବେଳ ଯାଏଁ ଏଠାରେ ଅଛନ୍ତି ତେବେ ? ରାସ୍ତାରେ ମଟରଗାଡ଼ିର ଘରି ଭଙ୍ଗି ହୋଇଥିଲା । ମୋର ଭୟ ହୋଇଥିଲା, ବିଳମ୍ୱ ହେବାରୁ ଆପଣମାନେ ଚାଲିଯିବେଣି, ଚାଲିଯାଇଥିଲେ ମୁଁ ଆଜି ଆପଣମାନଙ୍କୁ ପାଆନ୍ତି କିପରି ? ମୋତେ ଆପଣମାନେ ଶଠ ବୋଲି ମନେ କରିଥାନ୍ତେ । ହଉ, ହଉ ଆସନ୍ତୁ, ଏଥର ଯିବା । ମିସ୍ ଲି ! ଆପଣ ତ ଖୁବ୍ ସୁନ୍ଦର ଦିଶୁଛନ୍ତି ! ଆଜି କିଏ ଆପଣଙ୍କୁ ଏହା କହିଛି ନା ? ମୋ'ର ତ ବିଶ୍ୱାସ, ଏଭଳି ମତ ଶୁଣି ଶୁଣି ଆପଣ ତିଟା ହୋଇଯିବେଣି ।"

ଟେଡ୍, ଦୁହିଙ୍କ ଭିତରେ ପଶିଯାଇ ଦୁହିଁଙ୍କର ଗୋଟିଏ ଗୋଟିଏ ବାହା ଧରି, ଚଳନ୍ତା ଇଞ୍ଜିନ୍‌ପରି ସେ ଦୁହିଙ୍କୁ ଆଗକୁ ଟାଣି ନେଲେ ।

"ମୁଁ ଗାଡ଼ିଟାକୁ ରାସ୍ତା ଉପରେ ସାମାନ୍ୟ କେତେ ମିନିଟ୍‌ପାଇଁ ରଖୁଛି ବୋଲି କହି ଚାଲି ଆସିଛି, ପୁଲିସବାଲା ସାଗୁଣାପରି ମୋ ଗାଡ଼ି ଉପରେ ଆଖି ରଖିଛି, ନମ୍ବର ଟିପିବାକୁ । ତା'କୁ କିଛି ଅଣ୍ଟା ଗୁଞ୍ଜା ଦେଇଥାନ୍ତି, ମୋର କିନ୍ତୁ ସାହସ ହେ ୀ ନାହିଁ । ମୋର ମନେ ହେଲା, ଟଙ୍କା ଯାଚିଲେ ମୋତେ ସେ ଧରିବ ବୋଲି ଠାକକରି ଥାଏ । ହେଉଛି ସେ—ନାଇଁ, ଗାଡ଼ିରେ ଟିକଟ୍ ମାରି ନାହିଁ—ଗାଡ଼ି ନିରାପଦ—ଆସନ୍ତୁ ଶୀଘ୍ର ଗାଡ଼ିରେ ବସନ୍ତୁ—"

ସେ ଏ ଦୁହିଙ୍କୁ ଗୋଟିଏ ଧଳାରଙ୍ଗର ଛଠାଗ୍ଲାଡବାଲା ଗାଡ଼ି ଭିତରେ ବସାଇଦେଲେ ; ତରତରରେ ଦୁଆର ବନ୍ଦ କରିଦେଇ ପୁଲିସବାଲା ଆଡ଼କୁ ଚାହିଁ; ଟିକିଏ ହସିଲେ – ପୁଲିସବାଲା ମୁଣ୍ଡ ଟୁଙ୍ଗାରିଲା —ତା'ମନରେ ସନ୍ଦେହ ଥିଲା ଯେ, ଅଳ୍ପ ସମୟ ପାଇଁ ଗାଡ଼ି ରଖିଦେଇ ଯାଉଛି କହି ଟେଡ୍ ଫେରିବାକୁ ଡେରି କରିବେ । ସହରତଳି ଅଞ୍ଚଳକୁ ଗାଡ଼ି ବାଟକାଟି ଚାଲିଲା ।

ଗାଡ଼ି ଚଳାଉ ଚଳାଉ ମନଖୁସିରେ ଟେଡ୍ କହିଲେ "କାଲି ରାତିରେ ଘରକୁ ଫେରିଲା ବେଳେ ମୋର ମୋ ସ୍ତ୍ରୀ ସଙ୍ଗେ ବାଟରେ ଦେଖା ହୋଇଗଲା । ଦୁଇଜଣ ପୁରୁଷ ଓ ଜଣେ ସ୍ତ୍ରୀ ସାଙ୍ଗରେ ସେ ସିନେମା ଦେଖି ସେମାନଙ୍କୁ ଧରି ଘରକୁ ଫେରୁଥାଏ । ନିଆଁ ପାଖରେ ସମସ୍ତେ ବସି ଆଳାପ କଲୁଁ – ମନେ ଅଛି ନା, ମିସ୍ ଲି, ନକ୍ସାରେ ଯେଉଁ ପଥର

ଚୁଲ୍ଲୀ ଦେଖାଇଥିଲି, ତାର ଆଗରେ ବସିଲୁଁ । ସମସ୍ତେ ଟିକିଏ ଟିକିଏ ପିଇଲୁଁ । ମୋ ସ୍ତ୍ରୀ ସେତିକବେଳେ ମୋ ପ୍ରତି ଖୁବ୍ ଭଲ ବ୍ୟବହାର କଲା, ଅନ୍ତତଃ ଏତିକି କଲା ଯେ—ଟିକିଏ ରହିଯାଇ ପୁଣି ସେ କହିଲେ, "ନା, ଭଲ ବ୍ୟବହାର ଆଉ କଲା କ'ଣ ? ମୁଁ ଭଲ ବ୍ୟବହାରଟା ଆଦାୟ କରି ନେଲି । ମୁଁ ଦେଖିଲି, ଅତିଥିଙ୍କ ଆଗରେ ସେ ମୋତେ କାମୁଡ଼ି ମିଶିବ ନାହିଁ; ସେଇ ସୁଯୋଗରେ ଆପଣ ଦୁହେଁ ଆମ ଘରକୁ ଆସିବା କଥା ସମସ୍ତଙ୍କ ଆଗରେ ପକାଇଦେଲି । ପ୍ରଥମେ ସେ ଭାବୁଥିଲା ମୁଁ ମିଛ କହୁଛି, କିନ୍ତୁ ଅନ୍ୟମାନେ ମୋ କଥା ସତ କଲେ । ସେମାନେ କହିଲେ, ଏହା ଏକ ସୁନ୍ଦର ପ୍ରସ୍ତାବ ; ସେଇମାନଙ୍କ ପ୍ରବର୍ତ୍ତନାରେ ମୋ ସ୍ତ୍ରୀ ମଧ୍ୟ ଏ ପ୍ରସ୍ତାବକୁ ସ୍ୱାଗତ କଲା ।

ରାସ୍ତା ଉପରେ ଲାଲବତୀ ଦେଖି ଗାଡ଼ି ଅଟକିଲା । ଟେଡ଼୍ ଖୁସ୍‌ମେଜାଜ୍‌ରେ କହିଲେ, "ବନ୍ଧୁମାନେ ବିଦାୟ ନେଇ ଯିବାପରେ ମୋ ଭାର୍ଯ୍ୟା ପୁଣି ବରଫ ପରି ଥଣ୍ଡା ହୋଇଗଲା । କିନ୍ତୁ ଆମେ ଶୋଇବାକୁ ଭିନ୍ନ ଭିନ୍ନ କକ୍ଷକୁ ଗଲାବେଳେ କହିଲି—ମୁଁ ଅତିଥିଙ୍କ ପାଇଁ ଥିବା କୋଠରୀରେ ଶୁଏ—ମନେ ପଡ଼ୁଛି ନା ମିସ୍ ଲି ? ପୂର୍ବ ମୁହାଁ ହୋଇ ଯେଉଁ ଗ୍ଲେଟିଆ ଘରଟି ଅଛି, ସେଇଠି ।" "ମୁଁ ତା'କୁ କହିଲି, ଆପଣ ଚୀନ୍ ଦେଶର ଜଣେ ପ୍ରସିଦ୍ଧ ଚିତ୍ରକର; ପୁଣି କହିଲି, ଜଣେ ପ୍ରସିଦ୍ଧ ନାରୀଙ୍କ ସହିତ ପରିଚିତ ହେବାର ସୁଯୋଗ ସେ ଅବଶେଷରେ ପାଇବ ।"

ମିସ୍ ଲି ହୋଚିଲା ପରି ସ୍ୱରରେ କହିଲେ, "ନା, ନା, ମୁଁ ଅତି ଗ୍ଲେଟିଆ ଲୋକଟିଏ ।" ମିଷ୍ଟର୍ ଶେନ୍ ପ୍ରତିବାଦ କଲେ, "କାହିଁକି ତୁମେ ତ ଗ୍ଲେଟିଆ ନୁହଁ ।"

ଟେଡ଼୍ କହିଲେ, "ଠିକ୍, ଠିକ୍, ମିଷ୍ଟର୍ ଶେନ୍ ! ତୁମେ ତାଙ୍କର ପୃଷ୍ଠପୋଷକ ହୋଇ ରହ ।"

ମିଷ୍ଟର୍ ଶେନ୍ କହିଲେ, "ତାହା ତ ମୋର କର୍ତ୍ତବ୍ୟ ।" ମିସ୍ ଲି'ଙ୍କ ଆଡ଼େ ଆଖି ପକାଇ ଟିକିଏ ଚମକି ପଡ଼ି ସେ ଦୃଢ଼ସ୍ୱରରେ ଲଗାଇଦେଲେ, "ସେ ମୋ ଦେଶବାସିନୀ ହୋଇଥିବାରୁ ।"

ମିସ୍ ଲି ଅନ୍ୟ ଦିଗକୁ ଦୃଷ୍ଟି ଫେରାଇଲେ । ଆଗରେ ନଦୀ; ଏ ଦୃଶ୍ୟ ସେ ଦେଖି ନଥିଲେ । ଦେଖିବା ମାତ୍ରେ ସେ କହି ଉଠିଲେ "କି ସୁନ୍ଦର ! ଏ ନଦୀଟି ବାଟରେ ପଡ଼ିବ ବୋଲି ମୁଁ ଜାଣି ନଥିଲି ।"

ଟେଡ୍ ଚାହାଁଇ ଦେଲେ, "ହଡ୍‌ସନ୍ ନଦୀ । ଆମ ଏଠାର ଅନ୍ୟତମ ବଡ଼ ନଦୀ । ଅପେକ୍ଷା କରନ୍ତୁ, ଆଗରେ ପୋଲ ପଡ଼ିବ । ପୋଲର ଚିତ୍ର ଆଙ୍କିବାକୁ ମନ ହୋଇପାରେ ।"

ଖୁବ୍ କହୁଁଳିଆ ଖରା ପଡ଼ିଥାଏ, ହଡ଼୍‌ସନ୍‌ର ଧୂସର ଦିଶୁଥାଏ । ଏହି ବର୍ଣ୍ଣ ପ୍ରତ୍ୟେକ ଚୀନାଲୋକକୁ ସୁଖ ଲାଗେ । ମିସ ଲି ଏ ଦୃଶ୍ୟକୁ ଉପଭୋଗ କରିବାରେ ଲାଗିଥାନ୍ତି । ଯେତେବେଳେ ପୋଲର ରଜତବର୍ଣ୍ଣ ପାହାଚ ଓ ଖୁଣ୍ଟି, ନଦୀର ଧୂସର ଜଳ ଉପରେ ଦିଶିଲା, ଆନନ୍ଦରେ ସେ ତନ୍ମୟ ହୋଇ ଚାହିଁରହିଥାନ୍ତି । ଟେଡ୍ ଅନବରତ କହି ଚାଲିଥାନ୍ତି, କିନ୍ତୁ ମିସ୍ ଲି'ଙ୍କୁ ସେ କଥା କିଛି ଶୁଭୁନଥାଏ । କି ବିଚିତ୍ର ସୌନ୍ଦର୍ଯ୍ୟ । କଳକବ୍‌ଜାରେ ତିଆରି ଲୁହାର ପୋଲ, ତଥାପି କେଡ଼େ ସୁନ୍ଦର ! ଅପାର୍ଥିବ ପରି ଜଣାଯାଉଥାଏ । ପାଣିରୁ କେତେ ଉପରକୁ ଉଠି ଆକାଶରେ ମିଶିଗଲା ପରି ହୋଇଛି ! କି ସୁନ୍ଦର କଳ୍ପନା, କି ଉଚ୍ଚାଙ୍ଗ ରୂପ ଓ କର୍ମନିପୁଣତା ! ବାସ୍ତବିକ୍, ଏ ଆମେରିକାନ୍‌ମାନେ ବିଚିତ୍ରକର୍ମା ! ଏମାନଙ୍କ ଅସଲ ସ୍ୱରୂପ ଜାଣିବା ଦୁଷ୍କର ।

ବୁଲାଣିଆ ରାସ୍ତାରେ ବୁଲି ବୁଲି ସେମାନେ ଆସି ପୋଲ ଉପରେ ପହଞ୍ଚିଲେ । ମିସ୍ ଲି ବିସ୍ମୟାଭିଭୂତ ହୋଇଥାନ୍ତି । ନଈ ସତେ ଉଭୟ ଦିଗରେ ବୋହିଗଲା ପରି ଜଣାଯାଉଥାଏ । ନଦୀ ବକ୍ଷରେ ଜାହାଜଗୁଡ଼ିକ କେତେ ତଳେ ଥିଲା ପରି ଦିଶୁଥାନ୍ତି ! ଆଜି ଯେଉଁ ଚିତ୍ରଟି ଆରମ୍ଭ କରିଛନ୍ତି ତାହା ସରିଲେ ସେ ଏଠାକୁ ପୁଣି ଆସିବେ, ଗୋଟାକ ପରେ ଗୋଟେ ଚିତ୍ର ଆଙ୍କିବେ । ଅସ୍ପଷ୍ଟ ସବୁଜ ତୀର ଦୁଇଟି ମଝିରେ ଧୂସର ନଦୀ ପ୍ରବାହ ତାଙ୍କୁ ଭବିଷ୍ୟତ୍ ପାଇଁ କେତେ ପ୍ରେରଣା ଦେଲା । ଏ ପୋଲଟି ଗୋଟିଏ ଚିତ୍ରରେ ପରିସ୍ଫୁଟ ହେବନାହିଁ । ଚିତ୍ରରେ ଏହାକୁ ଫୁଟାଇବା ପାଇଁ କେତେ ଭାବିବାକୁ ହେବ, ଏ ଦୃଶ୍ୟରେ ନିଜକୁ ମଜ୍ଜାଇ ଦେବାକୁ ପଡ଼ିବ—ଏ ଦୃଶ୍ୟର ସୌନ୍ଦର୍ଯ୍ୟ ତାଙ୍କ ଅଙ୍ଗରେ ମିଶିଯିବା ଯାଏଁ ବା ସେ ଏ ଦୃଶ୍ୟରେ ନିଜେ ମଜ୍ଜିଯିବା ଯାଏଁ ଏହାକୁ ଦେଖିବାକୁ ହେବ, ଏହା ବିଷୟରେ ଧ୍ୟାନ କରିବାକୁ ହେବ । ଏଠାରେ ତ ସବୁ ବିଶାଳ ।

ପୋଲ ପାରି ହେବା ପରେ ଟେଡ୍ ଗାଡ଼ିର ଗତି ବଢ଼ାଇଦେଲେ, ମିସ୍ ଲି ଆଖି ବୁଜି ଗାଡିର ଗତିରେ ନିଜକୁ ହଜାଇ ଦେଇଥାନ୍ତି ।

ପରବେଶ ବଡ଼ିଆ, ଗାଡ଼ିର ଗତି ଏତେ ଦ୍ରୁତ, କିନ୍ତୁ ମିସ୍ ଲି'ଙ୍କ ମନରେ ଭୟର ସତ୍ତା ନଥାଏ । ଟେଡ୍‌ଙ୍କ ଗୁଳନକୁଶଳତାରେ ସେ ପୂର୍ଣ୍ଣ ଆସ୍ଥା ରଖି ପାରିଥାନ୍ତି । ଯେଉଁ ଇଞ୍ଜିନ୍‌କୁ ସେ ଚଳାଉଛନ୍ତି, ତା'କୁ ସେ ବେଶ ଚିହ୍ନିଛନ୍ତି,, ଇଞ୍ଜିନ୍ ତାଙ୍କୁ ପ୍ରଭୁ ବୋଲି ମାନୁଛି ।

ମିଷ୍ଟର ସେନ୍ ତାଙ୍କ ହାତରେ ହାତ ପକାଇବାର ସେ ଅନୁଭବ କଲେ । ମିଷ୍ଟର ଶେନ୍ ଫୁସ୍‌ଫୁସ୍ କରି ପଚାରିଲେ, "ଡର ମାଡ଼ୁଛି ?"

ମିସ୍ ଲି ଆଖି ଖୋଲି ଚାହିଁଲେ, ହସି ହସି ମୁଣ୍ଡ ହଲାଇଲେ ; ମିଷ୍ଟର ଶେନ୍‌ଙ୍କ ହାତରୁ ନିଜ ହାତ କାଢ଼ି ନେଲେ ନାହିଁ । ମିଷ୍ଟର୍ ଶେନ୍‌ଙ୍କ ହାତ ତାଙ୍କ ହାତରେ ପଡ଼ିବାରୁ ତାଙ୍କୁ କେଡ଼େ ନିର୍ଭୟ ଓ ନିଶ୍ଚିନ୍ତ ଲାଗୁଥାଏ । ମିଷ୍ଟର୍ ଶେନ୍ ତାଙ୍କ ହାତ ଧରିଥାନ୍ତି ସିନା, ନିଷ୍ପଲକ ଭାବେ ଆଗକୁ ଚାହିଁଥାନ୍ତି ; ତାଙ୍କ ଗମ୍ଭୀର ଆକୃତିରୁ ଭିତର ଚଞ୍ଚଳତା ଧରା ପଡ଼ୁଥାଏ । ମିଷ୍ଟର୍ ଶେନ୍ ଆଜି କିଛି ନିକଟ୍ଠ ଭୂମା ହୋଇ ଥାନ୍ତି, ଯଦିଓ ଟେଡ୍ ଅନବରତ ଗପି ଲାଗିଥାନ୍ତି, ବାଟରେ ଯାହା ପଡ଼ୁଥାଏ ତାକୁ ଚିହ୍ନାଉଥାନ୍ତି । ତାଙ୍କ କଥାର ଉତ୍ତର ଦେବାର ଦରକାର ପଡ଼ୁନଥାଏ, କାରଣ ଗାଡ଼ି ଏତେ ଜୋରରେ ଯାଉଥାଏ ଯେ, ସେ ଯାହା ଦେଖାଉଥାନ୍ତି ତା'ଆଡ଼କୁ ଚାହିଁଲା ବେଳକୁ ଗାଡ଼ି ବହୁତ ବାଟ ଆଗେଇ ଯାଇଥାଏ ।

ଜୋରରେ ବ୍ରେକ ଦେଇ ଟେଡ୍, ଗୋଟିଏ ଅଯତ୍ନରକ୍ଷିତ ପଥର ଘର ଆଗରେ ଗାଡ଼ି ରଖିଲେ । ଘରର ବାଡ଼ିର ବୁଦାଗୁଡ଼ିକ କଟା ନହୋଇ ଅନାବନା ବଢ଼ିଥାଏ । ଟେଡ୍ କହିଲେ, "ଏଇ ଆମ ଘର । ଚିମିନିରୁ ଧୂଆଁ ବାହାରିବାର ଦେଖି ମୁଁ ବୁଝୁଛି ମୋର ଦୁଷ୍ଟା ସ୍ତ୍ରୀଟି ଆପଣମାନଙ୍କ ମନରେ ତା' ବିଷୟରେ ଭଲ ଧାରଣା ଜାତ କରାଇବାକୁ କାମରେ ଲାଗିଯାଇଛି ।"

ଗମ୍ଭୀର ଭାବରେ ମିଷ୍ଟର ଶେନ୍ ଓ ମିସ୍ ଲି'ଙ୍କ ଆଡ଼କୁ ଚାହିଁ ସେ କହିଲେ—କିନ୍ତୁ ତାଙ୍କ ଆଖିରୁ ଦୁଷ୍ଟାମି ମିଞ୍ଜି ହଶୁଥାଏ—"ଦେଖନ୍ତୁ ଆପଣ ଦୁହେଁ ତା' ବ୍ୟବହାର ଦେଖି ଠକରେ ପଡ଼ିବେ ନାହିଁ । ବୋଧହୁଏ ସେ ଆପଣମାନଙ୍କ ସଙ୍ଗେ ଭଲ ବ୍ୟବହାର କରିବ, ଅନ୍ତତଃ ମୋର ତ ସେତିକି ଅଶା । କିନ୍ତୁ ଆପଣମାନେ ଆମ ଘରୁ ଗୋଡ଼ କାଢ଼ିବା ମାତ୍ରେ ସେ

ଯେଉଁ ମାର୍ଜାଶ୍ୱଙ୍କୁ ସେଇ ମାର୍ଜାଶ୍ୱ ହୋଇଯିବ—ମଣିଷଟି ଏତେ ଶ୍ରେଷ୍ଠ ଯେ, ସେ ବାଘୁଣୀ ହୋଇପାରିବନାହିଁ । କିନ୍ତୁ ମୁଁ ବାଘ ମାରି କହିପାରେ, ତା'ର ବାଘୁଣୀ ହେବାକୁ ମନ ।"

ସମସ୍ତେ ମଟରରୁ ବାହାରିଲେ, ଟେଡ୍ ଧାଇଁ ଧାଇଁ ପାହାଚ ଚଢ଼ି ଦାଣ୍ଡ ଦୁଆର ମେଲାଇ ଦେଇ ପାଟି କଲେ, "ସୁ୍ୟ ! ଓ ସୁ୍ୟ ! ହେଇଟି ସେମାନେ ଆସିଲେଣି ।"

ଭିତରୁ ଉଚ୍ଚ ଅଥଚ ମଧୁର ସ୍ୱର ଉତ୍ତର ଦେଲା "ଯାଉଛି ।"

ଟେଡ୍ ନିର୍ଦ୍ଦେଶ ଦେଲେ, "ଚାଲନ୍ତୁ, ଆମ ବୈଠକଖାନାକୁ । ମୁଁ ଆପଣମାନଙ୍କ ଜିନିଷପତ୍ର ନେଉଛି । ଅଗ୍ନିକୁଣ୍ଡ ପାଖରେ ବସନ୍ତୁ । ସେଥିରେ ମୁଁ କାଠ ସଜାଇ ଯାଇଥିଲି । ସେ ସଜାଡ଼ି ନାଇଁ । ତା ପ୍ରକୃତିର ଯେଉଁ ନିଆଁ ତା'ର ବ୍ୟକ୍ତିତ ଅନ୍ୟ ନିଆଁ ସେ କରି ପାରିବ ନାଇଁ । ତେବେ ମୁଁ ସଜାଡ଼ିଥିବା କାଠରେ ସେ ଦିଆସିଲି ଲଗେଇଛି । ତା' କରିବାକୁ ବି ମୁଁ କହି ଯାଇଥିଲି । ସୁ୍ୟ !"

"ହଁ, ହେଇଟି ଆସିଲି" ଭିତର ଦୁଆର ମେଲା ହେଲା । ବାଙ୍ଗିସ୍ ରକ୍ତକେଶିମା ନାରୀଟିଏ ଆସି ସେମାନଙ୍କ ପାଖରେ ହାଜର ହେଲେ । ସବୁଜ ବର୍ଣ୍ଣର ଗାଉନଟିଏ ପିନ୍ଧିଥାନ୍ତି, ତା'ର ଶେଷଭାଗ ବଳାଗଣ୍ଠି ପାଖଯାଏଁ ପହଞ୍ଚିଥାଏ । ତାଙ୍କର ଗଣ୍ଡ ଆରକ୍ତିମ, ଚକ୍ଷୁ ପାଟଳବର୍ଣ୍ଣ, କିନ୍ତୁ ମୁଣ୍ଡର ବାଳ ଗାଢ଼ ନାଲି । ମିସ୍ ଲି'ଙ୍କୁ ଜଣାଗଲା, ଟେଡ୍‌ଙ୍କ କେଶଠାରୁ ଏହା ଆହୁରି ଉଜ୍ଜ୍ୱଳ ନାଲି । ମୁହଁଟି ଗ୍ରେଟିଆ, ପାତଳ ଓ ହସହସ । କିନ୍ତୁ ସେ ପ୍ରଫୁଲ୍ଲତା ଭିତରେ, କ୍ଷୁଦ୍ର ଚଞ୍ଚଳ ହାତ ଦୁଇଟିରେ, ଓ ଚୀନା-ଆଖିକି-ଅସୁନ୍ଦର ଅପେକ୍ଷାକୃତ ଲମ୍ବା ଓଠ ଦୁଇଟିରେ, ମିସ୍ ଲି କେଶ୍ ଖର ପ୍ରକୃତି ଲକ୍ଷ୍ୟ କଲେ ।

ମିସେସ୍ ହଣ୍ଟର ଦୁଇଟି ଯାକ ହାତ ବଢ଼ାଇ ମଧୁର ସ୍ୱରରେ କହିଲେ, "ସ୍ୱାଗତ, ସ୍ୱାଗତ । ମୁଁ ମନେ କରୁଛି, ଆପଣମାନଙ୍କୁ ଡାକି ଟେଡ୍ ମୋ ମନକୁ ପାଇଛନ୍ତି ଭଲ ଏ ଯେଉଁ କାମଟି କରିଛନ୍ତି ଅନେକ ଦିନ ହେଲା ସେପରି କିଛି କରି ନଥିଲେ ।"

ମିଷ୍ଟର ଶେନ କହିଲେ, "ବାସ୍ତବିକ, ସେ ଆମପ୍ରତି ପ୍ରଚୁର ଅନୁଗ୍ରହ କରିଛନ୍ତି । ଏଠାକୁ ଆସିବା ଆମକୁ ସ୍ୱପ୍ନ ପରି ଲାଗୁଛି ! ଆମର ଏତେ

ସୌଭାଗ୍ୟ ହେବ, ବିଶ୍ୱାସ କରି ନପାରିବାର କଥା । ଦୁଇ ଦିନ ପୂର୍ବେ ଆପଣ, ମିଷ୍ଟର ହିଣ୍ଟର୍ ଓ ଆପଣଙ୍କ ଏ ସୁନ୍ଦର ଘରର ଅସ୍ତିତ୍ୱ ବିଷୟରେ ବି ଆମର ଧାରଣା ନଥିଲା । ବାସ୍ତବିକ, କୌଣସି ଆମେରିକାନ ବନ୍ଧୁ ଆମର ନଥିଲେ; ଥାନ୍ତେ କି ବୋଲି ମନରେ ଆକାଙ୍କ୍ଷା ମାତ୍ର ଥିଲା ।"

"ମୋତେ ମିଷ୍ଟର ହିଣ୍ଟର ନକହି ଟେଡ଼୍ ବୋଲି କହିବେ"; ଟେଡ଼୍ ସୁଧାରି ଦେଲେ ।

"ଆଉ ମୋ ନାଁ ହେଉଛି, ସୁ୍ୟ" ; ଶ୍ରୀମତୀ କହିଲେ ।

ଥରେ ମାତ୍ର ଶୁଣି ଏ ନାମ ଦୁଇଟି ଉଚ୍ଚାରଣ କରିବାକୁ ଅକ୍ଷମ ହୋଇ ମିଷ୍ଟର ଶେନ୍ କେବଳ ସେମାନଙ୍କୁ ନମସ୍କାର କଲେ । ସେ ଅନୁଭବ କଲେ, ଆମେରିକାନମାନେ ବାସ୍ତବିକ ବଡ଼ ମେଳାପୀ । ତାଙ୍କ ହୃଦୟରେ ସେମାନଙ୍କ ପ୍ରତି ଅନୁରକ୍ତି ଜାତ ହେଲା, କିନ୍ତୁ ବହୁ ବର୍ଷର ଅଭ୍ୟାସ ଯୋଗୁଁ ସେ ପାଟି ଫିଟାଇ କିଛି କହିପାରିଲେନାହିଁ ।

ଟେଡ଼ କହିଲେ, "ବସନ୍ତୁ ନା ! ଆପଣମାନଙ୍କର ନାମ କ'ଣ ? ଆପଣଙ୍କୁ ତ ଶେନ୍ ବୋଲି କହିବି, କିନ୍ତୁ ଏଭଳି ସୁନ୍ଦରୀ ନାରୀଙ୍କୁ 'ଜି' ବୋଲି କହିଲେ ଚଳିବ ନାହିଁ । ମୋର ଦୃଢ଼ ବିଶ୍ୱାସ, ତାଙ୍କର ସୁନ୍ଦର ନାମଟିଏ ନିଶ୍ଚୟ ଥିବ ।"

ମିଷ୍ଟର ଶେନ୍ ଲଜରେ ରଙ୍ଗ ପଡ଼ିଗଲେ । ମିସ୍ ଜି'ଙ୍କୁ ତାଙ୍କ ନାମ ଧରି ଡାକିବାକୁ ସେ କେବେହେଲେ ଭାବି ନଥିଲେ । ତାଙ୍କୁ ନାମଟି ଜଣା, ତାଙ୍କ ପଡ଼ାର ଚୀନା ଲୋକେ ସମସ୍ତେ ବି ଜାଣନ୍ତି ; କିନ୍ତୁ ନାମଟି ଉଚ୍ଚାରଣ କରିବାକୁ ତାଙ୍କୁ କେମିତି କେମିତି ଲାଗିଲା ।

ମିସ୍ ଜି କହିଲେ, "ମୋ ନାମ ମେଇ ଲିଁ ।" ତାଙ୍କୁ କୌଣସି ସଙ୍କୋଚ ଲାଗିଲା ନାହିଁ । ଆମେରିକାନ୍‌ମାନେ ଯେପରି ନା' ଧରି ଡାକନ୍ତି ସେଥିରେ ସେ ସତେ ଯେପରି ପୂରା ଅଭ୍ୟସ୍ତ ! ସେ ପୁଣି କହିଲେ, "ଆପଣମାନେ ମୋ ନାମ ଧରି ଡାକନ୍ତୁ । ସେପରି ଡାକିଲେ ମୋତେ ଘରେ ଥିଲା ପରି ସୁଖ ଲାଗିବ ।"

ସୁ୍ୟ ପଚାରିଲେ, "ଏ ନାମର ଅର୍ଥ କ'ଣ ?"

ମିଷ୍ଟର ଶେନ୍ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ, "ସୁନ୍ଦର ସୁଗନ୍ଧିଯୁକ୍ତ ଫୁଲ ।"

ଟେଡ଼୍ ମିସ୍ ଲି'ଙ୍କ ଆଡ଼କୁ ହସି ହସି ଗୁହିଁ କହିଲେ, "ଆପଣଙ୍କୁ ଏ ନାମ ଠିକ୍ ମାନୁଛି, ସୁନ୍ଦର ଫୁଲରାଣୀ !"

ଟେଡ଼୍ ଜଳି ଯାଉଥିବା ନିଆଁରେ ଖଣ୍ଡେ କାଠ ପକାଇ ହାତରୁ ଧୂଳି ଝାଡ଼ି ଦେଲେ; କହିଲେ, "ତୁମେ ମାଇପି ଦୁହେଁ ଏକୁଟିଆରେ ଦୁଃଖସୁଖ ହୁଅ। ସନ୍ଧ୍ୟା ହୋଇଯିବା ପୂର୍ବରୁ ମୁଁ ଯାଉଛି ଶେନ୍‌ଙ୍କୁ ବାଡ଼ିଆଡ଼ ଦେଖାଇବ। ଶେନ୍, ଘର ପଛପଟେ ମୋର ଗୋଟିଏ ବଗିଚ୍ଚ ଅଛି, ତୁମେ ଚିନା ଲୋକେ ଖୁବ୍ ବଗିଚ୍ଚ କର ବୋଲି ମୁଁ ଶୁଣିଛି। ମୋ' ବଗିଚ୍ଚ ସେପରି କିଛି ଦେଖିବା ଜିନିଷ ନୁହେଁ, ତେବେ ମୁଁ ବଡ଼ିଆ ପାଚଲ ଘଣ୍ଟା କରିଛି।"

ଦୁହେଁ ମେଲକୁ ବାହାରିଲେ। ମିଷ୍ଟର୍ ଶେନ୍‌ଙ୍କୁ ବଡ଼ ଅଡୁଆ ଲାଗୁଥାଏ। ଦେଶରେ ବଗିଚ୍ଚପ୍ରତି ସେ କେବେ ଦୃଷ୍ଟି ଦେଇ ନଥିଲେ; ତାଙ୍କ ଘରେ କେହି ବଗିଚ୍ଚରେ ପାଚଲଘଣ୍ଟା ଲଗାଇବାକୁ କେବେ ପସନ୍ଦ କରି ନଥିଲେ, ଯାହା ହେଉ, ଭଦ୍ରତା ଖାତିରରେ ବଗିଚ୍ଚ ଦେଖିବାକୁ ପଡ଼ିବ।

ବୈଠକ ଖାନାରେ ମିସ୍ ଲି ସୁ୍ୟଙ୍କ ଆଡ଼କୁ ଗୁହିଁ ଟିକିଏ ଟିକିଏ ହସିଲେ। ପରିଷ୍କାର ଜଣା ପଡୁଥାଏ, ଚିନା ମାଇପିଟି ସଙ୍ଗେ କିପରି ଆଳାପ କରିବେ ସୁ୍ୟ ଜାଣି ପାରୁନଥାନ୍ତି। ମିସ୍ ଲି ଘର ଆଡ଼କୁ ସଂଭ୍ରମରେ ହାତ ବଢ଼ାଇ କହିଲେ, "ଆମେରିକାନ୍ ଘର କେମିତି ମୁଁ ନକ୍‌ସାରେ ଦେଖିଛି, ଆପଣଙ୍କ ସ୍ୱାମୀ ଯେଉଁ ନକ୍‌ସା କରନ୍ତି ସେଇଥିରୁ। କିନ୍ତୁ ବାସ୍ତବରେ ଦେଖିନାହିଁ। ଆପଣଙ୍କ ସ୍ୱାମୀ କେତେ କର୍ମ-କୁଶଳୀ, ନୁହେଁ ? ତାଙ୍କୁ ପାଇ ଆପଣ ଖୁବ୍ ସମ୍ମାନିତ ମନେ କରୁଥିବେ ?" ସୁ୍ୟ ଅନ୍ୟ ଆଡ଼କୁ ଆଖି ଫେରାଇଲେ। ମିସ୍ ଲି'ଙ୍କଠାରୁ ଖଣ୍ଡେ ଦୂରରେ ଅଗ୍ନିକୁଣ୍ଡର ଆରପାଖ ସୋଫା ଉପରେ ସେ ବସିଥିଲେ। ସେ ତଳୁ ଗୋଡ଼ ଉଠାଇ କୁଶନ୍ ଉପରେ ଜାକିଜୁକି ହୋଇ ବସିଲେ। କହିଲେ, "ବାସ୍ତବରେ ; କିନ୍ତୁ—"

ମିସ୍ ତାଙ୍କ କଥାରେ ବାଧା ଦେଇ କହିଲେ, "ଦେଖିଲା ମାତ୍ରେ ସେ କେତେ ଭଲ ଲୋକ ମୁଁ ଜାଣିଲି। ଆମେ ଅପରିଚିତ ଲୋକ, ପୁଣି ବିଦେଶୀ ଗୃଇନିଜ୍, ଆମକୁ ସେ ଯାଅ ବୋଲି କହି ପାରିଥାନ୍ତେ। କିନ୍ତୁ ସେ ଆମକୁ ଘରକୁ ଡାକିଲେ, ଖାଇବାକୁ ଦେଲେ। କଫି ଦେଲେ।"

ସୁଂ କୁନ୍ଥୁ କୁନ୍ଥୁ ହୋଇ କହିଲେ, "ହଁ, ଅପରିଚିତ ଲୋକଙ୍କୁ ସେ ଶ୍ରଦ୍ଧା କରି ପାରନ୍ତି ।"

ମିସ୍ ଲି କହିଲେ, "ମଣିଷର ତ ସେଇଠି ପରୀକ୍ଷା ।"

ସୁଂ ଆଙ୍କୁଡ଼ି ଥିବା ମାଣ୍ଡି ଉପରେ ବଧାଟାଏ ମାରି ହଠାତ୍ କହି ଉଠିଲେ, "ତାଙ୍କର ଘର ଚଢ଼ଚଢ଼ା ପ୍ରକୃତି । ତାଙ୍କ ମୁଣ୍ଡ ବାଳର ବର୍ଣ୍ଣରୁ ତ ତା' ଜାଣୁଥିବ; କେମିତି ନାଲିଆ । ତାଙ୍କ ବାଳ ତୁଳନାରେ ମୋ ବାଳ ସେତେ ନାଲିଆ ନୁହେ—ସୁନେଲି ।"

ଏହି ଯୁକ୍ତିର ଦୃଢ଼ତା ବୁଝାଇବାକୁ ସେ ଅପଲକ ଦୃଷ୍ଟିରେ ମିସ-ଲି'ଙ୍କ ଆଡ଼କୁ ଚାହିଁଲେ । ମିସ୍ ଲି କହିଲେ, "ତୁମ ବାଳ କି ସୁନ୍ଦର । ଏହାର ବର୍ଣ୍ଣ ଚିତ୍ରରେ କପରି ଫୁଟାଇବ ଜାଣିପାରୁନାହିଁ । ଏମିତି ବାଳ ଆମ ଦେଶରେ ବିରଳ । ତୁମ ବାଳକୁ ଦେଖି ମୁଁ କ'ଣ ଭାବୁଛି, କହିବ ?"

ଏ କଥାରେ ସୁଂଙ୍କର ଖୁବ୍ ଆଗ୍ରହ ହେଲା । ମିସ୍ ଲି ଦେଖିଲେ, ତାଙ୍କୁ ଠିକ କରି କହିଲେ ତାଙ୍କର ଘୃଣା ଆଗ୍ରହ । ସୁଂ ଆଗ୍ରହରେ ପଚାରିଲେ "କ'ଣ ?"

ମିସ୍ ଲି କହି ଚାଲିଲେ, "ମୋ ଗୋସିଂମା ଟସର ପୋକ ପାଳୁଥିଲେ । ଭାରି କଷ୍ଟ କାମ ; ହେଲେ କ'ଣ ହେବ, ତାଙ୍କର ଏ କାମରେ ଭାରି ଶ୍ରଦ୍ଧା । ଆମେ ଯତ୍ନରେ ବି ତାଙ୍କୁ ସାହାଯ୍ୟ କରିଥାଉଁ । ଟସର ପୋକ ଯେତେବେଳେ ସୂତା ବାହାର କରିବାକୁ ବସେ, ଆମେ ତାଙ୍କ ଆଗରେ ଗ୍ଲେଟ ଗ୍ଲେଟ କାଠି ରଖିଦେଉଁ । ମୋଟା ସବୁଜବର୍ଣ୍ଣ ଟସର ପୋକ ସେଇ କାଠିରେ ଖୋସା ବାନ୍ଧେ । ପ୍ରଥମରେ ସେ ରୂପେଲି, ନା ସୁନେଲି ସୂତା ବାହାର କରେ ସେଇଥିରେ ଖୋସାକୁ ଓହଳାଇବାକୁ । ତମ ବାଳ ଦେଖି ମୋର ସେଇ ସୁନେଲି ରେଶମ୍ ମନେ ପଡ଼ୁଛି । ମୋତେ କ୍ଷମା କରିବ—"

ମିସ୍ ଲି ଉଠିପଡ଼ି ସୁଂଙ୍କ ପାଖକୁ ଗଲେ ଏବଂ ସୁଂଙ୍କ ବାଳରେ ହାତମାରି କହିଲେ, "ଠିକ୍ ସେଇପରି; କେତେ ସୁନ୍ଦର, କେଡ଼େ ଚୋଫା ।"

ଏଭଳି ଅକୃତ୍ରିମ ପ୍ରଶଂସା, ଜଣେ ସ୍ତ୍ରୀ ଲୋକଠାରୁ (ସେ ପୁଣି ଜଣେ ଚିତ୍ରକର) ମିଳିଲେ କେଉଁ ନାରୀ ପ୍ରଭାବିତ ନହେବ ! ସ୍ୟୁଙ୍କର ଅବାଧ ମନ ବଶ ହୋଇଗଲା । ତାଙ୍କ ଉଦ୍ଦାମ ପ୍ରକୃତି ଏଥର ମିସ୍ ଲି'ଙ୍କ ପ୍ରତି ଶ୍ରଦ୍ଧାରେ ଭରିଗଲା । ସେ ଦୁଇହାତ ମିସ୍ ଲି'ଙ୍କ ଅଣ୍ଟା ଚାରିପଟେ ଘେରାଇ ଦେଇ ତାଙ୍କୁ ଜାକି ପକାଇଲେ ; କହିଲେ, "ତମର ରୂପ ଯିମିତି କଥା ବି ସିମିତି ସୁନ୍ଦର । ଆସ, ଆସ; ଘର ଦେଖିବ ପରା !"

ମିସ୍ ଲି'ଙ୍କୁ ବାହୁ ବନ୍ଧନରୁ ମୁକ୍ତ କରି ସେ ଠିଆ ହେଲେ ଓ ନିଜର ଲମ୍ବା ସବୁଜ ପୋଷାକକୁ ସଜାଡ଼ି ଦେଲେ । ତା'ପରେ ସ୍ନେହଭରେ ମିସ୍ ଲି'ଙ୍କ ହାତରେ ହାତ ଛନ୍ଦି, ଉଭୟେ ଭିତର ଦୁଆର ଆଡ଼କୁ ଗଲେ । ସ୍ୟୁ କହିଲେ, "ଏକଥା ମୁଁ ତୁମଠାରୁ ନ ଲୁଚାଇ କହି ଦେଉଛି, ଏଇ ଘରଟି ଯୋଗୁଁ ହିଁ ଆଜିଯାଏଁ ମୁଁ ଟେଡ଼ଙ୍କ ଚିଡ଼ଚିଡ଼ା ପ୍ରକୃତିକୁ ବରଦାସ୍ତ କରି ରହିଛି । ଏ ଘରଟି ଭାରି ସୁନ୍ଦର । ବିବାହବେଳେ ଆମ ଦୁହିଙ୍କ ପିତାମାତା ଯୌତୁକ ସ୍ୱରୂପ ଆମ୍ଭକୁ ଦେଇଥିଲେ । ସେମାନେ ଖୁବ୍ ଦୁଃଖିତ ହେବେ, ଯେତେବେଳେ ଜାଣିବେ ଯେ—"

ମିସ୍ ଲି ସରଳ ଭାବେ ପଚାରିଲେ, "କ'ଣ ଜାଣିବେ ଯେ ?"

"ଯେ ଆମେ—ହଁ, ତମକୁ କାହିଁକି ଲୁଚାଇବି ? ବଳେ ତ ସମସ୍ତେ ଜାଣିବେ । ମୁଁ ଟେଡ଼୍‌ଙ୍କଠାରୁ ଛାଡ଼ପତ୍ର ନେବି ।"

ଏ କଥା ଶୁଣି ମିସ୍ ଲି ଭୟ-ବିହ୍ୱଳିତ ହୋଇଗଲେ ।

"ଆଲୋ ମା ଲୋ ! ଏ କଥା କାହିଁକି କହୁଛ, ଭଉଣୀ ? ଏତେ ଭଲ ସ୍ୱାମୀ, ଏମିତି ସୁନ୍ଦର ସ୍ତ୍ରୀ ? ଯୁଆଙ୍କର ପୁଣି ଏଭଳି ଦଶା । କେତେ ଦୁଃଖର କଥା !"

ସ୍ୟୁ ଠିଆ ରହି ଓଠ କାମୁଡ଼ିଲେ । "ଆମର ବିଭା ହେବା କଥା ଯେତେବେଳେ ଠିକ୍ ହୋଇଗଲା, ଆମ ବନ୍ଧୁବାନ୍ଧବ କହିଥିଲେ ଯେ, ଆମେ ଦୁହେଁ ଆଦର୍ଶ ଦମ୍ପତି ହେବୁ ।"

ମିସ୍ ଲି ଚୁପ୍‌ଚାପ୍ କହିଲେ, "କହିବାର ତ କଥା । ମୋତେ ତ ସେଇଆ ଜଣାଯାଉଛି ।"

ସ୍ୟୁ ଜୋରରେ ହାତ ନେଇ ଆଖିରେ ମାଇଲେ ଓ ଟେଡ଼୍ ଯେମିତି କରନ୍ତି ଠିକ୍ ସେମିତି କାନ୍ଧ ନଚାଇଲେ । ମିସ୍ ଲି ବିସ୍ମିତ ହେଲେ, "ଆରେ !

ସ୍ତ୍ରୀ ତ ପରସ୍ପରଙ୍କୁ ଏମିତ କାନ୍ଧ ନଗୃହଉଛନ୍ତି । ଏଇ ଖୋଇ ତ ସବୁ ସୁଖକୁ ପୋଡ଼ି ଜାଳଦେବ । ଅତି ଅସଭ୍ୟ ଅଭ୍ୟାସ ! ସ୍ୱାମୀ ସ୍ତ୍ରୀ ଯଦ ପରସ୍ପର ପ୍ରତି ଏପରି ରୂଢ଼ ଆଚରଣ କରନ୍ତି ତେବେ ଚଳନ୍ତ କମିତ । ସେମାନଙ୍କୁ ତ ଏକାଠି ଘର କରିବାକୁ ପଡ଼ିବ । ଆମେରିକାନ୍ ନାଗ୍ଣ, ମୋଟେ ଏଇ କ୍ଷଣକର ଦେଖା, ପୁଣି ତାଙ୍କ ଘରେ ଆସି ଅତିଥି ହୋଇ ମେ ଏକଥା ତାଙ୍କୁ କହିବେ କପରି ?”

ସେ ସୌଜନ୍ୟରେ କହିଲେ, “ମୋତେ ତୁମ ଘର ଦେଖେଇବା ହେଉ ।”

ଗୋଟି ଗୋଟି ସବୁ ବଖରାକୁ ଗଲେ । ମିମ୍ ଲ ଯାହା ଦେଖୁଥାନ୍ତି ସବୁ ତାରିଫ୍ କରୁଥାନ୍ତି । ଘରଟି ବେଶ୍ ସୁନ୍ଦର, ତାଙ୍କ ମନରେ ଉଲ୍ଲାସ ଆଣୁଥାଏ, ତାଙ୍କ ତାରିଫ୍ କରିବାରେ କୃତ୍ରିମତା ନଥାଏ । ଏକୁଟିଆ ଗ୍ରେଷେଇ ଘରଟା ଦେଖି ତ ତାଙ୍କ ଆଖି ଖୋସି ହୋଇଗଲା । ପାଚିଲା ଚେରି ଫଳର ଲଲରଙ୍ଗ, କଂଚ୍ଚ ଆପଲ୍ ଫଳର ସବୁଜ ରଙ୍ଗ ଗୋଟିଏ ଝରକା ଗୃରପଟେ ବଡ଼ ସୁନ୍ଦରଭାବରେ ସଂଯୁକ୍ତ ହୋଇଥାନ୍ତି । ଝରକା ବାଟେ ବଗିଚ୍ଚ ଦିଶୁଥାଏ । ବଗିଚ୍ଚରେ ଟେଡ୍ ଓ ଶେନ୍ ଖୁବ୍ ଗମ୍ଭୀର ଭାବରେ ପାଚଲଘଣ୍ଟା ବିଷୟରେ ଆଲୋଚନା କରୁଥିବାର ଦିଶୁଥାଏ ।

ମିସ୍ ଲ କହିଲେ, “ତୁମର ଗୃକର ବାକର କେହି ନାହାନ୍ତି ?”

ସ୍ତ୍ରୀ ଉଦାସୀନ ଭାବେ କହିଲେ, “ଗୋଟିଏ ଗୃକରାଣୀ ଅଛି ଯେ, ଦିନରେ କେତେଘଣ୍ଟା ପାଇଁ ଆସେ, ଆଉ ଜଣେ ଝାଡ଼ୁବାଲା ଆସେ ହପ୍ତାକେ ଥରେ । ଆଉ ଅଧିକ ଗୃକରବାକର ମୋର ଲୋଡ଼ା ନାହିଁ ।”

ମିସ୍ ଲ ଏ ବ୍ୟବସ୍ଥା ପସନ୍ଦ କରି କହିଲେ, “କଳ ତ ତମର ଗୃକର କରିବାକୁ ଅଛି ।” ଏହା କହିଲା ବେଳେ ସେ ବାସନଧୁଆ କଳକୁ ଉଣ୍ଡୁଥାନ୍ତି, ସଂଭ୍ରମରେ କଳଚୁଲିକୁ ଗୃହୁଁଥାନ୍ତି ।

ଓପର ମହାଲକୁ ସିଡ଼ି ଚଢ଼ିଲେ । ପାହାଚରେ ପଡଥିବା ନରମ ମଲମଲ ଗାଲିଚ୍ଚ ମିସ ଲି'ଙ୍କୁ ଭାରି ସୁଖ ଲଗୁଥାଏ । ମିସେସ୍ ଫିଲଡ୍-ମ୍ୟାନେଙ୍କ ଘରେ ତାଙ୍କ କୋଠରୀକୁ ଯିବାକୁ ଯେଉଁ ପାଞ୍ଚଟା ସିଡ଼ି ଉଠିବାକୁ

ହୁଏ, ସେଥିରେ ହେଲେ ଏଇପରି ଗାଳିଚା ବିଛା ହୋଇଥାନ୍ତା—ମିସ୍ ଲି ବିଚାରୁଥାନ୍ତି ।

ଓପର ମହଲାର ହଲ୍‌ରେ ପହଞ୍ଚି ମିସ୍ ଲି ପଚାରିଲେ, "ତୁମ ସ୍ୱାମୀ ତୁମ ଉପରେ ଚିଡ଼ିଲା ବେଳେ ଏଇ ଘରଟି ତୁମକୁ ସାନ୍ତ୍ୱନା ଦେଉଥିବ ।" ସବୁଆଡ଼େ ସୁନ୍ଦର ଗାଳିଚା ବିଛା ହୋଇଥାଏ; କାନ୍ଥରେ ନାନା ରଙ୍ଗର କାଗଜ ମଡ଼ା ହୋଇଥାଏ; ସୁନ୍ଦର ଆସବାବ ପତ୍ର ଥାଏ ।

ସୁ୍ୟ କହିଲେ, "ହଁ, ଘରକୁ ଭଲ ପାଇଁ ପ୍ରଥମେ ପ୍ରଥମେ ସବୁ ସଜାଉଥିଲି । କିନ୍ତୁ କିଛିଦିନ ପରେ ଏ ଘର ଆଉ ମନ ବୁଝେଇ ପାରିଲା ନାହିଁ । ଏଇଟା ପ୍ରଧାନ ଶୋଇବା ଘର, ଆଉ ଏଇଟା ଆମ ନିଜ ଗାଧୁଆ ଘର ।" ଦୁଆର ମେଲେଇ ସେ ଘରଟା ଦେଖାଇଦେଲେ—ସୂର୍ଯ୍ୟକିରଣର ହଳଦିଆ ରଙ୍ଗ ଓ ମଖମଲର ପାଟଳରଙ୍ଗ, ଏ ଘରେ ସମ୍ମିଶ୍ରିତ ।

ମିସ୍ ଲି ଦୀର୍ଘନିଃଶ୍ୱାସରେ ସନ୍ତୋଷ ପ୍ରକାଶ କରି କହିଲେ, "ବେଶ୍, ଭାରି ସୁନ୍ଦର ।"

ଦୁହେଁ ଘର ଭିତରକୁ ଗଲେ । ସୁ୍ୟ ଗୋଟିଏ ବଡ଼ ଚଉକିରେ ବସି ପଡ଼ିଲେ; ତାଙ୍କର ଆପଣାର ହୋଇ ଯାଇଥିବା ଅତିଥିଙ୍କୁ କହିଲେ, "ବସ ।" ଗୋଟିଏ ଡବାରୁ ସିଗ୍‌ରେଟ୍ ଖଣ୍ଡେ କାଢ଼ି ସେ ଡବାଟା ମିସ୍ ଲି'ଙ୍କ ଆଡ଼କୁ ବଢ଼ାଇ ଦେଲେ ।

ମିସ୍ ଲି କହିଲେ, "ଧନ୍ୟବାଦ । ମୁଁ ସିଗ୍‌ରେଟ୍ ଖାଏ ନାହିଁ ।"

ସୁ୍ୟ କହିଲେ, "ମୁଁ ଗୁଡ଼ାଏ ଖାଏ ।" ସେ ସିଗ୍‌ରେଟ୍ ଲଗାଇଲେ । ମିସ୍ ଲି ତାଙ୍କର ଦୁର୍ବଳ କ୍ଷୁଦ୍ର ହାତ ଦୁଇଟିକୁ ଲକ୍ଷ୍ୟ କଲେ, ଆଙ୍ଗୁଠିଗୁଡ଼ିକ ଟିକିଏ ଟିକିଏ ଥରୁଥାଏ । ଏଥର ଏଣିକି ସେ ଅଧିକ ସାବଧାନ ହେବାକୁ ହେବ । ସେ ଏଥର କହିବା ଅପେକ୍ଷା ବେଶୀ ଶୁଣିବେ ଏବଂ ଯାହା କହିବେ ବୁଦ୍ଧିବିଚାର କହିବେ ।

ହଠାତ୍ ସୁ୍ୟ ଆରମ୍ଭ କଲେ, "ଟେଡ୍ ହଲ୍ ଆରପାଖ ଘରେ ଶୁଅନ୍ତି ।" ପାଟିରୁ ଧୂଆଁ କୁଣ୍ଡଳାକାରରେ ବାହାରୁଥାଏ । "ଜଣେ ପୁରୁଷ ସଙ୍ଗେ ଏକାଘରେ ଶୋଇବା ବଡ଼ ଅସୁବିଧାଜନକ । ତୁମେ କ'ଣ କହୁଛ ?"

ମିସ୍ ଲି'ଙ୍କୁ ଲାଜ ମାଡ଼ିଲା, କହିଲେ, "ତା' ମୁଁ ଜାଣିବି କିମିତି ?"

ସ୍ମି ପଚାରିଲେ, "ତୁମେ ତେବେ ବଡ଼ ହୋଇନାହଁ । ମୁଁ ବିଚାରିଲି, ଆମ ଏଠାରେ କଳାକାରମାନେ ଯେପରି ନିଜ ଅବିବାହିତ ନାମ ବ୍ୟବହାର କରନ୍ତି, ତୁମେ ସେଇପରି କରୁଛ !"

ମିସ୍ ଲି କହିଲେ, "ନା, ମୋର ବିବାହ ହୋଇନାହିଁ ।" ଏଥର ସେ ନିଜର ବ୍ୟକ୍ତିଗତ ଗୁପ୍ତ କଥା କହିଲେ । "ମୋ'ର ପିଲା-ବେଳେ ମୋ ବାପା ମୋ ପାଇଁ ଠାଏ ଠିକଣା କରିଥିଲେ । କିନ୍ତୁ ସେତେବେଳେ ବିଭା ହେବାକୁ ମୁଁ ମଙ୍ଗିଲି ନାହିଁ । ପାଠ ପଢ଼ିବାକୁ ବାହାରିଗଲି । ତା'ପରେ ଲଢ଼େଇ ଆସିଲା, ମୁଁ ସେଥିରେ ମିଶିଲି । ଲଢ଼େଇ ପରେ ଏଠାକୁ ଆସିବାକୁ ମୋତେ ସୁଯୋଗ ମିଳିଗଲା । ବଡ଼ ଆନନ୍ଦର କଥା ଯେ, ମୁଁ ଏଠାକୁ ଆସିଥିଲି, ନହେଲେ ତମ ସଙ୍ଗେ ଦେଖା ହୋଇଥାନ୍ତା କିପରି ?"

ସ୍ମି କହିଲେ, "ତୁମେ କେଡ଼େ ଭଦ୍ରଭାବରେ କଥା କହୁଛ; ତଥାପି ତୁମେ ଭଦ୍ରତା ଖାତିରରେ ଉପର ମନରେ ଏହା କହୁଛ ବୋଲି ନବିଚାରି, ମୁଁ ତୁମକଥା ନିଶ୍ଚୟ ବିଶ୍ୱାସ କରୁଛି । ଆଚ୍ଛା, ତୁମେ କ'ଣ ଯୁଦ୍ଧରେ ଲଢ଼ିଥିଲ ? ତୁମ ହାତ ଗୋଡ଼ରୁ ତ ଜଣାପଡ଼ୁନାହିଁ !"

ମିସ୍ ଲି ବିମୀତଭାବରେ ଉତ୍ତର ଦେଲେ, "ଗ୍ରେଟିଆ ମଣିଷ, ଗ୍ରେଟିଆ ଢଙ୍ଗରେ ଯୁଦ୍ଧ କାମ କରିଥିଲି । ପ୍ରଚାରଚିତ୍ର ମୁଁ ଆଙ୍କୁଥିଲି । ଆମ ଦେଶ ଜାପାନ କବଳରୁ କାହିଁକି ମୁକ୍ତ ହେବ ସେକଥା ଏ ଚିତ୍ର ଗୁଡ଼ିକରେ ଆମ ଦେଶର କୃଷକମାନଙ୍କୁ ବୁଝାଇ ଦିଆହୋଇଥିଲା । ଜାପାନଠାରୁ ମୁକ୍ତ ହେଲୁଁ ସିନା, ତଥାପି ଆମେ ମୁକ୍ତ ନୁହେଁ । ମୋର ଆଶା, ମୁକ୍ତି କାହିଁକି ଦରକାର, ତାହା ଏ ଚିତ୍ର ଦେଖିଥିବା କୃଷକମାନେ ବର୍ତ୍ତମାନ ବି ମନେ ପକାଉଥିବେ ।"

ଏହି ଆମେରିକାନ୍ ତରୁଣୀଙ୍କୁ ତାଙ୍କ ଦେଶର ଦୁଃଖ କଷ୍ଟ କଥା ସେ କିପରି ବୁଝାଇ କହିବେ ? ଏ ସୁଖପ୍ରଦ ଘରେ ତ ଦୁଃଖକଷ୍ଟର ଛାଇ ପଡ଼ିବାର ନୁହେଁ । ସେ କହିଲେ, "ତମ ଏଠା ମୋତେ କେଡ଼େ ଚମତ୍କାର ବୋଧ ହେଉଛି ! କି ଶାନ୍ତି, କି ସୌନ୍ଦର୍ଯ୍ୟ ! ସବୁ କେଡ଼େ

ପରିଷ୍କାର ପରିଚ୍ଛନ୍ନ ! ଯୁଦ୍ଧବେଳେ ଆମେ ଗାତଭିତରେ ରହୁଥିଲୁଁ, ଅନେକ ଦିନ ଧୂଆଧୋଇ ହେବାର ବି ସୁବିଧା ମିଳେନାହିଁ । ତୁମ ଆମେରିକାରେ ତ ଗାଧୁଆ ଘର କୁହୁକ-ଘର ପରି ଦିଶୁଛି ! ଗୋଟାଏ ଲୁହା ହ୍ୟାଣ୍ଡ୍‌ଲ୍‌ରେ ହାତ ମାରି ଦେଲେ, ପର୍ବତର ଝରଣାରୁ ବୋହିଲା ପରି ସ୍ୱଚ୍ଛ ଜଳ ବାହାରି ଆସୁଛି । ସେ ତ ସୁଖ ।”

ସ୍ମିଥ୍ ରୁକ୍ଷ ଭାବରେ ଉତ୍ତର ଦେଲେ, “ଏ ସବୁ ଦେହସହା ହୋଇଗଲାଣି ।”

ମିସ୍ ଲି ଏକଥା ନଶୁଣିଲା ପରି କହିଲେ, “ଏ ଘରଟି କେତେ ସୁଖପ୍ରଦ ହୋଇଛି । ଆମେ ଯେଉଁ ଟନେଲର ଭିତରେ ଥାଉ, ସେଥିରେ ସବୁବେଳେ ଅନ୍ଧାର; କାନ୍ଥଗୁଡ଼ାକ କଳା, ପାଣିଝରୁଥାଏ; କୀଟ ପତଙ୍ଗ, ଏପରି କି ସାପ ବି ଥାନ୍ତି । ତଥାପି ବୋମାମାଡ଼ରୁ ସେଠାରେ ନିରାପଦରେ ଥାଉଁ ବୋଲି କୃତଜ୍ଞ ହୋଇ ଥାଉଁ । କେବଳ ବଞ୍ଚିରହିବାର୍ହିଁ ସେତେ-ବେଳେ ଥାଏ ବଡ଼ ସୁଖ ।”

ସ୍ମିଥ୍ ଚିନ୍ତିତ ହୋଇ କହିଲେ, “ତା’ ବି ଆମେ ଅଙ୍ଗେ ନିଭାଇଲୁଣି ବୋଲି ମୋର ମନେହୁଏ ।”

ମିସ୍ ଲି ପ୍ରକୋଷ୍ଠର ଚାରିଆଡ଼େ ପୁଣି ଆଖି ବୁଲାଇଲେ, ସୌନ୍ଦର୍ଯ୍ୟର ପ୍ରତିଟି କ୍ଷୁଦ୍ର ଉପାଦାନକୁ ଲକ୍ଷ କଲେ ।

ଶେଷରେ କହିଲେ, ‘‘ସୌନ୍ଦର୍ଯ୍ୟ ତ ଗୋଟାଏ କୌଣସି ସ୍ୱତନ୍ତ୍ର ବଡ଼ ଜିନିଷ ନୁହେଁ । ଗୁଡ଼ିଏ ଛୋଟ ଛୋଟ ଜିନିଷର ଏହା ସମାହାର । ଅଲଗା ଅଲଗା କରି ଦେଖିଲେ ଏ ଛୋଟ ଜିନିଷଗୁଡ଼ିକ ବିଶେଷ କିଛି ନୁହେଁ । କିନ୍ତୁ ସେ ସବୁଗୁଡ଼ିକ ଯେତେବେଳେ ଗୋଟିଏ ସଂଯୋଜକ ଏକାଠି କରିଦିଏ, ତେବେ ସୌନ୍ଦର୍ଯ୍ୟ ରୂପ ପାଏ । ଉଦାହରଣ ଦେଉଛି, ଶୁଣ । ଏ ଘରଟି କେଡ଼େ ଉଷ୍ମ ଲାଗୁଛି । ମୁଁ ଜାଣୁଛି, ତଳଘରେ ଥିବା ଗୋଟିଏ ଷ୍ଟୋଭ୍‌ରୁ ତାପ ଆସି ଏ ଘରଟିକୁ ଏଡ଼େ ରମଣୀୟ କରିଛି । ଆମ ଘରେ ଶୀତକାଳରେ ବି ଘର ଭାରି ଥଣ୍ଡା ଥାଏ । ଶୀତଦିନେ ଶୀତ ଯୋଗୁଁ ମୋ ହାତ ଫୁଲିଯାଏ; ପୁଣି ବସନ୍ତ ନ ଆସିବା ଯାଏଁ ମୁଁ ତୂଳୀ ଧରିପାରେ ନାହିଁ । ଓଃ, ଶୀତ ଦିନଟା କେଡ଼େ ଲମ୍ବା ଜଣାଯାଏ !”

ସ୍ୟୁ ତୃଷ୍ଣା ହୋଇ ବସିଥାନ୍ତି । ସେ ଚୀନ୍‌ବାସିମା ତରୁଣୀଙ୍କି ପ୍ରତି ଚାହିଁ ରହିଥାନ୍ତି । ସିଗ୍‌ରେଟ୍‌ଟି ଜଳାଇ ଫୋପାଡ଼ ଦେଉଥାନ୍ତି ।

ମିସ୍ ଲି କହି ଚାଲିଥାନ୍ତି, "ଆଜି ଚମ ଗାଡ଼ି ଏଠାକୁ କେତେ ଦ୍ରୁତ ଗତିରେ ନ ଆସିଲା ! ଆମ ଦେଶରେ ଆମେ ଦୁଇଜଣ ବେହେରା ବୋହୁଥିବା ପାଲ୍‌କିରେ ଯିବାଆସିବା କରୁଥିଲୁଁ । ମଣିଷ ଯେତିକି ବେଗେ ଚାଲିବେ ସେ ସେତିକି ବେଗେ ଯିବ । ମୁଁ ପ୍ରଥମେ ସାଂଘାଇ ଯାଇ ଯେତେବେଳେ ରେଳଗାଡ଼ିରେ ଚଢ଼ିଲି, ସେତେବେଳେ ତାହା କେତେ ଅଲୌକିକ ଘଟଣା ପରି ଲାଗିଥିଲା, ଆଜି ବି ମନେ ରଖିଛି । ମୋ ବାପା ମୋତେ କହିଲେ, ରେଳଗାଡ଼ି, ଆମେରିକାରୁ କିଣା ହୋଇ ଆସିଛି । ସେଇଦିନୁଁ ଆମେରିକା କେମିତି ଦେଶ ଦେଖିବାକୁ ଭାରି ମନ ଥିଲା । ଆଜି ମୁଁ ଆସି ଆମେରିକାରେ । କଳ୍ପନାଠାରୁ ବି ଏହା ଅଧିକ ବିଚିତ୍ର ଲାଗୁଛି ?"

ମିସ୍ ଲି ଗୁଣୁଗୁଣୁ ସ୍ୱରରେ କହିଲେ, "ପ୍ରତି ରାତିରେ ଗୋଟିଏ ଓସାରିଆ ଖଟରେ ଶୋଇବ ; ଖଟରେ ପରିଷ୍କାର ବିଛଣା ଚାଦର ପଡ଼ିଥିବ—ପିଲାବେଳେ ଏଇ ଥିଲା ମୋର ସ୍ୱପ୍ନର ଚିନ୍ତା । ତେବେ, ଖାଲି ଜୀବନ ବଞ୍ଚିତ ବୋଲି ସେତେବେଳେ ସୁଖ ହେଉଥାଏ ।"

ସ୍ୟୁ ଆଉ ଗୋଟିଏ ସିଗ୍‌ରେଟ୍ ଧରାଇଲେ; କହିଲେ, "ଟେଡ୍ ଓ ମୁଁ କାହିଁକି ସୁଖ ପାଇ ପାରୁନାହୁଁ ତାହାର କାରଣ ମୋତେ ଜଣା ପଡୁନାହିଁ ।"

ମିସ୍ ଲି କହିଲେ, ଯେଉଁ କଥାଗୁଡ଼ିକ ମୁଁ କହିଗଲି, ସେ ସବୁର ମୂଲ୍ୟ ବହୁତ, କିନ୍ତୁ ସୁଖ ଉତ୍ପାଦନ କରିବାକୁ ସେଗୁଡ଼ିକ ସଂଯୋଜିତ ହେବା ଦରକାର ।" କିଛି ସମୟ ରହିଯାଇ ସେ କହିଲେ, "ପ୍ରେମ ହେଉଛି ସେଇ ସଂଯୋଜକ ।"

'ପ୍ରେମ' ଏଇ ଶବ୍ଦଟି ମିସ୍ ଲି ଚେଷ୍ଟାକରି ଉଚ୍ଚାରଣ କଲେ । ଚାଇନିଜ୍ ସ୍ତ୍ରୀ ଲୋକେ ସହଜରେ ଏ ଶବ୍ଦ କହନ୍ତି ନାହିଁ । ତାଙ୍କ ଭାଷାରେ ଏଇ ଭାବ ପ୍ରକାଶ କରିବାକୁ କୌଣସି ଏକ ନିର୍ଦ୍ଦିଷ୍ଟ ଶବ୍ଦ ନାହିଁ । କିନ୍ତୁ ଇଂରେଜି ଭାଷାରେ ପ୍ରେମ (Love) ବୋଇଲେ କ'ଣ ବୁଝାଏ ସେ ଜାଣନ୍ତି । ଏ ଶବ୍ଦ ବ୍ୟବହାର କରିବା ବେଳ ଆସିଲା ବୋଲି ସେ ବ୍ୟବହାର କଲେ, ଅବଶ୍ୟ ଅନ୍ୟ ଜଣେ ନାରୀ ସମ୍ବନ୍ଧରେ ।

ସେ କହିଲେ, "ମୁଁ ଶୁଣିଛି, ତୁମ ଆମେରିକାରେ କେବଳ ପ୍ରେମରେ ହିଁ ବିବାହ ହୁଏ । କେଡ଼େ ଆନନ୍ଦଦାୟକ ଏ ବ୍ୟବସ୍ଥା ।"

ସୁ୍ୟ କହିଲେ, "ହଁ ଯେ, ପ୍ରେମ ସ୍ଥାୟୀ ହେଲେ ସିନା !"

ମିସ୍ ଲି ଖୁଁ' କରି ଟିକିଏ ହାସି କହିଲେ, "ଏଭଳି ଗୋଟିଏ ସୁନ୍ଦର ଘରେ ରହି ପ୍ରେମକୁ ସ୍ଥାୟୀ କରିବାକୁ ଚେଷ୍ଟା କରିବା ଦରକାର ।"

ସୁ୍ୟ ହଠାତ୍ ଠିଆ ହୋଇପଡ଼ି କହିଲେ, "ସେ ପ୍ରେମର ଚେର ଉପାଡ଼ି ଦେବା ନିମନ୍ତେ ପୁରୁଷ କ'ଣ କରିପାରେ ଶୁଣିଲେ ଆଶ୍ଚର୍ଯ୍ୟ ହେବ ।"

ମିସ୍ ଲି କହୁ କହୁ ଯଥେଷ୍ଟ କହି ସାରିଥାନ୍ତି । ଆଉ କିଛି କହିବା ନିଷ୍ପ୍ରୟୋଜନ ବୋଲି ସେ ବୁଝିଲେ ଓ ସେ ମଧ୍ୟ ଉଠି ଠିଆ ହେଲେ । ତଳ ମହଲରେ ଟେଡ଼୍‌ଙ୍କ ସ୍ୱର ଶୁଣାଗଲା—ବେପରୁଆ ଭାବରେ ବଡ଼ ପାଟି କରୁଥାନ୍ତି, ମଝିରେ ମଝିରେ ବଡ଼ ପାଟିରେ ହସୁଥାନ୍ତି ବି । ତାଙ୍କର ବଡ଼ ପାଟି ଭିତରେ, ମିସ୍ ଲି ଶୁଣିଲେ, ମିଷ୍ଟର୍ ଶେନ୍ ଧୀର ସ୍ୱରରେ ତାଙ୍କ କଥାରେ ସାଇ ଦେଉଥାନ୍ତି ।

ଟେଡ଼୍ ପାଟି କରି ଡାକିଲେ, "ସୁ୍ୟ, ତମେ ଦୁହେଁ କେଉଁଠି ?"

ସିଡ଼ି ଉପରୁ ସୁ୍ୟ ପାଟିକଲେ, "ଏଇଠି ।"

ଟେଡ଼୍ ପୁଣି ପାଟିକଲେ, "ଆସ୍, ଆସ୍, ସେ ସୁନ୍ଦରୀ ଫୁଲରାଣୀକୁ ବି ଆଣ । ଟିକିଏ କ'ଣ ପିଇବାକୁ ଯୋଗାଡ଼ କରିବା ।"

ମିସ୍ ଲି ନିଜର ସୁକୋମଳ ଡାହାଣ ହାତ ଟିକେ ସୁ୍ୟଙ୍କ ପିଠିରେ ଥୋଇ ଖୋସାମଦ୍ କଲାପରି ତାଙ୍କ ଆଡ଼କୁ ଚାହିଁ ଫୁସଫୁସ କରି କହିଲେ, "ତୁମ ଦୁହିଙ୍କ ଭିତରେ ପ୍ରେମ ଆଉ ନାହିଁ—ଏକଥା, ହେଇଟି ସେ ପାସୋର କରିଲେଣି ।"

ନିର୍ମମ ଭାବରେ ସୁ୍ୟ ମିସ୍ ଲିଙ୍କ ଆଡ଼କୁ ଚାହିଁଲେ । କହିଲେ, "ମୋର କିନ୍ତୁ ପାସୋର ହୋଇ ନାହିଁ କି ବଞ୍ଚିଥିବା ଯାକ ପାସୋର ହେବ ନାହିଁ ।"

ମିସ୍ ଲି ଶଙ୍କିଗଲେ । ସୁ୍ୟଙ୍କର ସୁନ୍ଦର, ପ୍ରଫୁଲ୍ଲ ମୁହଁ ହଠାତ୍ ବାଘୁଣୀର ମୁହଁ ପରି ହୋଇଗଲା ।

ମୂହୂର୍ତ୍ତକେ ପୁଣି ଏ ଚେହେରା ବଦଳିଗଲା । ଦୁହେଁ ତଳକୁ ଗଲେ ଓ ଗୃହଭଜଣଯାକ ଘଣ୍ଟେ ଖଣ୍ଡେ ଏକାଠି ବସିଲେ ; ପୁରୁଷ ଦୁହେଁ ଖୁସି ବାସିରେ ଗପ କରୁଥାନ୍ତି, ନାରୀ ଦୁହେଁ ତୂନୀ ହୋଇ ଶୁଣୁଥାନ୍ତି । ତା'ପରେ ମିଷ୍ଟର୍ ଶେନ୍ ସ୍ଥିର କଲେ, ଯିବା ବେଳ ହେଲା । ସେ ଉଠି ଠିଆ ହେଲେ , ମିସ୍ ଲି ମଧ୍ୟ ଉଠିଲେ ।

ମିଷ୍ଟର୍ ଶେନ୍ କହିଲେ, "ମିଷ୍ଟର୍ ଓ ମିସେସ୍ ହ୍ୱଣ୍ଟର୍, ଆପଣଙ୍କ ସଦ୍‌ଭାବ ଯୋଗୁଁ ଆମେ ଦୁହେଁ ବିଶେଷ ପ୍ରୀତ ହୋଇଛୁ । ଆମେରିକାନ୍ ଗୃହସ୍ଥଙ୍କ ଗୃହସ୍ଥାଳୀ କିପରି ତାହା ଆମେ ଜାଣିଲୁ । ଆପଣଙ୍କ କୃପା କରି ରନ୍ଧନଶାଳା ବ୍ୟତୀତ ଆଉ କେତେ ସୁନ୍ଦର କଥା ଏଠାରେ ଦେଖିଲୁ । ଆପଣ ଦୁହିଁଙ୍କୁ ଆମର ଅଶେଷ ଧନ୍ୟବାଦ । ହୁଏତ ଆଉ ଥରେ କେବେ ଦେଖା ହେବ । ଆମ ଦୁହିଁଙ୍କର ତ ଏ ଦେଶରେ ନିଜର ବୋଲି ରହିବାର ଜାଗା ନାହିଁ ।"

ପୂର୍ଣ୍ଣ ଆନ୍ତରିକତା ସହକାରେ ଟେଡ୍ କହିଲେ, "ଏଇଠିକି ପୁଣି ଆସିବେ"—ସତେ ଯେପରି ସେ ମନେ କରୁଥିଲେ, ପ୍ରଥମେ ଯେଉଁ ଦିନ ତାଙ୍କୁ ଏ ଘର ଦିଆଗଲା ସେଦିନ ଏହା ଯେପରି ଚିରସ୍ଥାୟୀ ରହିବ ବୋଲି ସେ କଳ୍ପନା କରୁଥିଲେ, ଆଜି ବି ସେହିପରି କଳ୍ପନା କରୁଛନ୍ତି— "ଏ ଘରର ଦ୍ୱାର ଆପଣଙ୍କ ପାଇଁ ସର୍ବଦା ଉନ୍ମୁକ୍ତ ରହିବ । ପୁଣି ବଜାର କରିବାକୁ ଯଦି ସେ ପଟକୁ ଆସି ମୋର ନିଃସଙ୍ଗ ବାତାୟନରେ ଆଲୋକ ଦେଖିବେ, ତେବେ ନିଶ୍ଚୟ ଟିକିଏ ଆସି କୁଶଳ ପ୍ରଶ୍ନ କରିଯିବେ ।"

ସ୍ୟୁ କହିଲେ, "ଆପଣମାନଙ୍କ ଆଗମନ ଆମ ଦୁହିଁଙ୍କୁ ବିଶେଷ ଆନନ୍ଦ ଦେଇଛି ।" ସେ ଖୁବ୍ ମଧୁର ଭାବରେ ସ୍ମିତହାସ୍ୟ କଲେ । କ୍ଷୁଦ୍ର ଦେଦୀପ୍ୟମାନ ବତୀ-ଝାଡ଼ ତଳେ ତାଙ୍କର ସ୍ୱର୍ଣ୍ଣାଭ ରକ୍ତକେଶ ଚକ୍ ଚକ୍ କରୁଥାଏ । କିନ୍ତୁ ତାଙ୍କର ଏ ବାହ୍ୟ ମଧୁରତା ଭିତରେ, ଅନ୍ତରରେ କି ଭାବ ଅଛି ତାହା ଠଉରାଇବା ପାଇଁ ମିସ୍ ଲି ସମର୍ଥ ନଥିଲେ ।

ମିସ୍ ଲି ନମ୍ର ଭାବରେ କହିଲେ, 'ବିଦାୟ, ମିସେସ୍ ହ୍ୱଣ୍ଟର୍ । ଆପଣଙ୍କ ସଙ୍ଗ ଲାଭ କରି ମୁଁ ଅନେକ କିଛି ଶିଖିଛି । ଆପଣଙ୍କୁ ମୁଁ କେବେ ପାସୋରି ପାରିବି ନାହିଁ । ପ୍ରତିଦିନ ମୁଁ ଆପଣଙ୍କ କଥା

କରୁଥିବ, ଆପଣଙ୍କର ମଙ୍ଗଳ କାମନା କରୁଥିବ । ଯଦି ମୋଦ୍ୱାରା ଆପଣଙ୍କର କିଛି କାର୍ଯ୍ୟ ହୋଇପାରେ, ତେବେ ସ୍ୱଚ୍ଛନ୍ଦରେ ମୋତେ ଆଦେଶ ଦେବେ । ତାହା ମୁଁ ଅନୁଗ୍ରହ ବୋଲି ମନେ କରିବି । ମୁଁ ମୋର ଟେଲିଫୋନ୍ ନମ୍ବରଟା ଆପଣଙ୍କୁ ଦେଇଯାଉଛି ।"

ମିସ୍ ଲି ନିଜ ହାତବ୍ୟାଗ୍‌ରୁ ଖଣ୍ଡିଏ ଗ୍ରେଟ କାର୍ଡ ବାହାର କରି, ଟେଲିଫୋନ୍ ନମ୍ବର ଲେଖିଦେଲେ—ମିସେସ୍ ଫେଲ୍‌ଡ୍‌ମ୍ୟାନଙ୍କ ନମ୍ବର—ସ୍ୟୁ କାର୍ଡଟି ତାଙ୍କ ହାତରୁ ନେଲେ । ଏହାପରେ ବିଦାୟ ନେବା ପରେ ଟେଡ଼୍ ଅଣି ସେ ଦୁହିଁଙ୍କୁ ନିକଟବର୍ତ୍ତୀ ରେଳଷ୍ଟେସନ୍‌ରେ ଛାଡ଼ି ଦେଇ ଗଲେ ।

ନ୍ୟୁୟର୍କ-ଗାମୀ ଟ୍ରେନ୍‌ରେ ମିଷ୍ଟର୍ ଶେନ୍ ଓ ମିଷ୍ଟର୍ ଲି ନିଜନିଜର ଅନୁଭୂତ ବିଷୟରେ କଥାବାର୍ତ୍ତା ଆରମ୍ଭ କଲେ ।

ମିଷ୍ଟର୍ ଶେନ୍ ଗାଡ଼ି ଶବ୍ଦରେ ଶୁଣାଯିବା ଭଳି ଚଡ଼ା ସ୍ୱରରେ କହିଲେ, "ସେଇ ସ୍ୟୁର ପ୍ରକୃତି ଯୋଗୁଁ ସବୁ ଅଶାନ୍ତି ।" କହିଲା ବେଳେ ସେ ନିଜ ଓଠ ମିସ୍ ଲି'ଙ୍କ କାନର ଖୁବ୍ ପାଖକୁ ନେଇଥିଲେ । କାନର ମନୋହର ଆକୃତି ଓ ମୁକ୍ତାଭ ରଙ୍ଗ ପ୍ରଥମ ହୋଇ ତାଙ୍କ ଆଖିରେ ପଡ଼ିଲା । କାନ ବେଶୀ ବଡ଼ ହେଲେ ବା ତାହାର କୁଣ୍ଡଳୀ ସୁଠାମ ନହେଲେ ସ୍ତ୍ରୀ ଲୋକର ସୌନ୍ଦର୍ଯ୍ୟ ବ୍ୟାହତ ହୋଇ ଥାଏ ; ସୁନ୍ଦର କାନରୁ ଜଣାଯାଏ, ବୁଦ୍ଧିମାନ୍ ପଣ ଓ ସମ୍ବେଦନଶୀଳତା । ପୁଣି, କର୍ଣ୍ଣବଲ୍ଲୀଯୋଡ଼ିକ ଯଦି ପୂରା ଗୋଲ ନ ହୋଇ ସାମାନ୍ୟ ଲମ୍ବିଆ ହୋଇଥାନ୍ତି ତେବେ ନୈତିକ ଉତ୍କର୍ଷ ଥିବାର ଜଣାପଡ଼େ । ମିଷ୍ଟର୍ ଶେନ୍ ଦେଖି ବଡ଼ ଖୁସି ହେଲେ—ଏସବୁ ସୁଲକ୍ଷଣଗୁଡ଼ିକ ମିସ୍ ଲି'ଙ୍କ କାନରେ ଅଛି । ତା'ପରେ କାନରୁ ଗଣ୍ଡକୁ ଆଖି ଗଲା । ଆକୃତିଟି କେଡ଼େ ସୁନ୍ଦର ; ଦେହର ବର୍ଣ୍ଣ ବି ପାଣ୍ଡୁର । ତାଙ୍କର ମନେ ହେଲା ଖାଲି କଳାକାର ଭାବରେ ନୁହେଁ ସୁନ୍ଦରୀ ଭାବରେ ବି ମିସ୍ ଲି'ଙ୍କର ଖ୍ୟାତି ହେବାର କଥା ।

ଏ ଭାବନାକୁ ଚାପି ଦେବାପାଇଁ ତରତରରେ ସେ ଆରମ୍ଭ କଲେ, "ମିସେସ୍ ହଣ୍ଟର୍‌ଙ୍କର ଯେ ଚିଡ଼ଚିଡ଼ା ପ୍ରକୃତି, ଏହା ଆଖିକୁ ଦିଶୁଛି । ତାଙ୍କ ଆଖିରୁ ଏହା ପରିଷ୍କାର । ତାଙ୍କ କେଶରୁ ଫିଟି ପଡ଼ୁଛି, ଲକ୍ଷ୍ୟ କରିଛ ନା, କପରି ତାଙ୍କ କେଶ ମୁଣ୍ଡ ଉପରେ ଠିକ ଭାବରେ ନରହି ଫୁର୍‌ଫୁର୍

ଜଡ଼ୁଥାଏ ! ଏ ସବୁ ଲକ୍ଷଣର ଗୁରୁତ୍ୱ ଖୁବ୍ ବେଶୀ । ଚିଡ଼ା ପ୍ରକୃତି ଅପେକ୍ଷା ଅନ୍ୟ କୌଣସି ଦୁର୍ଗୁଣ ମନୁଷ୍ୟର ସୁଖ ନଷ୍ଟ କରିବାର ଗୁରୁତର କାରଣ ନୁହନ୍ତି । ସ୍ତ୍ରୀ ଲୋକଠାରେ ଏଭଳି ପ୍ରକୃତି ଏକାବେଳକେ ଅସହ୍ୟ ।"

ମିସ୍ କ୍ଲି ହଠାତ୍ ଉତ୍ତେଜିତ ହୋଇ କହି ପକାଇଲେ, "ପୁରୁଷ-ଠାରେ ବି । ମିସେସ୍ ହଣ୍ଟର ମୋତେ କହିଛନ୍ତି, ତାଙ୍କ ସ୍ୱାମୀଙ୍କର ଏଇଭଳି ପ୍ରକୃତି । ଆମେରିକାନ୍ ଜାତି ହୋଇଥିବାରୁ ଏଭଳି ପ୍ରକୃତି ଆଗରେ ମୁଣ୍ଡ ନୁଆଁଇବାକୁ ସେ ଆବଶ୍ୟକ ମନେ କରୁନାହାନ୍ତି ।"

ମିଷ୍ଟର୍ ଶେନ୍ ସମସ୍ୟାର ଫଇସଲା କରିଦେଇ କହିଲେ, "ତେବେ ତ ନିରାଶାର କଥା ।" ଜଣଙ୍କୁ ମୁଣ୍ଡ ପୋତି ଦେବାକୁ ହେବ; ପୁରୁଷ ମୁଣ୍ଡ-ପୋତିବାର ସମ୍ଭାବନା କମ୍ ।"

ଏଥି ଉପରେ ମିସ୍ କ୍ଲିଙ୍କର ଯେଉଁ ଜବାବ୍ ମିଳିଲା ସେଥିରେ ମିଷ୍ଟର୍ ଶେନ୍ ଆଶ୍ଚର୍ଯ୍ୟ ହୋଇଗଲେ । ମିସ୍ କ୍ଲି' ମୁହଁ ପୂରା ବୁଲାଇ ତାଙ୍କ ମୁହଁ ସକାଶରେ ଆଖି ରଖି କହିଲେ; ଆପଣ କେଡ଼େ ପୁରୁଣା କାଳିଆ ମଣିଷ । ବଡ଼ ସୁଖର କଥା, ଆପଣ ବିଭା ହୋଇ ନାହାନ୍ତି, ଆପଣଙ୍କର ପତ୍ନୀ ବିଚାରୀ ରକ୍ଷା ପାଇଯାଇଛି ।"

ଏତେବେଳେ ନିଜ ପକ୍ଷ ସମର୍ଥନ କରିବାକୁ ସେ ବାଧ୍ୟ ବୋଲି ମିଷ୍ଟର୍ ଶେନ୍ ମନେକଲେ ; ଆତ୍ମସମ୍ମାନସୂଚକ ସ୍ୱରରେ କହିଲେ, "ମୁଁ ବିଭାହେଲା ବେଳେ ଏପରି ଗୋଟିଏ ସ୍ତ୍ରୀଲୋକକୁ ବିଭା ହେବି, ଯେ ନିଜ ପ୍ରକୃତିକୁ ସଂଯତ ରଖି ଜାଣେ ।"

ଏ ବାକ୍ୟଯୁଦ୍ଧ ପରେ ଦୁହେଁଯାକ ପାଟି ନ ଫିଟାଇ ବସିଲେ । ଷ୍ଟେସନ୍‌ରେ ଗାଡ଼ି ଛିଡ଼ିଲା ; ଦୁହେଁ ଓହ୍ଲାଇ ନିଜ ନିଜ ବସାକୁ ଗଲେ, ଖୁବ୍ ମାମୁଲି ଧରଣରେ ବିଦାୟ ସମ୍ଭାଷଣ କରି । ମିଷ୍ଟର୍ ଶେନ୍ ଫେରିଲେ ନିଜର ଜନବହୁଳ ଅଥଚ ନିସ୍ସଙ୍ଗିଆ କୋଠରୀକୁ ; ମିସ୍ କ୍ଲି ଏକୁଟିଆ ଚାଲିଲେ ମିସେସ୍ ଫେଲ୍‌ଡ଼ମ୍ୟାନଙ୍କ ଘର ଆଡ଼କୁ । ବଡ଼ ଅପ୍ରତ୍ୟାଶିତଭାବେ ହଠାତ୍ ଉଭୟଙ୍କ ଭିତରେ ସମ୍ପର୍କ ଏପରି ବିଚ୍ଛିନ୍ନ ହୋଇ ଯିବାର ଦେଖି ଉଭୟେ ବାଉଳା ହୋଇଗଲେ । କିନ୍ତୁ ମତଭେଦଟା ତକ୍ଷଣେ ହୋଇଥିଲେ ବି, ଗୋଟାଏ ମୌଳିକ କଥା ଉପରେ । କେହି ମେଳାମିଶା ପାଇଁ ଆଗେଇଲେ ନାହିଁ । ଆଉ ଥରେ ଦେଖାହେବ କି ନାହିଁ ସେ ବିଷୟରେ ନିଶ୍ଚିତତା କ'ଣ ?

ମିସ୍ ଲି’ଙ୍କୁ ଏ ବିଚ୍ଛେଦ ଖୁବ୍ ବାଧୁଥାନ୍ତା; କିନ୍ତୁ ହାତରେ ଥାଏ କାମ-ଅନ୍ଧକାରାବୃତ କ୍ଷୁଦ୍ର ଗିର୍ଜା ଓ ଏକମାତ୍ର ବାତାୟନବିଶିଷ୍ଟ ପ୍ରାସାଦ ଚିତ୍ର ଯେ ଆଙ୍କିବାକୁ ହେବ । ତହିଁ ଆରଦିନ ସକାଳ ସୁଦ୍ଧା ସେ ଚିତ୍ରଟି ସାରିଦେଲେ ଓ ତା’କୁ ଯତ୍ନ ସହକାରେ କାଗଜରେ ଗୁଡ଼ାଇ ‘୫୭ଶ’ ଷ୍ଟ୍ରୀଟ୍‌ର ଚିତ୍ରାଳୟରେ ପହଞ୍ଚିଲେ । ଗଲାବେଳେ ସେ ଜାତିସଂଘ ପ୍ରାସାଦ ଉପରେ ଆଖି ପକାଇ ଗଲେ; ଚିତ୍ରାଳୟର ଲୋକଟି କହିଥିଲା ଏହାର ଗୋଟିଏ ଚିତ୍ର ଆଙ୍କିବାକୁ । ସକାଳର ମେଘନିର୍ମୁକ୍ତ ଆକାଶର ସୂର୍ଯ୍ୟାଲୋକରେ ପ୍ରାସାଦଟି ଖୁବ୍ ଉଚ୍ଚା, କିନ୍ତୁ ପ୍ରାଣହୀନ ଜଣାଗଲା । ଏହାର ଚିତ୍ର ଆଙ୍କିବା ତାଙ୍କ ପକ୍ଷେ ଅସମ୍ଭବ । ଏତେ ସୁନ୍ଦର ସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ—ପୁଣି ନଗର, ଦୁନିଆଁଯାକର—ସେଥିରେ ଥାଇ ବି ଆମେରିକାନ୍ ଦମ୍ପତି ଝଗଡ଼ା କରି ଯାଉଛନ୍ତି; ‘ନଗର ବୋଲି ଘର ଖଣ୍ଡେ ନଥିବା ପ୍ରବାସୀ ଘ୍ଲିନକ୍ ପୁରୁଷ ଓ ନାରୀଙ୍କ ଭିତରେ ବି ଝଗଡ଼ା ଲାଗିଲା—ଏପରି ସ୍ଥଳରେ ଜାତି ସଂଘର ଏ ଘରୁ କି ପ୍ରେରଣା ନେଇ ଚିତ୍ର ଆଙ୍କିବେ ? ଶକ୍ତ କାମ !

ଏଭଳି ଏକ ସମସ୍ୟା ହୃଦୟରେ ଗଭୀର ଆଲୋଡ଼ନ ସୃଷ୍ଟି କରିବା ଅବସ୍ଥାରେ ସେ ଚିତ୍ରାଳୟରେ ପ୍ରବେଶ କଲେ । ପୂର୍ବେ ଯେଉଁ ଯୁବକଙ୍କୁ ଏଠାରେ ଦେଖି ଥିଲେ, ଆଜି ବି ସେଇ ବସିଛନ୍ତି, ଗୋଟାଏ କଦଳୀ ଖାଉଛନ୍ତି ।

ଯୁବକ ୟାଙ୍କୁ ଦେଖିବାମାନେ ଖୁସି ହୋଇ କହିଲେ, “ଆପଣ ଗୋଟିଏ ନିଅନ୍ତୁ ।”

ମିସ୍ ଲି କହିଲେ, “ଧନ୍ୟବାଦ ।” ଆଜି କେବେ ଖାଇବାକୁ ମିଳିବ ଅନିଶ୍ଚିତ, ତେଣୁ ସେ ମନକଲେ ଯାହା ମିଳୁଛି ଗ୍ରହଣ କରିବା ବୁଦ୍ଧିମାନ୍‌ର କାର୍ଯ୍ୟ ହେବ । ସେ ତିନୋଟି କଦଳୀ ଖାଇଲେ; ପ୍ରତିଥର ତାଙ୍କ ଶ୍ରେଷ୍ଠ ପାଟିରେ ଧନ୍ୟବାଦ ଧନ୍ୟବାଦ କହୁଥାନ୍ତି । ଯୁବକଟି ଚକିତ ହୋଇ ତାଙ୍କ ଆଡ଼କୁ ଚାହିଁଥାଏ ।

ଯୁବକ କହିଲେ, “ଏ ତୁମେ ତ ଭୋକିଲା ଥିବା ପରି ଜଣା ପଡ଼ୁଛି ? ନୁହେଁ ?”

ମିସ୍ ଲି କଥା ଫିଟାଇ କହିବେ ବୋଲି ସ୍ଥିର କଲେ, କହିଲେ,

"ଏ ଚିତ୍ରଟି ଯେତେବେଳେ ବିକି ହେବ ସେତିକବେଳେ ଯାଇ ମୁଁ ପେଟପୂରା ଖାଇବାକୁ ପାଇବି ; ତା' ପୂର୍ବରୁ ନୁହେଁ ।"

ଏହା କହି ସେ ନିଜର ଚିତ୍ରଟି ଫିଟାଇଲେ । ଚିତ୍ରାଙ୍କନରୁ ଯୁବକ କ୍ଷୁଦ୍ର କ୍ଷୁଦ୍ର କ୍ଷୁଦ୍ରଆଣୀ କଣ୍ଟା ବୁଢ଼ା ଆଙ୍ଗୁଠି ଟିପରେ ଚାପିଦେଇ ଚିତ୍ରଟି କାନ୍ଥରେ ଲଟକାଇ ଦେଲେ ଏବଂ ଟିକିଏ ଦୂରକୁ ହଟିଯାଇ ତା'କୁ ଚାହିଁଲେ ।

ସେ ଦୃଢ଼ ମତ ଶୁଣାଇ ଦେଲେ, "ଏଥର ଏ ଯେଉଁ ଚିତ୍ର ଆଣିଛ, ସେ ଗୋଟିଏ ପ୍ରକାର ହୋଇଛି । ଅବଶ୍ୟ ସମଗ୍ର ଦୃଶ୍ୟଟି ଗ୍ରାଇନିଜ୍ ହୋଇଯାଇଛି । ତଥାପି ଏହାକୁ ଏଠାଲୋକେ ସୁନ୍ଦର ବୋଲି କହିପାରନ୍ତି । ମୋ ପାଖରେ ଏହାକୁ ରଖିଯାଅ, ମୋର ଆଶା କେହି ହେଲେ ଏହାକୁ କିଣିବାକୁ ଚାହିବେ । ତୁମ ଠିକଣା ଲେଖି ଦେଇ ଯାଇଥାଅ; ମୁଁ ଖବର ଦେବି ।"

ମିସ୍ ଲି ଶଙ୍କି କହିଲେ, "ଆଚ୍ଛା, କେତେ ଟଙ୍କାରେ ଆପଣ ଏହାକୁ ବିକି ପାରିବେ ବୋଲି ବିଚାରୁଛନ୍ତି ?" ଟଙ୍କା କଥା ପକାଇବାକୁ ତାଙ୍କୁ ଘୃଣା ଲାଗୁଥାଏ, କିନ୍ତୁ ତାଙ୍କର ଆଉ କିଏ ଅଛି ଯେ ତାଙ୍କ ପାଇଁ ଏ କାମଟା କରିବ ?

ଯୁବକ କହିଲେ, "ପଚିଶ ଡଲାର୍ । ବେଶୀ ହୁଅନ୍ତା ଯେ, ତୁମେ ପରା ଏ ପର୍ଯ୍ୟନ୍ତ ଅଜଣା ଅଶୁଣା ।"

ଯେତେ ମଧୁର ସ୍ୱର ହୋଇପାରେ ସେତେ ମଧୁର ସ୍ୱରରେ ମିସ୍ ଲି କହିଲେ, "ହଉ, ଏଖଣ୍ଡି ମୋପାଇଁ ବିକାଇ ଦିଅନ୍ତୁ ।" ସ୍ୱଦେଶରେ ତାଙ୍କ ଚିତ୍ର ଖଣ୍ଡିଏ ଖଣ୍ଡିଏ ଏହାର କୋଡ଼ିଏ ଗୁଣ ଦାମରେ ବିକା ହୋଇ-ଥିଲା ।

ଯୁବକ ଡେସ୍କ୍‌ର ଗୋଟାଏ ଖୋପ ଖୋଲିଲେ । "ହେଇଟି, ତୁମର ତ ଖାଇବାକୁ ପଇସା ନାହିଁ, ଏ ପାଞ୍ଚ ଡଲାର୍ ନେଇଥାଅ; ଚିତ୍ରର ଦାମରୁ କଟିବ ।" ତାଙ୍କର ପୂର୍ବ ଢଙ୍ଗ ସବୁ ତେଜି ଉଠିଲେ, ଏ ଟଙ୍କାକୁ ପ୍ରତ୍ୟାଖ୍ୟାନ କରିବାକୁ; କିନ୍ତୁ କିଛି ନକହି ସେ ଟଙ୍କାତକ ଧରି କହିଲେ, "ଆପଣଙ୍କୁ ଧନ୍ୟବାଦ ।" ପାଞ୍ଚ ଡଲାର୍‌ର ନୋଟ୍‌କୁ ତଳନ୍ତ ହାତରେ ମୁଠାଇ ସେ ବିଦାୟ ନେଲେ ।

ନଗରୀ ଜନମାନବରେ ଭରପୂର ; ହେଲେହେଁ ଯେ ସେଥିରେ ଜଣକୁ ମାତ୍ର ଚିହ୍ନେ, ତା' ପକ୍ଷରେ ନଗରୀଟି କେତେ ଶ୍ମଶାନପରି ତାହା

ଅନ୍ୟ ପକ୍ଷରେ କଳ୍ପନା କରିବା ସହଜ ନୁହେଁ । ଯେଉଁ ଜଣକ ଚିହ୍ନା ଲୋକ ତାଙ୍କ ପାଖକୁ ଯିବାକୁ ମନର ଗର୍ବ ପ୍ରସ୍ତୁତ ନୁହେଁ । ବୁଏତ ଆଉ ଥରେ ମିଷ୍ଟର୍ ଶେନ୍‌ଙ୍କୁ ଦେଖିବାକୁ ବି ପାଇବେ ନାହିଁ—ଏକଥା ମନରେ ହେବାମାତ୍ରେ ମିଧ୍ ଲି ଭୟରେ ଥରିଗଲେ । ଏତେ ବଡ଼ ସହରରେ ମିଷ୍ଟର୍ ଶେନ୍ ଜଣେ ମାତ୍ର ଲୋକ, ଯାହାଙ୍କୁ କି ସେ ବିଶ୍ୱାସ କରିପାରନ୍ତି । ତାଙ୍କ ଦେଶର ଯେଉଁ ଧନୀ ଲୋକେ ଏଠାରେ ନିର୍ବାସିତ ହୋଇ ଅଛନ୍ତି, ସେମାନେ ତାଙ୍କ ପାଖରେ ପଇସାଟିଏ ନାହିଁ ଶୁଣିଲେ, ତାଙ୍କୁ ଘୃଣା କରିବେ । ଅବଶ୍ୟ ଟେଡ଼୍ ହଣ୍ଟର ଅଛନ୍ତି । ନିର୍ଭୟରେ ତାଙ୍କ ପାଖକୁ ଯାଇ କହିହେବ ପରା, "ମୋର କେତୋଟି ଚିତ୍ର ବିକ୍ରୀ ହେବାର ଅଛି । କିନ୍ତୁ ଆଜି ମୋ ପାଖେ—।"

ମିସେସ୍ ଫେଲ୍‌ଡ଼୍‌ମ୍ୟାନଙ୍କୁ ହାତ ପତାଇବା ଅସମ୍ଭବ । ତାଙ୍କର ତାଙ୍କ ପାଉଣା ଭଡ଼ା ବିଷୟରେ ସବୁବେଳେ ଚିନ୍ତା । ମିସ୍ ଲି ବିଚାରିଲେ, ଆହା ବିଚାରି ମିସେସ୍ ଫେଲ୍‌ଡ଼୍ ମ୍ୟାନ୍ ! ତାଙ୍କୁ ତିଳେମାତ୍ର ଦୋଷ ଦେଇ ହେବ ନାହିଁ । ଭଡ଼ା ଯଦି ଆଦାୟ ନହେବ; ତେବେ ସେ ବି ତାଙ୍କର ପରି ଶୋକରେ ମରିବେ । ମିସ୍ ଲି ଖୁବ୍ ଅଳ୍ପ ଅଳ୍ପ କରି ଖାଇଲେ । କିନ୍ତୁ ଆସ୍ତେ ଆସ୍ତେ ପାଞ୍ଚୋଟିଯାକ ଡଲାର୍ ଖର୍ଚ୍ଚ ହୋଇଗଲା । ତଥାପି ଚିତ୍ର ବିକ୍ରୀର ନାମ ନାହିଁ ।

ଆତଙ୍କିତ ହୋଇ ସେ ନିକଟବର୍ତ୍ତୀ ଗୋଟିଏ ଔଷଧ ଦୋକାନକୁ ଗଲେ ଓ ପାଖରେ ଥିବା ଶେଷ ମୁଦ୍ରାଟି ଖର୍ଚ୍ଚ କରିଦେଲେ ଟେଲିଫୋନ୍ କରିବାକୁ—ସେଇ ଏକମାତ୍ର ନାରୀଟି ପାଖକୁ, ଯାହା ଆଗରେ ବଡ଼ ପଣିଆ ଦେଖାଇବାର କୌଣସି ପ୍ରୟୋଜନ ନଥିଲା । ସ୍ୟୁ ହଣ୍ଟର ତ ସେ କିଏ ବୋଲି କିଛି ଜାଣେନାହିଁ । ମିସ୍ ଲି ଜଣେ ବିଖ୍ୟାତ ଚିତ୍ରକର, ତା' ପରିବାର ଚୀନ ଦେଶର ଗୋଟିଏ ପୁରୁଣା ଓ ପ୍ରସିଦ୍ଧ ପରିବାର—ଏ ସବୁଥିରେ ସ୍ୟୁର ଯାଏ କେତେ ଆସେ କେତେ ? ଗୃହିନା ବିଷୟରେ ତା'କୁ କିଛି ଜଣାନାହିଁ । ସେ ଜଣେ ଆମେରିକାନ୍ ମାତ୍ର ; ମେଳାପୀ, ଖୋଲାଲୋକ, ଯଦିଓ ପ୍ରକୃତ ଟିକିଏ ଖରୁଆ ।

'ହେଲୋ ?' ସ୍ୟୁ ଙ୍କର ସ୍ୱର ମିସ୍ ଲି'ଙ୍କର କାନରେ ବାଜିଲା—ଉଚ୍ଚ-ସ୍ୱର, ଅଧୀରତାର ଧାସ ଥାଏ ।

"ମିସେସ୍ ହାଣ୍ଟର୍ ! ମୁଁ ମିସ୍ ଲି କହୁଛି ।"

ସିଆଡ଼ୁ ଶବ୍ଦ ଆସିଲା, 'ଏଁ ! ହେଲୋ, ହେଲୋ ! କମିତି ଅଛ ? ମୁଁ ଭାବୁଥିଲି, ଟେଡ୍ ବୋଲି ! ହଁ, ତୁମେ ପରା ମୋତେ ସୁ୍ୟ ବୋଲି ଡାକିବା କଥା । ମୁଁ ତୁମକୁ ମେଇ ବୋଲି କହିବି ।'

ମିସ୍ ଲି ଆନନ୍ଦରେ କହିଲେ, "କେଡ଼େ ଭଲ କଥା । ମୋତେ ମେଇ ବୋଲି ଡାକିଲେ ସୁଖ ଲାଗେ । ହଁ, ମିସେସ୍ – ଭୁଲ ହୋଇଗଲା କ୍ଷମା କରିବ—ସୁ୍ୟ ! କ'ଣ କାର୍ଯ୍ୟବ୍ୟସ୍ତ ଅଛ ?"

ସୁ୍ୟ ଠିକଏ ଥାଆ ମାମା ହୋଇ କହିଲେ; "ମୁଁ ବାଣ୍ଡିଲୁ ବାନ୍ଧୁଥିଲି ।"

"କେଉଁଠିକି ଯାଉଛ, କହିବ କି ?"

"ଏ ପର୍ଯ୍ୟନ୍ତ କିଛି ଠିକ୍ କରିନାହିଁ । ହେଉଛି ତ ବାସନ ମଜା ସାରି ଉଠୁଛି ।"

"ତମେ କ'ଣ ଘରୁ କୁଆଡ଼େ ଯିବା ଭଲ ବୋଲି ଭାବୁଥିଲ ପରା !"

"ହଁ, ସେଇଭଳି କିଛି ।"

ମିସ୍ ଲି ଦୀର୍ଘ ନିଃଶ୍ୱାସ ପକାଇ କହିଲେ, "ଓଃ ! ତୁମର ବି ଉଦ୍‌ବେଗ ବେଳ ! ମୁଁ ବି ବଡ଼ ଉଦ୍‌ବେଗରେ ଅଛି ।"

ସୁ୍ୟଙ୍କ ସ୍ୱରରୁ ଜଣା ପଡ଼ିଲା, ସେ ଆଶ୍ଚର୍ଯ୍ୟ ହୋଇଗଲେ, "ତୁମର ବି ଉଦ୍‌ବେଗ ! ମୋର ତ ମନେ ହେଉଥିଲା, ତୁମେ କେବେବେଳେ ଉଦ୍‌ବିଗ୍ନ ହେଉ ନଥିବ; କେତେବେଳେ କ'ଣ କରିବାକୁ ହେବ ତୁମକୁ ଜଣା ବୋଲି, ରବିବାର ଦିନ ତୁମ କଥାରୁ ଜଣାପଡ଼ୁଥିଲା !"

ମିସ୍ ଲି ସାମାନ୍ୟ ଚିଁ ଚିଁଆ ସ୍ୱରରେ କହିଲେ, "ନାଇଁ ମ । କ'ଣ କରିବି ମୁଁ କିଛି ଠିକ୍ କରି ପାରୁନାହିଁ । ମୁଁ ଏକାବେଳକେ ହତାଶ ହୋଇ ପଡ଼ୁଛି !"

ବିଷର୍ଣ୍ଣ ହୋଇ ସୁ୍ୟ କହିଲେ, "ତେବେ ଆମେ ଦୁହେଁ ଯାକ ଏକା ଡଙ୍ଗାରେ । ମୁଁ ଯାଉଛି ଗ୍ରାଣ୍ଡ୍ ସେଣ୍ଟ୍ରାଲ ଇନ୍‌ଫର୍‌ମେସନ୍‌ରେ ତୁମକୁ ଭେଟିବି । ବାର ବଜେ ।"

ମିସ୍ ଲି କହିଲେ, "ହଉ, ଧନ୍ୟବାଦ"

ଟେଲିଫୋନ୍-ଅପରେଟର୍‌ଙ୍କ ନିର୍ମମ ସ୍ୱର ଶୁଣାଗଲା, "ତିନିମିନିଟ୍ ଖତମ୍" ଲାଇନ୍ କଟିଲା । ଯାହାହେଉ, ସାକ୍ଷାତ ହେବାର ଗୋଟାଏ ସ୍ଥାନ

ଓ ସମସ୍ତ ନିର୍ଦ୍ଦିଷ୍ଟ ହୋଇଗଲା । ଜଣେ ତ ହେଲେ ଅଛି, ଯେ ତାଙ୍କୁ ବଞ୍ଚାଇପାରିବ, ଏତେବେଳେ କ'ଣ କରିବା ଉଚିତ । ଏ ବିଚିତ୍ର ସହରରେ ସେ ଏକାକୀ ନୁହେଁ, ତା'ର ଜଣେ ସଙ୍ଗିମୀ ଅଛି । ସେ ତାଙ୍କୁ ଭଲ କରି ଜାଣେ ନାହିଁ, ତେଣୁ ତା' ଆଗରେ ଗର୍ବ ଦେଖାଇବାର କାରଣ ବି ନାହିଁ ।

... ...

ସ୍ୟୁ ଆସି ପହଞ୍ଚିବା ମାତ୍ରେ କହିଲେ, "ମୁଁ ଶେଷରେ ଆଉଟ୍ ପାଉଟ୍ ହେଉଛି ।" ସେ ବେଶ୍ ପ୍ରଫୁଲ୍ଲ ଓ ସୁନ୍ଦର ଦିଶୁଥାନ୍ତି; ପିନ୍ଧିଥାନ୍ତି ଗୋଟିଏ ଉଜ୍ଜ୍ୱଳ ସବୁଜ ପୋଷାକ । ଲୋକ ଗହଳିରେ ସେ ଆସି ପଶିବା ମାତ୍ରେ ମିସ୍ ଲି'ଙ୍କ ଦୃଷ୍ଟି ତାଙ୍କ ଉପରେ ପଡ଼ିଥିଲା ।

ମିସ୍ ଲି କହିପକାଇଲେ, "ମୋତେ ବି ଭାରି ଭୋକ ।" ସ୍ୟୁଙ୍କ ସଙ୍ଗେ ଦେଖା ହେବାରେ ତାଙ୍କର ଉଲ୍ଲାସ ଆସିଥାଏ । ଜଣେ ହେଲେ ତାଙ୍କର ତ ବାନ୍ଧବୀ ଅଛନ୍ତି !

ସ୍ୟୁ ଶୁଣାଇ ଦେଲେ, "ଆଗ ଖାଇବା । ତୁମକୁ ଅଇଷ୍ଟର୍ ଭଲ ଲାଗେ ?"

ମିସ୍ ଲି ଠିକ୍ ଶୁଣି ନାହାନ୍ତି ବୋଲି ସନ୍ଦେହ କରି ଆବୃତ୍ତି କଲେ, "ଅଇଷ୍ଟର ?" ଏ ଶବ୍ଦଟା ତାଙ୍କୁ ନୂଆ ।

ସ୍ୟୁ କହିଲେ, "ଥାଉ, ଥାଉ, ମୁଁ ଅଇଷ୍ଟର୍ ଖାଉଛି, ତୁମକୁ ଯାହା ସୁଖ ତା' ଖାଇବ ।"

ରେସ୍ତୁରାଁରେ ସ୍ୟୁ ଖାଲିରେ ଛ'ଟା ଅଇଷ୍ଟର୍ ଖାଇଲେ, ଓ ଆଉ ଛ'ଟା ଗିଳେ ଦୁଧ ସାଙ୍ଗେ । ମିସ୍ ଲି ଘୁଷୁରି ମାଂସର ଦୁଇଟା ଚପ୍ ଆଗ୍ରହରେ ଚରଚର କରି ଖାଇଲେ, ନିଜର ପ୍ଲେଟ୍‌ଟି ପୂରା ପୋଛିପାଛି । ତା' ପରେ ଦୁହେଁ ଆଇସ୍‌କ୍ରୀମ୍ ଖାଇଲେ । ଏ ପଦାର୍ଥଟି ସୁଖକରେ ବୋଲି ସେ ପୂର୍ବ ଅଭିଜ୍ଞତାରୁ ଶିଖିଥାନ୍ତି । ଟିନ୍‌ସିନ୍‌ଠାରେ ପ୍ରଥମେ ସେ ଆଇସ୍‌କ୍ରୀମ୍ ଚାଖିଥିଲେ, ଗୋଟିଏ ଭୋଜି ସଭାରେ ; ପ୍ରସିଦ୍ଧ କବି ସ୍ୟୁ ସେମାନଙ୍କୁ ସମ୍ମାନ ଦେଖାଇବାକୁ ହୋଇଥିଲା । ଜଣେ ଯୁଦ୍ଧସାମନ୍ତଙ୍କ ଆଧୁନିକା ଉପପତ୍ନୀ ତାଙ୍କ ବୃଦ୍ଧ ସ୍ୱାମୀଙ୍କୁ ଧରି ଏ ସଭାକୁ ଆସିଥିଲେ । ବୃଦ୍ଧ ସଂନ୍ତ୍ରସ୍ତ ହେଉଥାନ୍ତି ନୂଆଜିନିଷ ଚାଖିବାକୁ, ଆଧୁନିକା ତାଙ୍କୁ ବଳେଇ

କରି ଖୋଇଲେ । ବୃଦ୍ଧ ନିଜର ପ୍ରଶସ୍ତ ବକ୍ଷରେ ହାତମାରି ଗୁଣୁଗୁଣୁ କରି କହୁଥାନ୍ତି, "ଏଠାଟା କେଡ଼େ ଥଣ୍ଡା ଲାଗୁଛି ; ସତେ ବା ସେଠୁ ପ୍ରାଣ ଗୁଡ଼ା ଗଲଣି ।"

ମିସ୍ ଲି ଏ କଥାଟି ସ୍ୟୁଙ୍କୁ କହିଲେ, 'ଉପପତ୍ନୀ' ଓ 'ଯୁଦ୍ଧ-ସାମନ୍ତ' କ'ଣ ବୁଝାଇ ଦେଲେ । ସ୍ୟୁଙ୍କର ମନକୁ ଖୁବ୍ ପାଇଲା । ସେ କହିଲେ, "ବାଃ, ତୁମ ଦେଶରେ ସ୍ତ୍ରୀମାନେ ତାଙ୍କ ପତିଙ୍କୁ ଏଇପରି ସଂଶୋଧନ୍ତି ତେବେ ? ଆମ ଏଠି ସ୍ତ୍ରୀ ଚଳିବ ନାହିଁ । ଟେଡ୍ ଯଦି ଉପପତ୍ନୀ-ଚିନ୍ତା କରନ୍ତି ତେବେ ତାଙ୍କର ମୋର ସଂପର୍କରେ ଉପସଂହାର ହେବ । ମୁଁ ଏକଥା ସହିବି ନାହିଁ ।"

ଏ କଥାରେ ମିସ୍ ଲି ଉତ୍ସୁକ ହୋଇ କହିଲେ, "ଓଃ ! ତେବେ ଏ ପର୍ଯ୍ୟନ୍ତ ତାଙ୍କର ତୁମର ସଂପର୍କ ତୁଟିନାହିଁ ?"

ସ୍ୟୁ କହିଲେ, "କହିବାକୁ ଗଲେ ସଂପର୍କ ତୁଟିଲାଣି । ତୁମେ ଓ ତୁମ ବନ୍ଧୁ ସେଦିନ ଘରରେ ଆସିବା ପରେ ଆମ ଦୁହିଙ୍କର ଭାରି ଝଗଡ଼ା ହେଲା ଓ ଆମେ ଚିରଦିନ ପାଇଁ ବିଚ୍ଛିନ୍ନ ହେଲୁ ।"

ମିସ୍ ଲି ଟିକିଏ ଉଦ୍ବେଗର ସହିତ କହିଲେ, ମିଷ୍ଟର୍ ଶେନ୍ଙ୍କୁ ମୋ ବନ୍ଧୁ ବୋଲି କହିବେ ନାହିଁ । ତାଙ୍କର ମୋର ବି ଅପଡ଼ ହୋଇ ଗଲଣି ।"

ସ୍ୟୁ ଏକଥାରେ ବିଶ୍ୱାସ ନକରି କହିଲେ, "ନା, ନା, ଏହା ହୋଇ ନପାରେ । ସେଦିନ ମୋତେ ଏତେ ସଦୁପଦେଶ ଦେଉଥିଲ, ଏତେ ଦର୍ଶନ ଶାସ୍ତ୍ରର ତତ୍ତ୍ୱ ବୁଝାଉଥିଲ, ଆଉ ଆଜି ଯୁ !"

ମିସ୍ ଲି କଞ୍ଚିତ୍ ଦୁଃଖର ସହିତ କହିଲେ, "ମିଷ୍ଟର୍ ହଣ୍ଟର୍ ଓ ତୁମ ବିଷୟ ନେଇ ଆମର କଳି ଲାଗିଲା । ଶେନ୍ କହିଲେ, ତୁମ ପ୍ରକୃତି ଭଲ ନୁହେଁ, ମୁଁ କହିଲି ମିଷ୍ଟର୍ ହଣ୍ଟର୍ଙ୍କର । ତା'ପରେ ତ ଆମେ ଦୁହେଁ ବାଘୁଆ କୁକୁର ପରି ହୋଇଗଲୁଁ ।"

ସ୍ୟୁ ଖୁବ୍ ହସିଲେ; ହଠାତ୍ ପୁଣି ଗମ୍ଭୀର ହୋଇଗଲେ; କହିଲେ, "ଦେଖ ! ତୁମ କଳିକଜିଆ ପାଇଁ ମୁଁ ଦାୟିତ୍ୱ ନେବାକୁ ଚାହେଁ ନାହିଁ । ଯାହା ହେଉ ପଛେ, ତୁମକୁ ସାହାଯ୍ୟ କରିବାକୁ ମଣିଷ ଦରକାର । ଏଡ଼େ ସୁନ୍ଦର ବନ୍ଧୁଜଣଙ୍କୁ ଏଭଳି ଦୂରଛଡ଼ା କରିଦେବା ଚଳିବ ନାହିଁ ।"

ମିସ୍ ଲି ଲଜରେ କହିଲେ, "ସେଥିପାଇଁ ତ ତୁମକୁ ଡାକିଛି । ମୋର ବର୍ତ୍ତମାନ କଣ କରିବା ଉଚିତ କହ ।"

ସ୍ମିଥ୍ କହିଲେ, "ଏଠେଇ ବସି ଆମେ କଥାବାର୍ତ୍ତା ହୋଇ ପାରିବା ନାହିଁ । ଲୋକ ଆମର ଏ ସ୍ଥାନରେ ବସିବା ପାଇଁ ଚାହିଁ ରହିଛନ୍ତି; ପୁଣି—ଆଚ୍ଛା, ତୁମେ ରହୁଛ କେଉଁଠି ?"

ମିସ୍ ଲି ଅନିଚ୍ଛା ପ୍ରକାଶ କରି କହିଲେ, "ମୋ ବଖରାରେ ; କିନ୍ତୁ ତାହା ଅତି ସାନ ।"

ସ୍ମିଥ୍ କହିଲେ, "ସେଇଠିକୁ ଯିବା ।"

ସେ ଉଠିଲେ, ରେସ୍ତୁରାଁର ପାଉଣା ଦେଇଦେଲେ; ଦୁହେଁ ବାହାରକୁ ଗଲେ । ମିସ୍ ଲି ବର୍ତ୍ତମାନ କରନ୍ତୁ କ'ଣ ? ମିସେସ୍ ଫେଲ୍ଡ଼୍‌ମ୍ୟାନ କି ବ୍ୟବହାର କରିବେ କେଜାଣି ? ସେ ତ ସବୁ ଜାଣିବାକୁ ଚାହିଁବେ ! ଅତିଥି କିଏ ଆସିଛି ବୋଲି ଦେଖିବାକୁ ଆସିବେ ; ଏଣୁତେଣୁ ଗପି ଗୋଳମାଳ ସୃଷ୍ଟି କରିବେ । ସ୍ମିଥ୍ଙ୍କ, ଏତେ ସଦସ୍ୟ ଆମେରିକାନ୍ ରମଣୀଟିକି 'ମୋ କୋଠରୀକୁ ଆସନାହିଁ' ବୋଲି କିମିତି କହିବେ ? ସେ ବିଚାରିବେ, ସ୍ତ୍ରୀ ବୋଧହୁଏ କ'ଣ ଲୁଚେଇ ରଖିଛି ! ଅଗତ୍ୟା ସେଇ କୋଠରୀକୁ ହିଁ ଯିବାକୁ ପଡ଼ିବ ।

ମିସେସ୍ ଫେଲ୍ଡ଼୍‌ମ୍ୟାନଙ୍କ ଘର ପାଖ ହେଲାରୁ ମିସ୍ ଲି କହିଲେ, "ମୁଁ ଏଇଠି ରହୁଛି । ଦୁଃଖର କଥା, ତୁମକୁ ବସାଇଲା ଭଳି ଭଲ ଘର ମୋର ନାହିଁ । ଅବଶ୍ୟ ଚୀନରେ ମୋର ଘର ଏପରି ନୁହେଁ ବୋଲି କହିପାରେ । କିନ୍ତୁ ସେଠାକୁ ଫେରିବାକୁ ଆଉ ବାଟ ନାହିଁ ।"

ଦୁଆର ମୁହଁରେ ପହଞ୍ଚିବା ପୂର୍ବରୁ ମିସେସ୍ ଫେଲ୍ଡ଼୍‌ମ୍ୟାନ ବାହାରିଲେ । ପାହାଚ ଉପରୁ ସେ ଗର୍ଜନ କଲେ, "ମିସ୍ ଲି, ତୁମର ସେ ଭଦ୍ରଲୋକବନ୍ଧୁ ତୁମ ପାଇଁ ହେଇଟି ଏ ପୁଡ଼ିଆଟି ଦେଇ ଯାଇଛନ୍ତି । ତୁମେ ବାହାରକୁ ଯାଇଚ ବୋଲି ମୁଁ କହିଲି । ସେ କହିଲେ, ତୁମେ ଥିଲେ ବି ତୁମ ସଙ୍ଗେ ଦେଖା କରିବାକୁ ସେ ଚାହିଁ ନଥାନ୍ତେ; ଏ ପୁଡ଼ିଆଟି ତୁମେ ପାଇବ ଏତିକି ତାଙ୍କର ଦରକାର । ସ୍ତ୍ରୀ ତ କିମିତି ଗୋଟାଏ ବାସୁଛି ।"

ଗରମରେ ମିସ୍ ଲି କହିଲେ, "ଧନ୍ୟବାଦ, ମିସେସ୍ ଫେଲ୍ଡ଼୍‌ମ୍ୟାନ୍ !"

ପୃଷ୍ଠଆଚିର ବାସ୍ନା ବେଶ୍ ତୃପ୍ତିକର, ଅବଶ୍ୟ ସ୍ୟୁଙ୍କୁ ସେପରି ନ ହୋଇପାରେ । ଏ ପୃଷ୍ଠଆଚି ଝରକା ଆରପାଖେ ପନ୍ଦରେ ରଖିବାକୁ ହେବ । ତାଙ୍କ କୋଠରୀକୁ ସେ ଆସିବା ପୂର୍ବରୁ କେହିଜଣେ ଝରକାର ବାହାର ପନ୍ଦରେ କଣ୍ଟାମାରି ତାର ଜାଲଟିଏ ଲଗାଇ ଦେଇଛି ; ତେଣୁ ସେଠାରେ ଯାହା ଗୋଟିଏ ରଖିଲେ ବାହାର ଅଗଣାକୁ ପଡ଼ିଯିବ ନାହିଁ । ସେଇ ତାର ଜାଲରେ ଏ ପାର୍ସଲ୍‌ଟି ବେଶ୍ ରହିବ ।

ମିସେସ୍ ଫେଲ୍‌ଡ୍‌ମ୍ୟାନ୍ କହିଲେ, "ଆଲୋ ମା, ତୋ ସାଙ୍ଗକୁ ମୋତେ ଚିହ୍ନାଇଦେ ।"

ମିସ୍ ଲ ଲୌକିକ ଆଗ୍ରହ ଅନୁସାରେ କହିଲେ, "ମିସେସ୍ ହଣ୍ଟର୍, ସ୍ୟୁ ହେଉଛନ୍ତି ମିସେସ୍ ଫେଲ୍‌ଡ୍‌ମ୍ୟାନ୍ ।"

ସ୍ୟୁ ମୁଣ୍ଡକୁ ଟିକିଏ ତଳକୁ କରି ଈଷତ୍ ହସିଲେ ।

ମିସେସ୍ ଫେଲ୍‌ଡ୍‌ମ୍ୟାନ୍ ସଂସ୍ନେହ ସ୍ୱରରେ କହିଲେ, "ମୋତେ ଭାରି ସୁଖ ଲାଗୁଛି ଯେ ମୋ କୁମାରୀ ଝିଅନିଜ ମହଲାର ଏଡ଼େ ସୁନ୍ଦର ବନ୍ଧୁ ଜଣେ ଅଛନ୍ତି । ସେ ତାଙ୍କ ମାଂସଳ ରକ୍ତିମ ହାତ ବଢ଼ାଇ ଦେଇ କହିଲେ, "ଆପଣଙ୍କ ସଙ୍ଗେ ସାକ୍ଷାତ ହେବାରୁ ମୁଁ ଖୁବ୍ ଆନନ୍ଦିତ ।"

ସ୍ୟୁ ମିସେସ୍ ଫେଲ୍‌ଡ୍‌ମ୍ୟାନଙ୍କ ହାତରେ ହାତ ଦେଇ କହିଲେ, "ଆପଣଙ୍କୁ ଧନ୍ୟବାଦ । ମୋର ବିଶ୍ୱାସ, ଆପଣ ବି ମେଇର ଜଣେ ସହୃଦୟ ବନ୍ଧୁ ।"

ମିସ୍ ଲ ମିସେସ୍ ଫେଲ୍‌ଡ୍‌ମ୍ୟାନଙ୍କୁ ଆଡେଇ ହୋଇ ଉପର ମହଲାର ସିଡ଼ିରେ ଗୋଡ଼ ଦେବା ଉପରେ । ସ୍ୟୁ ମଧ୍ୟ ମିସେସ୍ ଫେଲ୍‌ଡ୍-ମ୍ୟାନଙ୍କୁ ମସ୍ତକ ଦ୍ୱାରା ଅଭିବାଦନ ଜଣାଇ ତାଙ୍କଠାରୁ ଖସିଲେ ।

ସେମାନେ ସିଡ଼ି ଚଢ଼ୁଛନ୍ତି, ପଛରୁ ମିସେସ୍ ଫେଲ୍‌ଡ୍‌ମ୍ୟାନ ଡାକ ଦେଲେ, ଯଦି ତମର କିଛି ଦରକାର, ତେବେ—"

ମିସ୍ ଲ'ଙ୍କ ସୁମିଷ୍ଟସ୍ୱର ସିଡ଼ିବାଟେ ତଳକୁ ଭସି ଆସିଲା,—"ନା, କିଛି ଦରକାର ହେବ ନାହିଁ, ଧନ୍ୟବାଦ ।" ସ୍ୟୁଙ୍କୁ ବ୍ୟଗ୍ରଭାବରେ କହିଲେ, "ଯଦି ମିସେସ୍ ଫେଲ୍‌ଡ୍‌ମ୍ୟାନ୍ ତମକୁ କ'ଣ ମାଗନ୍ତି, ଦେବନାହିଁ । ଗତ୍‌ଲଣ୍ଡ୍ ଜାହାଜଘରେ ମୁଁ ମୋର ଶହ ବଳକାବାକୁ ଦେଇଛି; ବନ୍ଦୀ ହେବ ବୋଲି ମୋର ଆଶା । ବନ୍ଦୀ ହୋଇଗଲେ ତାଙ୍କର ମୋଠାରୁ ଯାହା ପ୍ରାପ୍ୟ ଅଛି ସବୁ ଦେଇଦେବି ।"

ସେ ତାଙ୍କ ଗୃହ ଦୁଆରରେ ଲଗାଇଲେ, ଦୁହେଁ ଭିତରେ ପଶିଲେ । ଝଗଡ଼ା ପରେ ଶେନ୍ ଏଭଳି ଖାଦ୍ୟ ଆଣି ଦେଇ ତାଙ୍କୁ ବଡ଼ ଅଡୁଆରେ ପକାଇଛନ୍ତି ! ସ୍ୱା ଦ୍ୱାରା ତ ସେ ତାଙ୍କୁ ବନ୍ଧନରେ ପକାଇ ଦେଲେ । ସେ ଯାହାହେଉ, ଖାଦ୍ୟ ଜିନିଷ ତ ଫୋପାଡ଼ିବାର ନୁହେଁ ।

ସ୍ୟୁଙ୍କୁ କହିଲେ, ଅନୁଗ୍ରହ କରି ବସ । ତୁମର ଏ ଯୋଗ୍ୟ ସ୍ଥାନ ନୁହେଁ ।”

ସ୍ୟୁଙ୍କ ମୁଣ୍ଡ କ'ଣ ହୋଇଯାଉଥାଏ । ଏଭଳି ଗୋଟିଏ କୋମଳାଙ୍ଗୀ ତରୁଣୀ ଏକୁଟିଆଟି ହୋଇ ରହିବାପାଇଁ ଏ ସ୍ଥାନ ଅନୁପଯୁକ୍ତ ପଚାରିଲେ, “ହିଁ ତୁମ ଚିଜ କଥା କ'ଣ କହୁବଟି !”

ମିସ୍ କି ଉତ୍ତର ଦେଲେ, “ହିଁ, ହିଁ, ମୁଁ ସେ ସବୁ ଦେଖାଇବି ଯେ, ।”

ଯେଉଁ ଚିଜଗୁଡ଼ିକ ବର୍ଣ୍ଣନା କରାଯାଇ ନପାରେ ସେଇଗୁଡ଼ିକ ସ୍ୟୁଙ୍କୁ ଦେଖାଇବାକୁ ମନ କଲେ – ବୃକ୍ଷାଦିହୀନ ପଥରର ପାହାଡ଼, ଚୀନ ଦେଶର ଗ୍ରାମ, ତାଙ୍କ ନିଜ ଘରର ଅଗଣା, ତାଙ୍କ ମାଙ୍କ ଛବି, ଯେ କି ଯୁଦ୍ଧରେ ମରିଗଲେ—ଏ ଚିଜଗୁଡ଼ିକ ଆଜିକି ଦିନୁଁ ସେ ନିଜେ ଏବର୍ଷ ଭିତରେ ଥରେ ବି ଦେଖିବାକୁ ଭରସି ନାହାନ୍ତି—ନ ଦେଖିଲେ ବି ତ ଘର ମନେ ପଡ଼େ, କିନ୍ତୁ ଆଉ ଘରକୁ ଫେରିବାର ଆଶା ଯେ ନାହିଁ !

ସେ ନିଜ ଟ୍ରଙ୍କ୍‌ଟି ଖୋଲିଲେ ଓ ଚିଜଗୁଡ଼ିକ ବାହାର କରି ଗୋଟି ଗୋଟି କରି ଦେଖାଉ ଦେଖାଉ ଦୃଶ୍ୟଗୁଡ଼ିକ କ'ଣ, ବୁଝାଇ ଦେଉଥାନ୍ତି । ସେ ଆରମ୍ଭ କଲେ, “ଏଇ ହେଉଛି ଆମ ଦେଶର ପର୍ବତ । ଏଇ ଆମ ଅଗଣା, ମୋ ନିଜ ଝରକାରୁ ଦିଶେ । ପ୍ରତିଦିନ ସକାଳେ ଉଠିଲେ ମୁଁ ଝରକା ମେଲାଇ ଏହି ଶାନ୍ତିମୟ ଅଗଣାଟିକୁ ଚାହେଁ ।”

ଆଉ ଏ ଯେଉଁ ବଖରାଟିରେ ସେମାନେ ସେତେବେଳେ ବସିଥାନ୍ତି, ତାହାର ଝରକାରୁ ଦିଶୁଛି, ଗୋଟେ ଅନ୍ଧାରିଆ ଗାତ – ତା'ର ଭିତରକୁ ସମସ୍ତେ ମଇଳା ଓ ଖାଲି ଟିଣଡ଼ବା ଫୋପାଡ଼ୁଛନ୍ତି । ଏଭଳି ଯାଗା ସମ୍ପର୍କରେ ଅଛି ବୋଲି ସ୍ୟୁ କଳ୍ପନା ବି କରି ନଥିଲେ । ହିଁ,

କେତେବେଳେ କାହିଁତ ଶୁଣିଛନ୍ତି, ବେଳେ ବେଳେ ଗପରେ ବି ଏପରି ଜାଗାର ବର୍ଣ୍ଣନା ପଢ଼େ—ସେଇଠାରେ ସେ ପଢ଼ିବା ବନ୍ଦ କରି ବହି ମୁଡ଼ି ଦିଅନ୍ତି । ଏଭଳି ଜାଗାରେ ଯେଉଁ ଲୋକେ ଥାନ୍ତି ତାଙ୍କ ବିଷୟ ଜାଣିବାକୁ କାହାର ମୁଣ୍ଡ ବଥାଉଛି ? ମିସେସ୍ ଫିଲ୍‌ଡ୍‌ମ୍ୟାନ୍‌ଟା ଗୋଟାଏ ଭୟାନକ ଜାନୁଆର ବୋଲି ତାଙ୍କର ମନେହେଲା ।

ଖବରୁ ମୁହଁ କାଢ଼ି ସେ ହଠାତ୍ କହି ପକାଇଲେ, "ତୁମେ ଶୀଘ୍ର ଏ ସ୍ଥାନ ଛାଡ଼ିବାକୁ ହେବ ।"

ମିସ୍ ଲି ମୃଦୁହାସ୍ୟ ହସି କହିଲେ, ନିତାନ୍ତ ମନ୍ଦ ଜାଗା ନୁହେଁ । ମିସେସ୍ ଫେଲ୍‌ଡ୍‌ମ୍ୟାନ୍ ଭଡ଼ା ବିଷୟରେ ସିନା ଟିକିଏ ତେଜିଯାନ୍ତି, ନହେଲେ ସାଧାରଣତଃ ତାଙ୍କର ମୋଠାରେ ଭାରି ଦୟା । ମୁଁ ତାଙ୍କ ଅବସ୍ଥା ବେଶ୍ ବୁଝୁଛି । ସେ ବୁଢ଼ୀ ହୋଇଗଲେଣି; ସାହାଯ୍ୟ କରିବାକୁ କେହି ନାହାନ୍ତି । ଆହା, ବିଚରା ! ପୁଅଟିଏ ଯେ କୁଆଡ଼େ ଗଲା ତା'ର ପତ୍ତା ନାହିଁ । ସେ ପିଲା ବି ୟାଙ୍କୁ ଚିଠି ଖଣ୍ଡିଏ ଦେଉନାହିଁ । ଆପଣା ମା'କୁ ଏଭଳି ପାସୋରି ଦେବା କେଡ଼େ ଖରାପ !"

ସ୍ୟୁ କହିଲେ, "ପୁଅର ତିଳେ ମାତ୍ର ଦୋଷ ନାହିଁ । ମୁଁ ହେଲେ ତ, ଏଠାରୁ ପଳାନ୍ତି ।"

ମିସ୍ ଲି'ଙ୍କ ମନରେ ଆଘାତ ଲାଗିଲା ପରି ଦିଶୁଥାଏ । ଧୀର ଭାବରେ ସେ କହିଲେ, "ସାମାଜିକ ସମ୍ପର୍କଗୁଡ଼ାକ ରଖିବାକୁ ହେବ । ନହେଲେ ସବୁ ଗୋଳମାଳିଆ ହୋଇଯିବ ।"

ସ୍ୟୁ ଜବାବ ଦେଲେ, "ତେବେ ସେ ବିଚରା ଶେନ୍‌ଟାକୁ କ୍ଷମା କରୁନାହାଁ କାହିଁକି ?"

ମିସ୍ ଲି ହଠାତ୍ ଉତ୍ତେଜିତ ହୋଇ ଜବାବ ଦେଲେ, "ତାଙ୍କ ସାଙ୍ଗରେ ତ ମୋର କୌଣସି ସମ୍ପର୍କ ନାହିଁ ।"

ସ୍ୟୁ ଏକଥାର କିଛି ଜବାବ ଦେଲେନାହିଁ ; ମିସ୍ ଲି କହିଚାଲିଲେ, "ତମ କଥା ସ୍ୱତନ୍ତ୍ର । ମିଷ୍ଟର୍ ହଣ୍ଟର ତୁମର ସ୍ୱାମୀ । ଏଇ ହେଲା ସାମାଜିକ ସମ୍ପର୍କ । ଯାକୁ ଭାଙ୍ଗିବା ଗୁରୁତର ହେବ । ତୁମେ ତାଙ୍କ ପାଖେ ବନ୍ଧା ।"

ସ୍ୟୁ କହିଲେ, "ଗୋଟାଏ କଥା ଦେଖୁନାହଁ ଯେ ! ସେ ତ ପୁଣି ମୋ ପାଖେ ବନ୍ଧା ?"

ମିସ୍ ଲି କହିଲେ, "ସେ କଥା ସତ । କିନ୍ତୁ ସ୍ତ୍ରୀ ଲୋକର ବନ୍ଧନ ଅଧିକ ଦୃଢ଼ । ସବୁ ଦେଶରେ ସ୍ତ୍ରୀର ସମାନ ଅବସ୍ଥା ।"

ସ୍ୟୁ ତେଜରେ ଜବାବ ଦେଲେ, "ଆମେରିକାରେ ସେ ଅବସ୍ଥା ନାହିଁ ।"

ମିସ୍ ଲି ଜବାବ ଦେଲେ "ନଥିଲେ, ହେବା ଉଚିତ ।"

ସ୍ୟୁ କିଛି ଜବାବ୍ ଦେଲେନାହିଁ । ସେ ଏଭଳି ଜଣେ ନାରୀ, ଯେ କି କୌଣସି କଥାରେ ମୁଣ୍ଡ ନ ଘୂରାଇ ରହିବା ବାଲା ନୁହନ୍ତି । କଥାରେ ମୁଣ୍ଡ ଘୂରାଇବା ଦରକାର ନଥିଲେ ବି ସେ ଘୂରାନ୍ତି ।

ମିସ୍ ଲି'ଙ୍କର ରହିବାକୁ ଗୋଟିଏ ଭଲ ଜାଗା ଦରକାର । ତାଙ୍କର ଅଦ୍ଭୁତ ପ୍ରକୃତି । ଯେ କୌଣସି ଲୋକ ଦେଖିଲେ ଜାଣିବ, ଏ ଚିତ୍ରଗୁଡ଼ିକ ଅସାଧାରଣ, ଯଦିଓ ଦୃଶ୍ୟଗୁଡ଼ିକ ଦୂର ବିଦେଶର । ଏଗୁଡ଼ିକ କିଣିବାକୁ ଏଠାରେ କେହିତ ନିଶ୍ଚୟ ବାହାରିବେ । ସେମାନଙ୍କୁ ଖୋଜି ବାହାର କରିବାକୁ ହେବ । ମିସ୍ ଲି'ଙ୍କ ବର୍ତ୍ତମାନ ସମସ୍ୟାର ସବୁଠାରୁ ସହଜ ସମାଧାନ ହୁଅନ୍ତା, ତାଙ୍କୁ ଡାକି ନିଜ ଘରକୁ ନେଇ ରଖିଲେ । କିନ୍ତୁ ଦୁର୍ଭାଗ୍ୟକୁ ସେ ଟେଡ୍‌ଙ୍କୁ କହି ସାରିଛନ୍ତି ଯେ, ସେ ଆଜି ଘରକୁ ଫେରିବେ ନାହିଁ । ତାଙ୍କ ନିଜ ବାପାମା'ଙ୍କର ଘର ଅବଶ୍ୟ ଅଛି । ଆଜି ସକାଳେ ସେ ତାଙ୍କ ମା'ଙ୍କ ପାଖକୁ ଟେଲିଫୋନ୍ କରି ଜଣାଇଲେ ଯେ, ସେ ଆଜି ଇ ଟେଡ୍‌ଙ୍କୁ ଛାଡ଼ି ଚାଲିଯାଉଛନ୍ତି । ମା ଏ ଖବର ଶୁଣି ରାଗି ଯିବାର ଦେଖି ସ୍ୟୁଙ୍କର ମନରେ ଭାରି କଷ୍ଟ ହୋଇଥିଲା ।

ସେ ମା'ଙ୍କୁ ବୁଝାଇବାକୁ କହିଥିଲେ, "କିନ୍ତୁ, ମା ! ଆମର ଯେ ସବୁବେଳେ କଳି ଲାଗୁଛି ! ଟେଡ୍ ଭାରି କଳିଖୋର । ଥରକର ଝଗଡ଼ା ପରେ ମୁଁ ଯେତେବେଳେ ଟିକିଏ ମିଳାମିଶା କରିବାକୁ ବସେ, ସେଇଥିରୁ ନୂଆ ଝଗଡ଼ା ଆରମ୍ଭ ହୋଇଯାଏ ।"

ସ୍ୟୁର ଯେଉଁ ଉତ୍ତର ମା' ଦେଲେ ତା' ଏପର୍ଯ୍ୟନ୍ତ ବି କାନରେ ଠାଇଁ ଠାଇଁ ବାଜୁଛି । ସେ କହିଲେ, "ତେବେ ତ କମ୍ କଳି କରି ଆସି ନାହିଁ ଲୋ ଟୋକି !"

ସେ ଝାଣରେ ଜବାବ୍ ଦେଲେ, "ଯେତେ ଥର ଝଗଡ଼ା ହେଉଛି, ସେଥିରୁ ଅଧାକର ଦୋଷ ମୁଁ ମୁଣ୍ଡେଇବି ସିନା, ସବୁତକ ଦୋଷ ମୋର କାହିଁକି ହେବ ?"

ତାଙ୍କ ମା ଶେଷ ନିଷ୍ପତ୍ତି ଶୁଣାଇ ଦେଲେ, "ସେ ଯାହା ହେଉ, ତୁ ଏଠିକୁ ଆସିବା କଥା ହେବ ନାହିଁ । ଦୁହେଁଯାକ ଝଗଡ଼ା ତୁଟାଇ ଦେଇ ଭଲରେ ଚଳ । ଆଜିକାଲି ପିଲାଙ୍କୁ କି ରୋଗ ଧରିଛି ମୁଁ କିଛି ଜାଣି-ପାରୁନାହିଁ ।"

ତା' ପରେ ମା' ଟେଲିଫୋନ୍ ରିସିଭର୍‌କୁ ଧଡ଼୍‌କିନା ଥୋଇ ଦେଲେ । କଟି ଯାଇଥିବା ଲାଇନ୍‌ର ଖାଲି କ୍ଷୀଣ ସି ସି ଶବ୍ଦ ସ୍ୱୟଂଙ୍କର କାନରେ ବାଜିଲା ।

ସକାଳେ ମା'ଙ୍କ ସାଙ୍ଗେ ଏ ବଚସା ହେବା ପରେ ସେ ସାଥୀଟିଏ ଧରି କପିଟି ବା ତାଙ୍କ ପାଖକୁ ଯିବେ । ପୁଣି ଏ ଯେଉଁ ସାଥୀ ସ୍ୱାଙ୍କୁ ଦେଖିଲେ ତ ମା' ଏକା ଥରକେ ତାଟକା ହୋଇଯିବେ । ବାପା ମା କେଉଁଠି କେବେ କୌଣସି ଗୃହିଣୀ ସଙ୍ଗେ କଥାବାର୍ତ୍ତା ହୋଇ ନାହାନ୍ତି ।

ସ୍ୱୟଂ ଗ୍ଲାନିରେ ଅନୁଭବ କଲେ, ନିଜ ଦେହରେ ଅସହ୍ୟ ବ୍ୟଥାର ଆଘାତ । ବାସ୍ତବିକ୍ ସେଇ ଟେଲ୍‌ଙ୍କ ଯୋଗୁହିଁ ତାଙ୍କୁ ଆଜି ନିଜ ଦୁଃଖ ସାଙ୍ଗକୁ ଅନ୍ୟ ଜଣକର ଦୁଃଖ କଥା ବିଚାର କରିବାକୁ ପଡ଼ୁଛି । ଯାହା ହେଉ, ମନକୁ ଟାଣକରି ତାଙ୍କୁ ନିଜକଥା ବିଚାର ନକରି ମିସ୍ ଲି'ଙ୍କ କଥା ବିଚାରିବାକୁ ହେବ । ଆଗ ବନ୍ଧୁକୁ ସାହାଯ୍ୟ କରିବା ଉଚିତ । ଗୃହିଣୀ ନାରୀଟିଏ, ଟିକିଏ ମାତ୍ର ପରିଚୟ, ଏପରି ସ୍ଥଳେ ତାଙ୍କୁ ବନ୍ଧୁ ବୋଲି କହିବା ଠିକ ନହୋଇ ପାରେ । ଏ ପର୍ଯ୍ୟନ୍ତ ସେ ବନ୍ଧୁ ହେବାର ଉପଯୁକ୍ତ ନ ହୋଇଥିଲେ ବି, ସେ ଯେ ଅଭାବରେ ପଡ଼ିଛନ୍ତି !

ଅପ୍ରାସଙ୍ଗିକ ଭାବରେ ସେ ହଠାତ୍ ପଚାରିଦେଲେ, "ଆଚ୍ଛା, ତୁମ ସେ ବନ୍ଧୁ ଜଣକ - ମାନେ, ସେଇ ମିଷ୍ଟର୍ ଶେନ୍—କେଉଁଠି ରହନ୍ତି ?"

ମିସ୍ ଲି ସୁନ୍ଦର ଆଖି ଯୋଡ଼ିକ ବଡ଼ କରି ମେଲାଇ ବିସ୍ମୟରେ କହିଲେ, "ମୁଁ ତ ତା' ଜାଣେ ନାହିଁ । ସେ କେଉଁଠି ରହନ୍ତି ଜାଣିବା ମୋ ପକ୍ଷରେ ସୁନ୍ଦର ନୁହେଁ । କିନ୍ତୁ ମୁଁ ଜାଣେ, ସେ 'ନିର୍ମଳ ସୁଖ' ରେସ୍ତୁରାଁରେ କାମ କରନ୍ତି ।"

ସୂ୍ୟ ପୁଣି ପଚାରିଲେ, "ଆଜି କହିଲ ପରି ଗଝଲ୍ୟାଣ୍ଡ ଡିଷ୍ଟ୍ରିକ୍ଟରେ ତୁମର ଗୋଟିଏ ଚିତ୍ର ଅଛି ?"

ମିସ୍ ଲି କହିଲେ, "ହଁ, ଗୋଟିଏ।"

ସୂ୍ୟ କହିଲେ, "ମୋତେ ଆଜି କେତୋଟା ଚିତ୍ର ଦେଖାଅ।"

ଚିତ୍ର ଦେଖାରେ ଘଣ୍ଟାଏ ଗଲା, କଥାବାର୍ତ୍ତାରେ ଆଉ ଘଣ୍ଟାଏ। କୋଠରୀରେ ଆଲୁଅ କ୍ଷୀଣ ହୋଇ ଯିବାର ଲକ୍ଷ୍ୟ କରି ସୂ୍ୟ ଚମକି ପଡ଼ିଲେ।

ଆଶ୍ଚର୍ଯ୍ୟ ହୋଇ ସେ କହିଲେ, "ଓଃ; କେତେ ବିଳମ୍ବ ହୋଇଗଲାଣି। ମୁଁ ସାଙ୍ଗେ ସାଙ୍ଗେ ଯାଉଛି ଘରି। ମେଇ ! ମୁଁ କାଲି ପୁଣି ତୁମ ସଙ୍ଗେ ଦେଖା କରିବି। ଜାଣୁଚ ତ, ମୋତେ ବହୁତ ଚିନ୍ତା କରିବାକୁ ପଡ଼ିବ।" ପରିଷ୍କାର ଭାବେ କିଛି ନ ଶୁଣିଥିଲେହେଁ, ସୂ୍ୟ, ନିଜର ସଂକୋଚକୁ ମନେ ପକାଇ ଜାଣିଲେ, ସ୍ୱଦେଶ ଗୃହଯୁଦ୍ଧ ଚିନ୍ତ୍ଵାରୀଟିର ତା ଅବସ୍ଥା ଯୋଗୁଁ ମନରେ ଭରି ଭପୁ ହୋଇଗଲାଣି। ସ୍ୱଦେଶରୁ ନିର୍ବାସିତ ଏଠାରେ ତା'ର ନିଜ ଦେଶ ଲୋକ ଯେଉଁମାନେ ଅଛନ୍ତି ସେମାନେ ଜାଣନ୍ତି, ସେ ସଂଭ୍ରାନ୍ତ ଲୋକ; ସେମାନେ ନିଶ୍ଚୟ ବିଗୃହୁଥିବେ ଟଙ୍କା ପଇସା ବିଷୟରେ ସେ ସ୍ୱଚ୍ଛଳ; ଏପରି ସ୍ଥଳେ ସୂ୍ୟ ସେମାନଙ୍କ ପାଖେ ଯାଇ ହାତ ପତାଇବାକୁ ମାନହାନିକର ମନେ କରିବା ସ୍ୱାଭାବିକ। ନିଜପରି ସମଦଶାପନ୍ନ ଯେଉଁ ଜଣକ ଅଛି ସେ ଗୋଟାଏ ରେସ୍ତୁରାଁରେ ଗୃକର। ଏଭଳି ଅବସ୍ଥାରେ ପଡ଼ିଲେ, ଲୋକ ଅନାହାରରେ ରହିବା ବିଚିତ୍ର ନୁହେ। ଘରଭଡ଼ା ଦେଇ ନପାରିବାରୁ ଦାଣ୍ଡକୁ ମଧ୍ୟ ତଡ଼ା ହୋଇ ଯାଇପାରେ।

ହଠାତ୍ ମିସ୍ ଲି'ଙ୍କ ଆଡ଼କୁ ଝୁଙ୍କି ପଡ଼ି ସୂ୍ୟ ତାଙ୍କର କୋମଳ ପାଣ୍ଡୁର ଗଣ୍ଡରେ ଚୁମ୍ବନ ଦେଲେ।

ସ୍ନେହାର୍ଦ୍ର ସ୍ୱରରେ କହିଲେ, "ମେଇ। ଆଦୌ ବିବ୍ରତ ହୁଅନା। ମୁଁ ତୁମର ବନ୍ଧୁ ରହିଲି।"

ମିସ୍ ଲି କରୁଣ ସ୍ୱରରେ କହିଲେ, "ହେ। ମୋର ତ ସେତିକି ଦରକାର।" ତାଙ୍କ ଆଖି ଲୁହରେ ପୂରିଗଲା। "ମୋତେ ଗୋଟିଏ ବୋଲି ବନ୍ଧୁ ମିଳିଲେ ମୁଁ ସୁଖୀ। ସୂ୍ୟ, ମୁଁ ବିନତି କରି

କହୁଛି, ତୁମ ନିଜ କଥା ବି ଭାବ । ଆଜି ଦିନକ ପାଇଁ ହେଲେ ବି ତୁମ ନିଜ ଘରକୁ ଫେରିଯାଅ, ସୁ୍ୟ ! ଦୁଏତ କାଲିକୁ ମନ ଆନମାନ ହୋଇ ଯାଇଥିବ ।"

ଏ କଥାରେ ରାଜି ହୋଇ ଯିବାକୁ ସୁ୍ୟଙ୍କର ପ୍ରାଣରୁ ଡାକ ଆସୁଥିଲା । ସେ ମଙ୍ଗିଯାଇ କହିଲେ, "ମୁଁ ଘରକୁ ଯିବି, ମେଇ ! ତୁମକୁ ଧନ୍ୟବାଦ ।"

କିନ୍ତୁ ସେ ସିଧା ଘରକୁ ଗଲେ ନାହିଁ । ସେ ଗୋଟିଏ ଟ୍ୟାକ୍ସି ଡାକି, ଡ୍ରାଇଭର୍‌କୁ ଆଦେଶ ଦେଲେ, 'ନିର୍ମଳ ସୁଖ ରେସ୍ତୁରାଁ'କୁ ନେବାକୁ । ସେ ସ୍ଥାନକୁ ଯିବାକୁ ମନ କମ୍ପିତ କମିତ ହେଉଥାଏ ; ମନକୁ ଟାଣ କଲେ । ଇତଃପୂର୍ବରୁ ଚୀନାପଡ଼ାକୁ ସେ କେବେ ଯାଇନାହାନ୍ତି । ବିଳମ୍ବ ହେବ ବୋଲି ସହ୍ୟ ନପାରି ଆଜି ସେ ଏକୁଟିଆ ଯାଉଛନ୍ତି । ତାଙ୍କର ମନ ସେ ସିଧା ଯାଇ ମିଷ୍ଟର୍ ଶେନ୍‌ଙ୍କ ଆଗରେ ଗୋଟିଏ ପ୍ରସ୍ତାବ ବାଢ଼ିବେ । ମିଷ୍ଟର୍ ଶେନ୍ ନାହିଁ କରି ଦେଇ ପାରନ୍ତି । କିନ୍ତୁ ମିସ୍ ଲି'ଙ୍କୁ ସେଥିପାଇଁ ବ୍ୟଥା ହେବନାହିଁ । ସେ ତ ଏ ପ୍ରସ୍ତାବ କଥା ଜାଣିନାହାନ୍ତି, ମିଷ୍ଟର୍ ଶେନ୍ ନାସ୍ତି କରିଦେଲେ ଜାଣିବେ ବି ନାହିଁ ।

ସେ ମନର ଆବେଗରେ ଟାଣି ହୋଇ ବସିଥାନ୍ତି ; ଡ୍ରାଇଭର୍ ସଙ୍ଗେ କଥାବାର୍ତ୍ତା ହେବାକୁ ଇଚ୍ଛା କରୁ ନଥାନ୍ତି । ଡ୍ରାଇଭର୍, ଖୁସିଗପର ସମ୍ଭାବନା ନଦେଖି 'ଦକ୍ଷିଣ ପ୍ରଶାନ୍ତସାଗର' ସଙ୍ଗୀତରୁ ଗୋଟିଏ ପଦର ସୁର ଧରି ପାଟିରେ ଶିଶିର ମାରି ବୋଲିବାରେ ଲାଗିଲା । ଯେତିକି ସମୟ ଲାଗିଥାନ୍ତା ତହିଁରୁ କିଞ୍ଚିତ୍ ବିଳମ୍ବରେ ସେ ହୋଟେଲ ପାଖରେ ଗାଡ଼ି ଲଗାଇଲା ଓ ଓହ୍ଲାଇ ପଛ ଦୁଆର ଫିଟାଇ ଧରିଲା । ସୁ୍ୟ ତାର ଭଡ଼ା ଗଣି ଦେଇ ଟ୍ୟାକ୍ସିରୁ ବାହାରିଲେ ।

ରେସ୍ତୁରାଁରେ ଜଣେ ମୋଟା ଚକାମୁହାଁ ଲୋକ, ଆଖିଟିମାନ କଳା, ଗ୍ଲେଟ ଗ୍ଲେଟ—ତାଙ୍କ ପାଖକୁ ଆସିଲା । ସୁ୍ୟ ତା'କୁ ଅଭିବାଦନ ନ ଜଣାଇ ସିଧା ପଚାରିଲେ, "ମିଷ୍ଟର୍ ଶେନ୍ ବୋଲି ଜଣେ ଲୋକ ଏଠାରେ ଅଛନ୍ତି କି ?"

ମିଷ୍ଟର୍ ହୋ ମନେ ମନେ ହସିଲେ; ମିଷ୍ଟର୍ ଶେନ୍‌ଙ୍କର ଏମିତି ଗୋଟିଏ ଯୁବତୀ ସଙ୍ଗେ ପରିଚୟ ଅଛି ? ତା'ହେଲେ, ବେଶ୍ ତ ? କିନ୍ତୁ ନାଲି ବାଳ, ମିଷ୍ଟର୍ ହୋ ବି ପସନ୍ଦ କରନ୍ତି ନାହିଁ ।

ଧୀର ଭାବେ ସେ ଉତ୍ତର ଦେଲେ, "ସେ ବର୍ତ୍ତମାନ ବାସନ ମାଜିବାରେ ବ୍ୟସ୍ତ ଅଛନ୍ତି ।"

ସ୍ମି ହୁକୁମ କଲେ, "ତାଙ୍କୁ ଏଠାକୁ ଟିକିଏ ଡାକ । ମୋର ତାଙ୍କ ସଙ୍ଗେ ଜରୁରୀ କଥାବାର୍ତ୍ତା ଅଛି ।"

ମିଷ୍ଟର୍ ହୋ ଘଣ୍ଟାକୁ ଚାହିଁ କହିଲେ, "ନ'ଟା ବେଳେ ମିଷ୍ଟର୍ ଶେନ୍ ଛୁଟି ପାଇବେ ।"

ସ୍ମି ରାଗି ଯିବାକୁ ତିଆରି ହୋଇ ଯାଇଥିଲେ; କିନ୍ତୁ ରାଗ ସଂଯତ କରି କହିଲେ, "ଦେଖ, ମୋର ତାଙ୍କ ସଙ୍ଗେ କଥାବାର୍ତ୍ତା ହେବା ନିତାନ୍ତ ଦରକାର । ତାଙ୍କର ଜଣେ ବନ୍ଧୁଙ୍କ ବିଷୟରେ । ଆଚ୍ଛା, ସେ ଯଦି ଆସି ନ ପାରିବେ, ମୁଁ ରୋଷେଇ ଘରକୁ ଯିବାକୁ ପ୍ରସ୍ତୁତ ।"

ମିଷ୍ଟର୍ ହୋ ଟିକିଏ ଥାଥା ମାମା ହେଲେ । ସ୍ମିଙ୍କର ଉଜ୍ଜ୍ୱଳ ଆଖିରୁ ସ୍ଫୁଲିଙ୍ଗ ବାହାରିବାକୁ ଆରମ୍ଭ କରିଥାଏ । ମିଷ୍ଟର୍ ହୋ ବିଚାରିଲେ, ଏଠାରେ ଗୋଟିଏ ଝଗଡ଼ା ହେଲେ ଗରାଖମାନଙ୍କର ଅସୁବିଧା ହେବ ।

ସେ ସିଦ୍ଧାନ୍ତ ଶୁଣାଇ ଦେଲେ, "ତାଙ୍କୁ ଦଶମିନଟ୍ ଛୁଟି ଦେଉଛି ।" ସେ ଭିତରକୁ ଚାଲିଗଲେ ଓ ମୁହୂର୍ତ୍ତକ ଭିତରେ ମିଷ୍ଟର୍ ଶେନ୍ ଭିତରୁ ବାହାରିଲେ । କାମ କଲାବେଳର ଢିଲା କୁର୍ତ୍ତାଟା ନଥାଏ, କିନ୍ତୁ ପ୍ୟାଣ୍ଟ୍ ଉପରେ ମାଏ କାମିଜ ; କୋଟ୍ ଲଗାଇବାକୁ ବେଳ କାହିଁ ?

ମିଷ୍ଟର୍ ଶେନ୍ ବ୍ୟସ୍ତବ୍ୟସ୍ତ ହୋଇ ଗୁଣୁଗୁଣୁ କରି କହିଲେ, "ଓଃ, ମିସେସ୍ ହ୍ୱିଟର୍ ଯେ !" ତାଙ୍କ ସୁନ୍ଦର ମୁହଁଟା ନାଲି ପଡ଼ିଗଲା । "ଏଠାରେ ଆପଣଙ୍କୁ ସ୍ୱାଗତ କରିବାକୁ ମୁଁ ସଙ୍କୁଚିତ ହେଉଛି ।"

ସ୍ମି ହଠାତ୍ କହିଲେ "ସେଥିରେ କିଛି ଯାଏ ଆସେ ନାହିଁ । ଆପଣ ଏଠାରେ ଟିକିଏ ବସନ୍ତୁ ।" ଦୁଇଜଣଙ୍କ ପାଇଁ ଉଦ୍ଦିଷ୍ଟ ଗୋଟିଏ ଟେବୁଲ ପାଖେ ଗୋଟିଏ ଚଉକିରେ ସ୍ମି ଲଥ୍‌କିନା ବସିପଡ଼ିଲେ ।

ମିଷ୍ଟର୍ ଶେନ୍ ଆରମ୍ଭ କଲେ, "ମୁ ଚା ଆଣେ ।"

ସ୍ମି କହିଲେ, "ନା, ଚା' ଦରକାର ନାହିଁ । ଆପଣ ବସନ୍ତୁ ।" ସ୍ମିଙ୍କୁ କ ଜଣା କଥାବାର୍ତ୍ତା କରିବାକୁ ହେଲେ ଚା' ଦରକାର ହୁଏ ? ମିଷ୍ଟର୍ ଶେନ୍ ଭଦ୍ରମହିଳାଟିର ଅଜ୍ଞତା ପାଇଁ କ୍ଷମାକରି ନିଜେ ବସିଲେ ।

ସୁ୍ୟ ଏଠାକୁ ଆସିଲେ କାହିଁକି ? ବୋଧହୁଏ ଟେଡ୍‌ଙ୍କ ସାଙ୍ଗରେ ଝଗଡ଼ା ହୋଇଛି ବୋଲି ସେ ତାଙ୍କ ପାଖକୁ ଆସିଛନ୍ତି ମିଳାମିଶା କରାଇଦେବାକୁ । ହୁଏତ ଟେଡ୍ ସ୍ୟୁଙ୍କୁ କହିଛନ୍ତି, 'ମୁଁ ଶେନ୍‌କୁ ସବୁ କଥା ସଫା କହି ଦେଇଛି । ଶେନ୍‌ଙ୍କର ବୁଝିବା ଶକ୍ତି ଅଛି, ସହାନୁଭୂତି ବି ଅଛି । ସେ ଠିକ୍ ବୁଝିଛନ୍ତି, ତୋର ସବୁ ଦୋଷ ।' ଏ ଦୁଇ ଆମେରିକାନ୍ ତରୁଣ ତରୁଣୀଙ୍କୁ ପୁଣି ଏକାଠି କରି ପାରିଲେ ବେଶ୍ ଭଲ କାମ ହେବ ।

ମିଷ୍ଟର୍ ଶେନ୍ ଏଭଳି ବିଚାରିଲା ବେଳେ ସ୍ୟୁ ଆରମ୍ଭ କଲେ, "ମିଷ୍ଟର୍ ଶେନ୍ ! ଆପଣ ମିସ୍ ଲି'ଙ୍କୁ ବିବାହେଲେ ଭଲ ହୁଅନ୍ତା ନାହିଁ ? କ'ଣ କହୁଛନ୍ତି ?"

ମିଷ୍ଟର୍ ଶେନ୍‌ଙ୍କ ଆନନ୍ଦଦାୟକ କଳ୍ପନାକୁ ଏ ପ୍ରସ୍ତାବ ମସ୍ତବଡ଼ ଧକ୍କା ଦେଲା । ତରତର କରି ନିଜ ଚିନ୍ତାକୁ ବଦଳାଇବାକୁ ପଡ଼ିଲା । ସେ ତ ସବୁ ବିଷୟ ଧୀର ସ୍ଥିରଭାବରେ ବୁଝିବିଚାରି କରିବାବାଲା । ହଠାତ୍ କ'ଣ ଉତ୍ତର ଦେବେ ଠିକ୍ କରିବା ତାଙ୍କ ପକ୍ଷରେ ମହା କଷ୍ଟ ।

ସେ ଅତମତ ହୋଇ ପଚାରିଲେ, "ଏଁ ! କ'ଣ କହିଲେ ?"

ସ୍ୟୁ କହିଲେ, "କେହି ସାଥି ନଥିବାରୁ ମିସ୍ ଲି କେଡ଼େ ଦୁଃଖରେ ଅଛନ୍ତି । ତାଙ୍କୁ ପେଟପୂରା ଖାଇବାକୁ ମିଳୁନାହିଁ ବୋଲି ମୋର ସନ୍ଦେହ ।" ତା'ପରେ କଥା ଗଡ଼ି ଆସିଲା ଫଳ ବାହାରିଲା, "ମୁଁ ଶୁଣୁଛି, ଆପଣଙ୍କର ତାଙ୍କର ଝଗଡ଼ା ହୋଇଛି । ସେ ମୋତେ ସବୁ କଥା ଖୋଲି କହିଛନ୍ତି । ଆପଣଙ୍କର ଇ ଭୁଲ ହୋଇଛି ।"

ମିଷ୍ଟର୍ ଶେନ୍ ନିଜର ମହତ୍ତ୍ୱ ରଖି ଜବାବ ଦେଲେ, "ଆମର ଝଗଡ଼ା ବୋଲି କିଛି ହୋଇ ନାହିଁ । ଆପଣଙ୍କ ସ୍ୱାମୀ, ମୋ ବନ୍ଧୁଙ୍କୁ, ସେ ଦୋଷ ଦେଲେ । ଏ କଥା ମୁଁ ବରଦାସ୍ତ କରନ୍ତି କିପରି ? ସାମାଜିକ ସମ୍ପର୍କର ବିରୋଧୀ କଥା ।"

ସ୍ୟୁ କହିଲେ, "ମୁଁ ଜାଣୁଛି, ସେ ସେଥିପାଇଁ ଦୁଃଖିତ ।"

ତଥାପି ମିଷ୍ଟର୍ ଶେନ୍ ମର୍ଯ୍ୟାଦା ଛାଡ଼ୁ ନଥାନ୍ତି ; କହିଲେ, "ତାଙ୍କ ଦୋଷ ସତ୍ତ୍ୱେ ମୁଁ ତାଙ୍କ ବିଷୟ ଭାବୁଛି । ଆଜି ତାଙ୍କ ପାଇଁ କିଛି ଖାଦ୍ୟ ଦେଇ ଆସିଛି ।"

ତା’ପରେ କହିଲେ, “ମୁଁ ଜାଣେ, ମିସ୍ ଲି ମୋତେ ବିଭା ହେବେ ନାହିଁ । ସେ ଜଣେ ବିଖ୍ୟାତ ଶିଳ୍ପୀର ଝିଅ । ତାଙ୍କର ପୁରୁଣା ଘର ; ସେମାନେ ଖୁବ୍ ଧନୀ ଥିଲେ, ବଡ଼ ଜମିଦାର । ମୁଁ ସାମାନ୍ୟ ପାଠ ପଢ଼ିଛି ସିନା, ମୋର ଖୁବ୍ ସାଧାରଣ ପରିବାରରେ ଜନ୍ମ । ମୋତେ ବିଭା ହେଲେ ତାଙ୍କୁ ନିନ୍ଦା ହେବ ।”

ସୁ୍ୟ ପ୍ରତିବାଦ କଲେ, “ଆମ ଏଠାରେ ଏଭଳି ବଡ଼ ସାନ ବିଚାର କରାଯାଏନାହିଁ । ମୋ ନିଜ କଥା ଏବେ କ’ଣ ? ଚେଙ୍ଗ୍ଙ୍କ ବାପମା ମୋ ବାପ ମାଙ୍କ ପରି ବଡ଼ ନୁହନ୍ତି; ତାଙ୍କ ବାପା ଓହାଇଓରେ ସାମାନ୍ୟ କୃଷୀ ଜଣେ ।”

ମିଷ୍ଟର୍ ଶେନ୍ ବିଚାର କରିବାକୁ ଲାଗିଲେ । ଏ ବିବାହରେ ମିସ୍ ଲି’ଙ୍କୁ ନିନ୍ଦା ହେବ ବୋଲି ସେ ବିଶ୍ବାସ କରୁଥିଲେହେଁ, ଏ ପ୍ରସ୍ତାବ ତାଙ୍କ ହୃଦୟରେ କମିତି ଗୋଟାଏ ଆଲୋଡ଼ନ ସୃଷ୍ଟି କଲା । ଆମେରିକାରେ ସବୁ କିଛି ସମ୍ଭବ । ହେଲେ, ଏଇଠାରେ, ଏ ବିବାହ ହୋଇପାରେ । ଚେଙ୍ଗ୍ଙ୍କ ପ୍ରତି ତାଙ୍କ କର୍ତ୍ତବ୍ୟ ସେ ଭୁଲିଗଲେ । ଚେଙ୍ଗ୍ଙ୍କର ବନ୍ଧୁଭାବରେ ସେ ସୁ୍ୟଙ୍କୁ ଦୋଷୀ ବୋଲି ବିଚାରିବା କଥା । କିନ୍ତୁ ସ୍ବେତ ରକ୍ତକେଶିନୀ ତରୁଣୀର ତାଡ଼ା ପ୍ରକୃତି ସତ୍ତ୍ବେ, ମନରେ ଗୋଟାଏ କମିତି ବିଚାର-ବୁଦ୍ଧି ଥିଲାପରି ତାଙ୍କୁ ଲାଗିଲା ।

ମିଷ୍ଟର ଶେନ୍ ଟିକିଏ ଲାଜଲାଜ ହୋଇ ପଚାରିଲେ, “ଏଭଳି ଗୋଟାଏ ପ୍ରସ୍ତାବ ନେଇ ମୁଁ ତାଙ୍କ ପାଖକୁ ଯିବି କମିତି ?”

ସୁ୍ୟ ପ୍ରତିବାଦ କଲେ, “ସେଥିରେ କ’ଣ ଅଛି, ଯାଇ ତାଙ୍କୁ ପଚାର ନା ! ଆମ ଏଠାରେ ଏଇମିତି ହୁଏ ।”

ମିଷ୍ଟର ଶେନ୍ କୁଣ୍ଠୁ କୁଣ୍ଠୁ ହେଲେ, “ତାଙ୍କୁ ଧରି ରହିବାକୁ କ’ଣ ମୋର ବାସ ଅଛି ?”

ସାଙ୍ଗେ ସାଙ୍ଗେ ସୁ୍ୟ କହିଦେଲେ, “ଆମେ ଗୋଟାଏ ଖଣ୍ଡା ଖୋଜି ଠିକ୍ କରିଦେବୁ ।” ଏ ମୁହୂର୍ତ୍ତ ପର୍ଯ୍ୟନ୍ତ କିନ୍ତୁ ସେ ଘରଟାଏ ଦରକାର ବୋଲି ଭାବି ବି ନଥିଲେ ।

ମିଷ୍ଟର ଶେନ୍ ବିଚଳିତ ହୋଇ କହିଲେ, “ଆଜି ଖଣ୍ଡେ ଭଲ କାମ ମୋତେ ଆଗ ଖୋଜିବାକୁ ପଡ଼ିବ । ସେ ତ ଆଉ ରେସ୍ତୁରାଁରେ ବାସନମାଜିବା ଲୋକର ସ୍ତ୍ରୀ ହେବେନାହିଁ ।”

ସ୍ୟୁ ସାଙ୍ଗେ ସାଙ୍ଗେ ପ୍ରତିଶ୍ରୁତି ଦେଇଦେଲେ, "ଟେଡ଼୍ ତୁମପାଇଁ କାମଖଣ୍ଡେ ଖୁଜିଦେବେ ।"

ମିଷ୍ଟର ହ୍ୱୋ କ୍ୟାଣ୍ଟୋନିଜ୍ ଭାଷାରେ ଗୀତ ଗାଇଲାପରି କହିଲେ, "ବଣ ମିନ୍‌ହ୍ ହୋଇଗଲା ।"

ମିଷ୍ଟର ଶେନ୍ କହିଲେ, "ମିସେସ୍ ହଣ୍ଟର, ମୋତେ କାଲିଯାଏଁ ଭାବିବାକୁ ଦିଅନ୍ତୁ, ଅନୁଗ୍ରହ କର ।"

ସ୍ୟୁ ଅସନ୍ତୁଷ୍ଟ ହୋଇ କହିଲେ, "ତୁମେ ତାଙ୍କୁ ବିଭା ହେବାକୁ ଚାହଁ କି ନାହିଁ ଆଗ କହିଲ, ହଁ କି ନାଇଁ ?"

ମିଷ୍ଟର ଶେନ୍‌ଙ୍କ ମୁହଁ ପୁଣି ନାଲି ପଡ଼ିଗଲା; କହିଲେ, "ମୋତେ ତ ଏହା ସ୍ୱପ୍ନପରି ଲାଗୁଛି, ସ୍ୱପ୍ନପରି ଅବାସ୍ତବ, କିନ୍ତୁ କଳ୍ପନାକୁ ସୁଖକର ।"

ସ୍ୟୁ କହିଲେ, "ଆମେରିକା ଏମିତି ଗୋଟିଏ ଜାଗା, ଯେଉଁଠି ସ୍ୱପ୍ନ ସତ୍ୟ ହୁଏ ।"

ସେ ରେସ୍ତୁରାଁ ଛାଡ଼ି ବାହାରିଲେ; ଚୀନାପଡ଼ାରେ ଅଛନ୍ତି ବୋଲି ମନେ ନଥାଏ ; ମନରେ ଭୟ ବି ନଥାଏ; ଯଦିଓ ବେଳ ବୁଡ଼ିବା ଉପରେ । ସ୍ୟୁ ଗୋଟିଏ ଟ୍ୟାକ୍‌ସି ଅଟକାଇ ବସିପଡ଼ି ନିର୍ଦ୍ଦେଶ ଦେଲେ, "ଗଟେଲ୍ୟାଣ୍ଡ ଆପାର୍ଟମେଣ୍ଟ, ୫୭ଶ ଷ୍ଟ୍ରୀଟ୍ ।"

ନିଜକୁ ଭଗବାନଙ୍କ ଆସନରେ ବସାଇ ଅନ୍ୟମାନଙ୍କର ଭାଗ୍ୟ-ବିଧାନ କରିବା କେଡ଼େ କୌତୁକ କଥା । ମିସ୍ ଲି'ଙ୍କର ଭବିଷ୍ୟତରେ କ'ଣ ହେବ ତାଙ୍କୁ ଏପର୍ଯ୍ୟନ୍ତ ଜଣାନାହିଁ । ଆଜି ସେ ଟେଡ଼୍‌ଙ୍କ ନାମରେ ଯେଉଁ ପ୍ରତିଶ୍ରୁତି ଦେଲେଣି, ସେକଥା ଟେଡ଼୍ ଶୁଣିଲେ ନିଆଁ ହୋଇଯିବେ । ଟେଡ଼୍ ସବୁବେଳେ ତାଙ୍କୁ ଦୋଷ ଦିଅନ୍ତି ଯେ, ସେ ଜଣେ ଜବରଖୀ ମାଇକିନିଆ ; ସବୁବେଳେ ସମସ୍ତଙ୍କପାଇଁ ସବୁ କରାଇ ଦେବାକୁ ତିଆର । "ସବୁବେଳେ କାହାର କ'ଣ କରାଇଦେବାକୁ ମନ, ନା—"

ଏକଥା ଶୁଣି ସେ ନିଆଁ ହୋଇଯାଇ ଜବାବ ଦିଅନ୍ତି, "ଆଜି ନୋଇଲେ ଆପଣା ପାଇଁ ସବୁବେଳେ ଭାବନ୍ତି, ତୁମରି ପରି—"

ଟେଡ଼୍ ଚିତ୍କାର କରି ଉଠନ୍ତି, "ଅନ୍ୟ ପାଇଁ କରୁଛୁ ବୋଲି ଯାହା କରୁଛ, ସେ ସବୁ ତୋ'ର ନିଜପାଇଁ । ତୁ କରାଇ ଦେଲୁ, ଏଇ

ଗୌରବଟି ପାଇବାକୁ ତୋ'ର ମନ । ତୋ'ର ତ ମନ ସଂସାରଟା ତୋ'ର କଥାରେ ଚଳନ୍ତା, ନାହିଁ କ'ଣ ! ଗୋଟିଏ ଘର, ଗୋଟିଏ ଘଇତା ତୋତେ ଯଥେଷ୍ଟ ହେଉନାହିଁ ।"

ଏଭଳି କଥା କଟାକଟି ହେଲା ବୋଲି ଶୁଣି ମା ଜାଣିଲାପରି କହୁଥିଲେ, "ଆଲୋ ମା ସୁ୍ୟ, ତୋ'ର ଖାଲୋଇଏ ପିଲା ହେଲେ ଯାଇ ତୋ ମନ ବସନ୍ତା ।"

ସୁ୍ୟ ଉତ୍ତର ଦେଉଥିଲେ, "ବହୁର ହେଲା ମାତେ କ'ଣ ଗୁଡ଼ାଏ ପିଲା ଆସି ପହଞ୍ଚିବେ ? ଗୋଟି ଗୋଟି ହୋଇ ସିନା ହେବେ ।"

ଟ୍ୟାକସିବାଲା କହିଲା, "ହେଇ ଗଟେଲ୍ୟାଣ୍ଡ ଚିତ୍ରାଳୟ ହେଲା ।"

ସୁ୍ୟ ଚିତ୍ରାଳୟରେ ପହଞ୍ଚିଲା ବେଳକୁ ତାହା ଖୋଲିଥାଏ, କିନ୍ତୁ ଯୁବକଟି ଅନ୍ୟମନସ୍କ ଭାବେ ଦୁଆର ଝରକା ବନ୍ଦ କରିବାକୁ ଆରମ୍ଭ କରୁଥାଏ ।

ବଡ଼ଲୋକ ଦେଖାଇଲା ପରି ସୁ୍ୟ କହିଲେ, "ପ୍ରସିଦ୍ଧ ଗୁଇମାଜ୍ କଳାକାର ମିସ୍ ଲି'ଙ୍କର ଗୋଟିଏ ଚିତ୍ର ମୁଁ ଦେଖିବାକୁ ଆସିଛି ।"

ଯୁବକ ବିସ୍ମିତ ହୋଇଗଲେ । "ହଁ, ଅଛି ମିସ୍, ଦେଖାଉଛି ।" ବୋଲି କହି ସେ ଗୋଟିଏ ଲାଇଟ୍ ଟିପି ପଶ୍ଚିମ ପାଖ କାନ୍ଥ ଆଡ଼େ ହାତ ଦେଖାଇଦେଲେ । "ହେଇଟି ସେ ଚିତ୍ର, ଅନେକ ଲୋକଙ୍କର ଏ ଚିତ୍ର ଉପରେ ଆଖି ପଡ଼ିଲାଣି । ଏ ଚିତ୍ରରେ ଗୋଟାଏ ବଣିଷ୍ଟତା ଅଛି ।"

ସୁ୍ୟ ଚିତ୍ରଟିକୁ ଚାହିଁଲେ, ଦୃଶ୍ୟଟି ବେଶ୍ ପରିଚିତ ବୋଲି ମନେ ହେଉଛି । କିନ୍ତୁ ତାହା ଠିକ୍ କେଉଁଠାର ଚିତ୍ର ଜଣାପାଉନଥାଏ । ହଠାତ୍ ଦେଖିଲେ ଚୀନ୍‌ର ଦୃଶ୍ୟ ପରି ଜଣାପାଉଛି—ଗୋଟିଏ ଅଣଓସାରିଆ ରାସ୍ତା, ଦୁଇକଡରେ ଦୁଇ ଧାଡ଼ି ତୀକ୍ଷ୍ଣ ଶିଖର ବଣିଷ୍ଟ ପାହାଡ଼, ରାସ୍ତାଟି ଲମ୍ବିଛି ଗୋଟିଏ ଗ୍ରେଟ ଅନ୍ଧାରିଆ ମନ୍ଦିରକୁ—ନା, ଏଇଟି ଗୋଟିଏ ଗିର୍ଜା । ତା'ଉପରେ ଯାହା ଦିଶୁଛି ତାହା ଗିର୍ଜାର ଚୂଡ଼ା, ନା ଗୋଟିଏ ଅଣଓସାରିଆ ପ୍ୟାଗୋଡ଼ା । ଗୋଟିଏ ପାଖର ପାହାଡ଼ ଦେହରେ ଦିଶୁଛି ଗୋଟିଏ ବୋଲି ଆଲୁଅ । ଲୋକଟିଏ କ'ଣ ଲଣ୍ଠନ ଧରି ଠିଆ ହୋଇଛି, ନା ଏହା ଗୋଟିଏ ଝରକାବାଟେ ଆସୁଥିବା ଆଲୁଅ ? ଅନ୍ଧାରିଆ ଚିତ୍ରାଳୟରେ କିଛି ପରିଷ୍କାର ଦିଶୁନଥାଏ । କିନ୍ତୁ ହଠାତ୍ ତାଙ୍କର ମନ ହେଲା ଏ ଚିତ୍ରଟି କିଣିବେ

ବୋଲି—ନିଜକୁ ସୁଖ ଲାଗିବାରୁ, ପୁଣି ମିସ୍ ଲିଙ୍କୁ ସାହାଯ୍ୟ କରିବା ପାଇଁ।
"ମୁଁ ଏ ଚିତ୍ରଟି କିଣିବି। ଦାମ କେତେ ?"

ଯୁବକ ସୁ୍ୟଙ୍କ ଆଡ଼କୁ ଚାହିଁଲେ; କହିଲେ, "ପଚିଶ ଡଲାର, ମିସ୍। ଏ ଚିତ୍ରଟି ବଡ଼ ସୁନ୍ଦର। ଆଉ ଅଧିକ ଦାମ କହନ୍ତୁ, କିନ୍ତୁ ଚିତ୍ରକର ସେପରି ଜଣାଶୁଣା ନୁହନ୍ତି।

ଭାଗ୍ୟକୁ ସୁ୍ୟଙ୍କ ପାଖରେ ସେତେବେଳେ ନିଜର ସବୁଡିକ ପଇସାପତ୍ର ଥାଏ। ସେ ବିଚାରିଥିଲେ, ଆଜି ଯାଇ ଗୋଟାଏ ହୋଟେଲରେ ରହିବେ ଓ ସେଇଠାରୁ ଟେଡ୍‌ଙ୍କୁ ଟେଲିଫୋନ କରିବେ। ସେ ପ୍ରସ୍ତାବ ଛାଡ଼ ସେ ସ୍ଥିର କଲେ, ସିଧା ଘରକୁ ଯିବେ ଏବଂ କାଲି ନିଜ ବିଷୟରେ ଯାହା ଫଇସଲା କରିବେ।

ସୁ୍ୟ ଯୁବକଙ୍କୁ କହିଲେ, "ଚିତ୍ରଟିର ଦାମ ମୁଁ ଏଇକ୍ଷଣି ଦେଇ-ଦେଉଛି। କିନ୍ତୁ ଏହା ଆପଣ କେଉଁଠାକୁ ପଠାଇବେ ବର୍ତ୍ତମାନ ଠିକଣା କରି କହିପାରୁନାହିଁ। ପ୍ରକୃତରେ ମୋର—। ମୁଁ ବସା ବଦଳାଉଛି। ଏ ହପ୍ତାର ଶେଷ ଆଡ଼କୁ ଆସିବି ଓ ନିଜେ ଚିତ୍ରଟି ନେଇଯିବି।"

ନିଜର କି ନାମ କହିବେ ଠିକଏ ବିଚାରି କହିଲେ, "ମୋ ନାମ ମିସ୍ ସୁ୍ୟମାନ୍ ଓ୍ୱେଷ୍ଟରଲି।" ବିବାହ ପୂର୍ବର ନାମ, ହେଲେ କ'ଣ ହେଲା ? ତାଙ୍କର ନାମ ତ ! ଟେଡ୍ ଓ ତାଙ୍କ ଭିତରେ ଶେଷ ବୁଝାପଢ଼ା ହୋଇଗଲେ ପୁଣି ଏଇ ନାମ ତାଙ୍କର ହେବ। ସାଂଙ୍ଗାଟି ବେଶ୍ ଆନନ୍ଦଦାୟକ; ହଣ୍ଟର ନାମ ତ ଅତି ସାଧାରଣ ନାମ। ତା'ଠାରୁ ଓ୍ୱେଷ୍ଟରଲି ନାମଟି କାନକୁ କେଡ଼େ ଭଲ ଲାଗୁଛି।

ଯୁବକ କହିଲେ, "ଧନ୍ୟବାଦ, ମିସ୍ ଓ୍ୱେଷ୍ଟରଲି ! "ବିକ୍ରୀତ" ବୋଲି ଖଣ୍ଡିଏ କାର୍ଡ଼ ସେ ଚିତ୍ରରେ ଲଗାଇଦେଲେ। ଯୁବକ ସୁ୍ୟଙ୍କ ଆଡ଼କୁ ଚାହିଁ ଶୁଖିଲା ହସଟିଏ ହସି ଦୋକାନ ବନ୍ଦ କରିବାରେ ଲାଗିଲେ। ସୁ୍ୟ ରସିଦଖଣ୍ଡି ନିଜ ବ୍ୟାଗ୍‌ରେ ରଖି ଘରକୁ ଯିବା ସକାଶେ ଟ୍ରେନ୍ ଧରିବାକୁ ଦ୍ରୁତଗତିରେ ଷ୍ଟେସନକୁ ଚାଲିଲେ।

ମନୋହର ସଂଧ୍ୟା। ସୁ୍ୟଙ୍କର ମନରେ ପୂର୍ଣ୍ଣ ଶାନ୍ତି ବିରାଜିତ କରୁଥାଏ। କିଛି ଗୋଟାଏ କାମ ଭଲ କରି ସଜାଡ଼ି ଦେଲେ ତାଙ୍କ ମନରେ ପରିତୃପ୍ତି ଆସେ। ସେ କାର୍ଯ୍ୟ ବଡ଼ କି ଛୋଟ ସେଥିରେ କିଛି

ଯାଏ ଆସେ ନାହିଁ । ବୈଠକଖାନାର ଆସବାବ ଯେଉଁପରି ସଜଡ଼ା ହୋଇଥାଏ, ତା'କୁ ଭାଙ୍ଗି ଆଉ ଗୋଟାଏ ପ୍ରକାର ସଜାଡ଼ି ଥୋଇଦେଲେ ହିଁ ତାଙ୍କର ଏ ପରିତୃପ୍ତି ଆସେ । ନୂଆ ପ୍ରକାରେ ଆସବାବ ସଜଡ଼ାହେବାର ଦେଖିଲେ ଟେଡ଼୍ ଚିଡ଼ି ଉଠନ୍ତି; କିନ୍ତୁ ଆଜ ସେ ଯାହା ସଜାଡ଼ିଛନ୍ତି ତାହା ଟେଡ଼ ଜାଣିବାର ସମ୍ଭାବନା ନାହିଁ; ତେଣୁ ଚିଡ଼ିବା ପ୍ରଶ୍ନ ଉଠୁନାହିଁ । ଆଜ ରାତିରେ ଟେଡ଼ ଘରକୁ ଆସିବେ ନାହିଁ ବୋଲି କହିଥିବା କଥା, ତାଙ୍କର ସେ ମୁହୂର୍ତ୍ତରେ ମନେ ପଡ଼ୁନଥିଲା । ମନେପଡ଼ିଲା । ନଥିଲେ, ପରବାଏ ନାହିଁ । ସେ ଏକୁଟିଆ ଘରେ ରହିବେ । ଟେଡ ନଥିଲେ ତ ତାଙ୍କୁ ଭଲ ।

କିନ୍ତୁ ଦେଖିଲା ବେଳକୁ ଟେଡ଼ି ଅଛନ୍ତି । ଗ୍ରେଷ୍ଟେଇଘର, ହଲ, ବୈଠକଖାନା ସବୁର ଝରକାରେ ଆଲୁଅ । ବୃଥାରେ ଗୁଡ଼ାଏ ଇଲେକ୍ଟ୍ରିକ ଖର୍ଚ୍ଚ । ଟେଡ଼୍‌ଙ୍କ ବ୍ୟକ୍ତିତ୍ୱ ସ୍ପୃହା କରିବ କିଏ ? ଯେମିତି ତାଙ୍କର ସବୁଦିନର ବଦଭ୍ୟାସ ! ସେ ଚୁପଚାପ ବାହାର ପଟେ ବୁଲି, ଗ୍ରେଷ୍ଟେଇ ଘର ଝରକା ପାଖକୁ ଯାଇ, ଭିତରକୁ ଉଣ୍ଟିଲେ । ସ୍ୟୁଙ୍କର ନାଲିଆ ଅପ୍ରନ୍‌ରୁ ଗୋଟାଏ ଗୁଡ଼ାଇ ହୋଇ ଚୁଲ୍ଲୀ ଉପରେ ଟେଡ଼୍ କ'ଣ ଘାଣ୍ଟୁଥାନ୍ତି । ଘରେ ଟେଡ଼୍ ଏକୁଟିଆ । ବାଃ, ଘରକୁ ଆସିଛନ୍ତି – ଗୁଳ୍ପକିନ ପକେଇ ଆସିଛନ୍ତି, ଏକୁଟିଆଟରେ ଘରେ ମଉଜ କରିବାକୁ—ସ୍ୟୁ ଆସିବେ ନାହିଁ ବୋଲି ଜାଣିଥିବାରୁ ମହା ଆନନ୍ଦରେ ଆସିଥିବେ । ଭଲ କଥା ! ଘରକୁ ଆସିବାକୁ ଟେଡ଼୍‌ଙ୍କର ଯେତିକି ଅଧିକାର, ତାଙ୍କର କ'ଣ ସେତିକି ଅଧିକାର ନାହିଁ !

ଟେଡ଼୍‌ଙ୍କୁ ଘର ଭିତରେ ଦେଖି ବିସ୍ମିତ ହେବାର ଅଭିନୟ କରିବେ ବୋଲି ସ୍ଥିର କରି, ତାଙ୍କ ପାଖରେ ଥିବା ଚାବିରେ ସେ ଦାଣ୍ଡ-ଦୁଆର ମେଲାଇ ଘରେ ପଶିଲେ । ଟିକିଏ ବଡ଼ ପାଟିରେ ସେଇ ଗୀତରୁ ପଦେ ଗାଉଥାନ୍ତି, ଯାହା ଓପରଓଲ ଟ୍ୟାକ୍‌ସିବାଲା ଗାନ କରିବାରେ ସେ ବିରକ୍ତ ହୋଇଥିଲେ । ଜୀବନର ବିଚିତ୍ର ଲୀଳାରେ ବିଭିନ୍ନ ଘଟଣା ଓ ଭାବର ଅଦ୍ଭୁତ ସଙ୍ଘଟନ ବା ଅପୂର୍ବ ମେଳ ଘଟିଯାଏ । ଆଜ ସ୍ୟୁଙ୍କର ଅନ୍ତର ପ୍ରଦେଶରୁ ଯେଉଁ ଧ୍ୱନି ଉଠୁଥାଏ ଏହି ଗୀତର ମର୍ମ ଠିକ୍ ସେଇଆ । ଗୀତରେ ନାରୀର ଦୃଢ଼ ସଙ୍କଳ୍ପ ପ୍ରକାଶ ପାଉଥାଏ, "ମୁଁ ମୁଣ୍ଡଧୋଇ ମଇଳା ବାହାର କରିଦେଲା ପରି, ମୋ ପ୍ରେମିକକୁ ଅନ୍ତରରୁ ବାହାର

କରିଦେବ ।" ଶ୍ରୀମତୀ ସ୍ମିଥ୍‌ଙ୍କର ମନର ଭାବ ସାଙ୍ଗେ ଏହା ବଡ଼ିଆ ଭାବେ ମେଳ ଖାଉଥାଏ ।

ଟେଡ଼୍ ବୋଷେଇ ଘରର ଦୁଆରକୁ ଚାଲି ଆସିଲେ । ତାଙ୍କ ହାତର ଡଙ୍କିରୁ ଝୋଳ ଟପଟପ ହୋଇ ତଳେ ପଡ଼ୁଥାଏ , ସେ କହିଲେ, "ଏଁ, ତୁ ବି ଫେରି ଆସିଛୁଁ ଯେ ।"

ସ୍ମିଥ୍ ଖୁବ୍ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଚାହିଁ ରହିଲେ; କହିଲେ, "ତୁମେ ଏଠାରେ କ'ଣ କରୁଛ ? ଯେତେବେଳେ ଜନ୍‌ସନ୍ ଫୋପଡ଼ା ଫିଙ୍ଗା କରି ଘରୁ ବାହାରିଗଲି, ସେତେବେଳେ ତ ତାରିବାଦାୟୀ ହେଲି ବୋଲି ଭାବିଥିଲି !"

ଟେଡ୍ କହିଲେ, "ମୁଁ ତ କା ଫୋପଡ଼ା ଫିଙ୍ଗା କରି ଯାଇନାହିଁ !".

"ଯାଇଛ ! ହଲ ଟେବୁଲ ଉପରର ଆଇନାକୁ ଏପରି ଜୋରରେ ହଲାଇ ଦେଲି ଯେ ତାହା ବଙ୍କା ହୋଇ ଯାଇଛି । ମୁଁ ତା'କୁ ସିଧା କରିନାହିଁ । ଯେମିତି ବଙ୍କା କରିଥିଲି, ତାହା ଏବେ ବି ସେମିତି ଅଛି ।"

"ଆଇନା ହସ୍ତେ ହେଲି ସେମିତି ବଙ୍କା ହୋଇଅଛି ।"

"ଅଛି ଯଦି ସିଧା କରି ଦେଲନାହିଁ ?"

"ମୁଁ କାହିଁକି କରନ୍ତି ? ମୋର କାମ ସେ ନୁହେଁ ।"

ପୁଣି ପୁରୁଣା ଢଙ୍ଗରେ ଟଣାଟଣି ଚାଲିଲା । ହଠାତ୍ ସ୍ମିଥ୍ ଏଥିରୁ ନିବର୍ତ୍ତିଗଲେ । ତାଙ୍କ ମନରେ ଟେଡ୍‌ଙ୍କ ପ୍ରତି ଯେପରି, ନିଜ ପ୍ରତି ଠିକ୍ ସେପରି ଘୃଣା ଆସିଲା ।

ସେ କହିଲେ, "ହଉ, ଥାଉ ଥାଉ, ଟେଡ୍ ! ତମେ ଯାଅ ବୋଷେଇ କର । ମୁଁ ଯାଉଛି ଶୋଇବ ।"

ଟେଡ୍ କହିଲେ, "ବହୁତ ଆଚ୍ଛା, ନମସ୍କାର !"

ଟେଡ୍ ବୋଷେଇ ଘରକୁ ଫେରିଯାଇ ଦୁଆର କିଳିଦେଲେ । ସ୍ମିଥ୍ ସିଢ଼ି ଚଢ଼ି ଓପର ମହଲାକୁ ଗଲେ ଓ ଶୋଇବା ଘରର ଦୁଆର ବନ୍ଦ କରିଦେଲେ । ଗରମ ପାଣିରେ ଗାଧୋଇ ବିଛଣାକୁ ଯାଇ ଶୋଇବାକୁ ଭାରି ମନ ହେଉଥାଏ । ସେ ଖୁବ୍ ଶ୍ରାନ୍ତ ହୋଇ ପଡ଼ିଥାନ୍ତି— ଖାଲି ନିଜ ଅବସ୍ଥା ଯୋଗୁଁ ନୁହେଁ, ମନକୁ ଉଦ୍ଭୁତ ଢଙ୍ଗରେ ନୂଆ ଚିନ୍ତା ଘାଣ୍ଟିବା ଯୋଗୁ । ତାଙ୍କ

କ୍ଷୁଦ୍ର ପରିସର ବାହାରେ ଆଉ ସଂସାର ବୋଲି କିଛି ଅଛି, ଏ ଧାରଣା ତାଙ୍କର ନଥିଲା । ଆଜି ମିସ୍ ଲିଙ୍କ ସଙ୍ଗେ ସେଇ ଅପରିଷ୍କାର କ୍ଷୁଦ୍ର କୋଠରୀରେ ବସିବା ଯାଏଁ, ଆଉ କିଛି ତାଙ୍କୁ ବାସ୍ତବ ଓ ଜରୁରି ବୋଲି ଦିଶୁ ନଥିଲା । ସେଇ କୋଠରୀରେ ସେ ଦେଖିଲେ, ସ୍ୱପ୍ନ ପରି ସୁନ୍ଦର ଦୃଶ୍ୟମାନଙ୍କର ଚିତ୍ର । ଗୋଟିଏ କମନୀୟା ଗ୍ଲକିନ୍ ତରୁଣୀ ସେଇ ପରିବେଶରେ ଦିନେ ତା’ ନିଜ ଘରେ ଥିଲା । ଦୃଶ୍ୟଗୁଡ଼ିକ ତାଙ୍କୁ ଦେଖାଇଲାବେଳେ ସେ ବାରମ୍ବାର କହୁଥାଏ—ଢୋକ ଲଗାଇଥାଏ, “ଏ ସବୁଠାରୁ ମୁଁ ନିର୍ବାସିତ ହୋଇଯିବି ବୋଲି ମନରେ କେବେ ଭାବିନଥିଲି ।”

ଏ କଥାପଦିକ ଭଙ୍ଗାଭଙ୍ଗା ସ୍ୱରରେ କୋମଳ ଗ୍ଲକିନ୍ କଣ୍ଠରୁ ନିର୍ଗତ ହୋଇ ସୂର୍ଯ୍ୟଙ୍କର ହୃଦୟତନ୍ତ୍ରୀରେ ପଶି ସେ ପର୍ଯ୍ୟନ୍ତ ଲାଗି ରହିଥାଏ ।

ମିସ୍ ଲି ପୁଣି କହିଲେ, “ମୋ ଘରକୁ ମୁଁ ସୁଖ ପାଉଥିଲି ସତ କିନ୍ତୁ ଯଦି ଜାଣିଥାନ୍ତି ଯେ, ମୋତେ ଏଥିରୁ ଦିନେ ବଂଚିତ ହେବାକୁ ପଡ଼ିବ, ତେବେ ସେଠାରେ ଥିଲାବେଳେ, ସେ ଘରକୁ ଆହୁରି କେତେ ଅଧିକ ଭଲ ପାଇନଥାନ୍ତି ?

ସୂର୍ଯ୍ୟଙ୍କ ଆଖିପତା ଲୁହରେ ତାତିଗଲା । ଚୀନ ମହିଳା ପ୍ରତି ଅନୁକମ୍ପାରେ କା ସେ ସ୍ୱଦେଶରେ ଯାହା ହରାଇ ଆସିଛି, ସେଥିପାଇଁ କ’ଣ ଏ କାନ୍ଦ ? ନା, ତା’ଠାରୁ ଢେର ଅଧିକ, ନିଜର ଅଧିକ ବ୍ୟକ୍ତିଗତ କାରଣରୁ । ଯେକୌଣସି ଘର, ନିରାପତ୍ତା ଓ ପ୍ରେମରୁ ବଞ୍ଚିତ ହେବା ଦୁଃଖଦାୟକ । ଏ ଦୁଃଖରେ ଦେଶ, କାଳର ବିଗ୍ରହ ନଥାଏ । ତାଙ୍କର ଏହି ନିଜ ପ୍ରକୋଷ୍ଠଟି, ଟେଡ଼୍‌ଙ୍କର ଓ ତାଙ୍କର ଏଇ ଘରଟିରୁ ବଂଚିତ ହେବା ତ ନିଶ୍ଚୟ ଦୁଃଖଦାୟକ ହେବ । ଖାଲି କ’ଣ ଘରଟିଏ ପାଇଁ ଏ ଦୁଃଖ ? ଘର ତ ବହୁତ ମିଳିବ—କିନ୍ତୁ ଏଭଳି ଘର ଆଉ ମିଳିବ କୁଆଡ଼ୁ—ଏ ଘରଟି ଯେ ଟେଡ଼୍ ଓ ସେ ଉଭୟଙ୍କର । ଆଉ କେଉଁ ଘରେ ତ ଉଭୟେ ମାଲିକ ହେବେନାହିଁ । ଏ ଘରଟି ତାଙ୍କ ଦୁହିଙ୍କର ହୋଇ ଯେପରି ଅଛି, ସେପରି ନରହିବ କାହିଁକି ? ସୂର୍ଯ୍ୟଙ୍କର ଆଖିକୁ ନିଦ ନଆସେ ।

... ... ... ...

ମିସ୍ କା କାନ୍ଦୁଥାନ୍ତି । ତାଙ୍କ ହାତ ଦୁଇଟି ଟେବୁଲ୍ ଉପରେ ଯୋଡ଼ ହୋଇ ପଡ଼ିଥାଏ ; ମୁଣ୍ଡ ଦୁଇ ବାହୁ ମଝିରେ ଝୁଙ୍କିପଡ଼ିଥାଏ । ବର୍ତ୍ତମାନ ତାଙ୍କର ପୂର୍ବଭୟ ଦୂର ହୋଇଛି । ଏହି ଭୟ ଯୋଗରୁ ସେ ସମ୍ଭାଳ ହୋଇଥିଲେ । ଚିତ୍ରାଳୟର ଯୁବକ ସେ ଭୟ ଦୂର କରି ଦେଇଛନ୍ତି । ସେ ଟେଲିଫୋନ୍ କରି ଜଣାଇଦେଇଛନ୍ତି ଯେ ତାଙ୍କ ଚିତ୍ର ୫୦ ଡଲାର୍‌ରେ ବିକ୍ରୀ ହୋଇଯାଇଛି ।

ଯୁବକ ନାକ ଟଣେଗଣ କରି ଟେଲିଫୋନ୍‌ରେ କହିଥିଲେ, "ଜଣେ ମହିଳା, ମିସ୍ ଓ୍ୱେଷ୍ଟରଲିଙ୍କ ଆଗ୍ରହ ଦେଖି ମୁଁ ଚିତ୍ରର ଦାମ ବଢ଼ାଇ-ଦେଲି । ଗୃହୁଁ ଗୃହୁଁ ଚିତ୍ରଟି ତାଙ୍କ ମନକୁ ପାଇଲା । ନେବ ବୋଲି କହି ଟଙ୍କା ଗଣିଦେଲେ; କହିଲେ, 'ଯାକୁ ପଠାଇବନାହିଁ, ମୁଁ ବସା ବଦଳାଇବାର ଅଛି, ମୁଁ ନିଜେ ଆସି ଚିତ୍ରଟି ନେଇଯିବି ।' ଆପଣ କାଲି ସକାଳେ ଟିକିଏ ଆସିଲେ ମୁଁ ଟଙ୍କାଟା ଦେଇଦେବି; ଅବଶ୍ୟ ମୋର କମିସନ ଓ ଧାର ଦେଇଥିବା ୫ ଡଲାର୍ କାଟିରଖି ।"

ମିସ୍ କା ମନ ଆନନ୍ଦରେ କହିଥିଲେ, "ଓହୋ ! ଆପଣଙ୍କୁ ଧନ୍ୟବାଦ ।"

ଏହା ଏତେବେଳକୁ ଘଣ୍ଟାକ ପୂର୍ବର କଥା । ଓପର ମହଲାରେ ତାଙ୍କ ଗ୍ଲେନିଆ କୋଠରୀକୁ ଯାଇ ସେ ଯଥାବିଧି ତାଙ୍କ ସନ୍ଧ୍ୟାଭୋଜନ ପ୍ରସ୍ତୁତ କଲେ । କାଲି ସକାଳୁ ତାଙ୍କୁ ଗୋଟାଏ ବିରାଟ ସମ୍ପତ୍ତି—୫୦ ଡଲାର୍ ତାଙ୍କୁ ସେଇପରି ଜଣାଯାଉଥାଏ, ମିଳିବ; ସେ କଥାଦ୍ୱାରା ପ୍ରଭାବିତ ନହୋଇ ସେ ଖୁବ୍ ସାଧାରଣ ଭାବରେ ଖାଦ୍ୟ ପ୍ରସ୍ତୁତ କଲେ । ଦି'ଗିନା ଭାତ ସାଙ୍ଗରେ କିଛି ବନ୍ଧାକୋବି—ଏତିକି ମାତ୍ର ଖାଦ୍ୟ । ତା'ପରେ ସେ ଗିନା ଓ ଚାମଚ ପରି ବ୍ୟବହୃତ ଖାଇବା-କାଠି ଧୁଆଧୋଇ କରି ରଖିଲେ । ଶେଷରେ ଗୁ' ଟିକିଏ ଚିଆରକରି ପିଇଲେ । ଶେଷରେ ଯେତେବେଳେ ସେ କାମ ସାରି ବସିଲେ ତାଙ୍କ ସୌଭାଗ୍ୟ କଥା ଭାବିବାକୁ, ସେତେବେଳେ ଆନନ୍ଦ ପରିବର୍ତ୍ତେ ଦୁଃଖ ଆସି ପହଞ୍ଚିଲା । ସେ ବହୁତ ଚେଷ୍ଟାକଲେ କିନ୍ତୁ ମନରୁ ଦୁଃଖର ଘୋର କଳାପରଦା ହଟିଲା ନାହିଁ ।

ନିଜ ପାଇଁ ଧନ ସମ୍ପତ୍ତି ପାଇଲେ, କି ଆନନ୍ଦ ? ଏ ଧନରେ ହେବ କ'ଣ ? ଯଦି ଏ ଧନ ସାହାଯ୍ୟରେ ସ୍ୱଦେଶକୁ ବାହୁଡ଼ି ହୁଅନ୍ତା

ତେବେ ସିନା ଧନ ପ୍ରତି ଆସକ୍ତି ଆସନ୍ତା । କିନ୍ତୁ ତା'ର ହୋଇପାରିବ ନାହିଁ । ତେବେ ଏ ଧନରେ ମୂଲ୍ୟ କ'ଣ ? ବିଦେଶରେ ନିର୍ବାସିତ ଥାଇ, ପେଟକୁ ପୁଞ୍ଜିଏ ଖାଇ ବଞ୍ଚି ରହିବେ ମାତ୍ର । ଏଭଳି ଚିନ୍ତାରୁ ଚିନ୍ତାରୁ ହଠାତ୍ ତାଙ୍କର ମନେ ହେଲା, ବଂଚି ରହିବା ଆଉ ପ୍ରୟୋଜନ ନୁହେଁ । ଏହାପରି ଭାବି ସେ ଟେବୁଲରେ ହାତଯୋଡ଼ି, ମୁଣ୍ଡ ପୋତି କାନ୍ଦିବାକୁ ଆରମ୍ଭ କରିଥିଲେ ।

ତେଣେ ମିଷ୍ଟର୍ ଶେନ୍, ଜର୍ମମ ମିଷ୍ଟର୍ ହୋ'ଙ୍କଠାରୁ ୯ଟା ୧୦ ମିନିଟରେ ମୁକ୍ତି ପାଇ, ନିଜ କୋଠରୀର ଗହଳିକୁ ଫେରିବାକୁ ଇଚ୍ଛାକଲେ ନାହିଁ । ଆଲୋକିତ ରାସ୍ତାରେ ସେ ରହିବାକୁ ପସନ୍ଦ କଲେ । ଆମେରିକାନ୍-ମାନେ ଖୁସିରେ ରାସ୍ତା କଡ଼ରେ ବୁଲାବୁଲି କରୁଥାନ୍ତି । ଆସନ୍ନ ଶୀତ ଋତୁର ଧୀରେ ଧୀରେ ମାଡ଼ି ଆସୁଥିବା ଥଣ୍ଡାରେ ବି ସେମାନେ ସ୍ୱଚ୍ଛନ୍ଦ ନୈଶ୍ଚିନ୍ତ୍ୟ ଉପଭୋଗ କରୁଥାନ୍ତି । ଏହି ପରିବେଶରେ ତାଙ୍କ ମନ ଉଲ୍ଲସିତ ହେଲା । ଯୁବକମାନେ ତାଙ୍କର ପ୍ରେମିକମାନଙ୍କ ଦେହରେ ଘଷି ହୋଇ ଚାଲିଥାନ୍ତି, ହସ ଖୁସିରେ ବାୟୁମଣ୍ଡଳ ପୂର୍ଣ୍ଣ ହୋଇଥାଏ, ମଝିରେ ମଝିରେ ମଟରକାରର ହେଡ଼ଲାଇଟ୍‌ର ଆଲୋକ ଚକ୍‌ମକି ତାଙ୍କୁ ପାର ହୋଇ ଯାଉଥାଏ; ଟ୍ୟାକ୍‌ସିଗୁଡ଼ାକ ସବୁ ଯେପରି ମଣିଷ ଉପରକୁ ମାଡ଼ିପଡ଼ୁଥାନ୍ତି । ଏ ସବୁ ବୈଦେଶିକ ସଂସ୍କୃତିର ନିଦର୍ଶନ ହେଲେହେଁ, ଆନନ୍ଦମୟ ବୋଲି ମିଷ୍ଟର ଶେନ୍‌ଙ୍କର ମନେହେଲା । ଏ ପରିବେଶରେ ମଧ୍ୟ ସେ ଆନନ୍ଦ ପାଇପାରିବେ ବୋଲି ଅନୁଭବ କଲେ, ଯେତେବେଳେ ମିସ୍ ଲିଙ୍କୁ ପାଇ, ତାଙ୍କ ସହିତ, ସ୍ୱାମୀ ସ୍ତ୍ରୀ ଦୁହେଁ ଗୋଟିଏ କ୍ଷୁଦ୍ର ଅଥଚ ପରିଷ୍କାର ଘରେ ରହିବାର ସୁଯୋଗ ପାଇବେ । ଟେବୁଲ ଉପରେ ଫୁଲଦାନି କେତୋଟିଥିବ, ଟେବୁଲ ପାଖରେ ତାଙ୍କ ପାଇଁ ଓ ନିଜ ପାଇଁ ଦୁଇଟି ଭଲ ଚଉକି ପଡ଼ିଥିବ ଓ ସାମାନ୍ୟ ଟିକିଏ ଦୂରରେ ଆଉ ଦୁଇଟି ଚୌକି ଆଗନ୍ତୁକଙ୍କ ପାଇଁ ମଧ୍ୟ ରହିଥିବ । ଗୋଟିଏ ଛୋଟିଆ ରୋଷେଇ ଘର ଥିବ, ଯେଉଁଠି କି ସେ ଦୁହେଁ ଖାଇବାକୁ ବି ଜାଗା ଥିବ । ଶୋଇବାକୁ ଘରଟିଏ ଥିବ, ଗାଧୁଆ ଘରଟିଏ ଥିବ । କାଳକ୍ରମେ ଗୋଟିଏ ଟେଲିଭିଜନ ଯନ୍ତ୍ର ବି ଆସିବ ।

ତାଙ୍କ ମାନସପଟରେ ଏଇପରି ଗୋଟିଏ ଘର ଗଢ଼ିଉଠିଲା ; ମନେ ହେଲା, ଯେମିତି ଏ ଘରଟିରେ ସେ ଯାଇ ସତେ ରହିଲେଣି । ପ୍ରବାସ ହେଲେହେଁ ଏ ଘରଟି ତାଙ୍କୁ ନିଜ ଗାଁ ଘର ପରି ମନେହେଲା । ତାଙ୍କ ଶିରା ପ୍ରଶିରାରେ । ଓଜ ଖେଳିଗଲା; ଧୀର ସ୍ଥିରବୁଦ୍ଧି ସମ୍ପନ୍ନ ମିଷ୍ଟର୍ ଶେନ୍‌ଙ୍କ ପକ୍ଷରେ ନୂଆ ଆବେଗର ତାଡ଼ନାରେ, ହଠାତ୍ ସେ ମୁହାଁଇଲେ ମିସ୍ ଲି'ଙ୍କ ଆଡ଼କରେ ।

ଦ୍ରୁତ ପଦରେ ଅଧଘଣ୍ଟାଏ ଚାଲି ସେ ଆସି ପହଞ୍ଚିଲେ ମିସ୍ ଲିଙ୍କ ଦୁଆରେ । ଡାକିବା ପୂର୍ବରୁ ସେ କାନଡ଼େରି ଶୁଣିଲେ, କରୁଣ ସ୍ୱରରେ ମିସ୍ ଲି କାନ୍ଦୁଥାନ୍ତି ! କାନ୍ଦ କାନ୍ଦ ସେ ଯାହା ବାହୁନି କହୁଥାନ୍ତି ତା' ମଧ୍ୟ କାନରେ ବାଜିଲା । "ଓଃ, ମାଲୋ, ମା-ଆ ; ମୋ ଗାଁ— ମୋ ଘର—"

ସମବେଦନାରେ ମିଷ୍ଟର ଶେନ୍‌ଙ୍କ କଣ୍ଠ ମଧ୍ୟ କୋହରେ ରୁଦ୍ଧ ହୋଇ ଆସିଲା । ଏ ସମୟରେ ତାଙ୍କୁ ଆଣି ଏଠାରେ ପହଞ୍ଚାଇ ଦେଇଥିବା ହେତୁ ସେ ଈଶ୍ୱରଙ୍କୁ କୃତଜ୍ଞତା ଜଣାଇଲେ । ତା'ପରେ ଆବଶ୍ୟକତାଠାରୁ ଅଧିକ ଜୋରରେ ତାଙ୍କ ହାତୁଆ ଆଙ୍ଗୁଠିରେ ଦ୍ୱାରରେ ଠଣା ମାରିଲେ । ସାଙ୍ଗେ ସାଙ୍ଗେ ଭିତରେ କ୍ରନ୍ଦନ ଶବ୍ଦ ବନ୍ଦ ହୋଇଗଲା । କେତେକ୍ଷଣ ଚୁପ୍ ରହି ମିଷ୍ଟର୍ ଶେନ୍ ଡାକିଲେ, "ମୁଁ ଆସିଛି, ଶେନ୍ ।"

ଆହୁରି ଟିକିଏ ବିରାମ । ତା'ପରେ ଦୁଆର ଫିଟିଲା । ମିସ୍ ଲି ଇତିମଧ୍ୟରେ ମୁହଁରୁ ଲୁହ ପୋଛିପୋଛି କରି ଆପଣାକୁ ସଂଯତ କରିବାକୁ ଚେଷ୍ଟା କରିଥାନ୍ତି, ମୁଣ୍ଡବାଳକୁ ସଜାଡ଼ିଥାନ୍ତି, ମୁହଁରେ ପାଉଡ଼ର ଟିକିଏ ମାରିଥାନ୍ତି, ଓଠରେ ନାଲି ଟିକିଏ ମାରିଥାନ୍ତି । ମୁହଁରେ ଦୁଃଖର ଛାୟା ଥାଏ, କିନ୍ତୁ ଦୁଃଖକୁ ଘୋଡ଼ାଇବାକୁ ସେ ଯେଉଁ ମିଛ ମୃଦୁହାସର ଚେଷ୍ଟା କରିଥାନ୍ତି, ତାହା ମିଷ୍ଟର୍ ଶେନ୍‌ଙ୍କ ହୃଦୟରେ ବାଜିଲା । ମିଷ୍ଟର ଶେନ୍‌ଙ୍କ ମନରେ ସ୍ତ୍ରୀ ପୁରୁଷ ଭିତରେ ପାର୍ଥକ୍ୟର ଯେଉଁ ପରଂପରାଗତ ସଂସ୍କାର ଥିଲା ତାହା ପାସୋରି ହୋଇଗଲା । ସେ ମିସ୍ ଲିଙ୍କ ପିଠିରେ ହାତ ପକାଇ, ତାଙ୍କ ମୁହଁକୁ ଉତ୍ସୁକଭାବେ ଚାହିଁ ରହିଲେ ।

ମିଷ୍ଟର୍ ଶେନ୍ ମୁରବିପଣିଆ ଦେଖାଇଲା ପରି କହିଲେ, "ତୁମେ କା ଢକାର ଶୁଣିଲି ।"

ମିଷ୍ଟର୍‌ ଶେନ୍‌ଙ୍କ ସରଳତା ଆଗରେ ଆତ୍ମଗୋପନ ଅସମ୍ଭବ । ମିସ୍‌ ଲି ମୁଣ୍ଡ ଟୁଙ୍ଗାଇ ହଁ କଲେ ; କାନ୍ଦ ରୋକିବାକୁ ଓଠ ଚିପିଲେ, କିନ୍ତୁ ମନ ନମାନି ପୁଣି ଲୁହ ଗଡ଼ିଲା ।

ମିଷ୍ଟର୍‌ ଶେନ୍‌ ତାଙ୍କ ହାତଧରି ଟେବୁଲ ପାଖ ଚଉକିରେ ନେଇ ବସାଇଲେ ; ପାଖକୁ ଆଉ ଗୋଟିଏ ଚଉକି ଟାଣିଆଣି ଆପେ ବସିଲେ । ବଡ଼ ଆବେଗରେ ସେ କହିଲେ, "ତୁମ ମା' ଓ ଘରକୁ ମନେପକାଇ କାନ୍ଦୁଥିଲ ।" ଏତେବେଳକୁ ସେ ମିସ୍‌ଲିଙ୍କର ଗୋଟିଏ ହାତକୁ ନିଜର ଦୁଇ ହାତରେ ଧରିଥାନ୍ତି ।

ମିସ୍‌ ଲି ପୁଣି ମୁଣ୍ଡ ଟୁଙ୍ଗାଇ ହୁଁ କଲେ ଓ ମୁକ୍ତ ଥିବା ହାତରେ ରୁମାଲ ବାହାର କରି ଆଖିରେ ରଖିଲେ । ମିଷ୍ଟର୍‌ ଶେନ୍‌ ଦେଖିଲେ, ପୁଣି ତାଙ୍କର ଓଠ ଥରୁଛି ।

ମିଷ୍ଟର ଶେନ୍‌ଙ୍କ ଜିଭ ଶୁଖିଗଲା । ସେ କହିଲେ, "ମେଇଲିଁ, ମେଇଲିଁ, ମୋର ସୁନ୍ଦର ସୁଗନ୍ଧରାଜ ! ମନ ଦୁଃଖ କରନାହିଁ । ମୁଁ ତୁମ ପାଇଁ ଘରଟିଏ କରିଦେବି । ନୂଆଘର, ସଦ୍ୟ ବିଭା ହୋଇଥିବା ଦୁଇଜଣ—ପତି ପତ୍ନୀଙ୍କ ପାଇଁ; ଶୁଣୁଛ ? ରୋଷେଇଘର ଥିବ , ଆଉ ଗୋଟିଏ ଘର ଥିବ ଯେ, ସେଥିରେ ଗୋଟିଏ ଟେବୁଲ ଚାରିପଟେ ଚାରୋଟି ଚଉକି ପଡ଼ିଥିବ, ଟେବୁଲ ଉପରେ ଗୋଟିଏ ଫୁଲଦାନି ବା ଗୋଟିଏ ଗମଲାରେ ଫୁଲଗୁଡ଼ିଏ ଥିବ—ଆମେ ଏ ଫୁଲ ନିଜ ବାଡ଼ିରେ କରିବା, ଫୁଲଠାରୁ ମଞ୍ଜି କିଣିବା ଶସ୍ତା ହେବ ; ତା' ବାଦ୍‌ ଥିବ ଗୋଟିଏ ଶୋଇବା ଘର ଓ ଗୋଟିଏ ଗାଧୁଆଘର । ଶେଷରେ ଟେଲିଭିଜନ ବି ଆଣିବା । ମୁଁ ଜବାବ୍‌ ଦେଉଛି, ଏକଥା ନିଶ୍ଚୟ ହେବ ।"

ରୁମାଲ୍‌ ଉପରକୁ ଆଖି ନେଇ ମିସ୍‌ ଲି ତାଙ୍କ ଆଡ଼କୁ ଚାହିଁଲେ । ମିଷ୍ଟର୍‌ ଶେନ୍‌ ଏ ଚାହାଣିରୁ ବୁଝିଲେ, ମିସ୍‌ ଲିଙ୍କର ଏ କଥାରେ ପ୍ରତ୍ୟୟ ହେଉନାହିଁ ।

ସେ ନିର୍ବିଚାରରେ କହି ପକାଇଲେ, "ମୋତେ ଗୋଟିଏ ନୂଆ କାମ ମିଳୁଛି ; ମୋ ବନ୍ଧୁ ମିଷ୍ଟର ହଣ୍ଟର— ।"

ମିଷ୍ଟର୍‌ ହଣ୍ଟର୍‌ ନୁହନ୍ତି, ତାଙ୍କ ସ୍ତ୍ରୀ କାମ ବିଷୟରେ ପ୍ରତିଶ୍ରୁତି ଦେଇଛନ୍ତି—ଏ ସତ୍ୟ ଆଗରେ ମିଷ୍ଟର ଶେନ୍‌ ଶଙ୍କିଗଲେ; ନିଜର

ଅକୃତ୍ରିମ ସ୍ୱଚ୍ଛତା ଯୋଗୁଁ ସେ ସତ କଥାଟା ଲୁଚାଇ ବି ପାରିଲେ ନାହିଁ । ଶୁଖିଲା ମୁହଁରେ ଟିକିଏ ହସି କହିଲେ, "ଏତିକି ହୋଇଛି ଯେ, ମିସେସ୍ ହଣ୍ଟର ଆଜି ମୋତେ ପ୍ରତିଶ୍ରୁତି ଦେଇଛନ୍ତି, ସେ ତାଙ୍କ ସ୍ୱାମୀଙ୍କୁ ପ୍ରବର୍ତ୍ତାଇବେ—ମାନେ କହିବେ ମୋ ପାଇଁ କାମଟା ଯୁଟିଦେବାକୁ ।" ଗଳା ସଫା କରି ପୁଣି କହିଲେ, "ତୁମେ ସେଦିନ ଠିକ୍ କହିଥିଲ, ମିଷ୍ଟର୍ ହଣ୍ଟର ଭାରି ଏକଜିଦିଆ । ବାସ୍ତବିକ୍ ତାଙ୍କ ପ୍ରକୃତି ଭାରି ଖରାପ ତେବେ—।"

ମିସ୍ଲି ରୁମାଲ୍ଟା ଟେବୁଲରେ ଥୋଇଦେଲେ ; କହିଲେ, "ପ୍ରକୃତରେ, ମୁଁ ବିଶ୍ୱାସ କରୁଛି, ମିସେସ୍ ହଣ୍ଟର ବି ଭାରି ଜିଦ୍‌ଖୋର । ବର୍ତ୍ତମାନ ବୁଝୁଛି, ତାଙ୍କର ପ୍ରକୃତି ଖରାପ । ଜବରଣୀ ମାଇକିନିଆ ହୋଇଥିବାରୁ, ତାଙ୍କର ଯାହା ଇଚ୍ଛା ସେ କଥା ସ୍ୱାମୀଙ୍କୁ ଜିଦ୍‌କରି କରାଇବେ ।"

ତାଙ୍କୁ ଅନୁକମ୍ପା ଦେଖାଇବା ସ୍ତ୍ରୀଙ୍କ ପ୍ରତି ଏପରି ଶଠତା କରିବା ଯୋଗୁଁ ତାଙ୍କର ଆତ୍ମଗ୍ଲାନି ହେଲା, କିନ୍ତୁ ମିଷ୍ଟର୍ ଶେନ୍‌ଙ୍କର ଅନୁଗତ ହେବାକୁ ସେ ଆବଶ୍ୟକ ମନେକଲେ ।

ଓଦା ଆଖିପତା ଟେକି ମିଷ୍ଟର୍ ଶେନ୍‌ଙ୍କ ଆଡ଼େ ଚାହିଁ ସେ କହିଲେ, "ଭଲ କାମଟିଏ ପାଇଲେ ବୋଲି ମୋତେ ବଡ଼ ସୁଖ ଲାଗୁଛି । ଆପଣଙ୍କ ପରି ଏଡ଼େ ବୁଦ୍ଧିମାନ, ଶିକ୍ଷିତ ଓ ଭଦ୍ର ଲୋକ ବାସନମାଜିବା ଭଳି ଘୃଣ୍ୟକାମ କରିବାର ନୁହେଁ । କିନ୍ତୁ କମିଶନ ଚାଲିବ ବୋଲି ଭୟ କରନ୍ତୁ ନାହିଁ । ମୋର ଗୋଟିଏ ଚିତ୍ର ଆଜି ବିକ୍ରୀ ହୋଇଛି—୫୦ ଡଲାର୍ ; ଅବଶ୍ୟ ଏଥିରୁ ମୁଁ ଆଗତୁରା ନେଇଥିବା ପାଞ୍ଚ ଡଲାର୍ ଓ ଚିତ୍ରାଳୟର କମିସନ୍ କଟିବ । କିନ୍ତୁ ମୋର ଚିତ୍ରଟାଏ ବିକ୍ରୀ ହେଲାଣି ଯେତେବେଳେ ଆହୁରି ଆଙ୍କିବି, ଏଥର ପାରିବି ବୋଲି ଆତ୍ମବିଶ୍ୱାସ ଆସିଲାଣି । ଏଠାରେ ଅନେକ ଦୃଶ୍ୟର ଚିତ୍ର ଆଙ୍କିବି, ଶେଷରେ ଜାତିସଂଘ ପ୍ରାସାଦକୁ ବି ଆଙ୍କିବି ।"

ଏଭଳି ଭାଗ୍ୟ ଆସି ପହଞ୍ଚିବା ମିଷ୍ଟର ଶେନ୍‌ଙ୍କର ପ୍ରତେ ହେଲାନାହିଁ । ସେ ହସି ପକାଇଲେ—ସାଙ୍ଗେ ସାଙ୍ଗେ ବୁଝିଲେ ହସିବାଟା ଭୁଲ ହେଲା—ମୂର୍ଖାମୀ । ତେଣୁ ସେ ସାଙ୍ଗେ ସାଙ୍ଗେ ଗମ୍ଭୀର ହୋଇଯାଇ ଘୋଷଣା କଲେ, "ଆଜିଠାରୁ ତୁମ ଦାୟିତ୍ୱ ମୁଁ ନେବି ।"

ମିସ୍ ଲି ଦୁଇଟିଯାକ ହାତ ମିଷ୍ଟର୍ ଶେନ୍‌ଙ୍କ ହାତରେ ଦେଲେ ; କହିଲେ, "ସେତିକି ଅନୁଗ୍ରହ କର । ମୋତେ ବଡ଼ ନିଦ୍ରାଳିଆ ଲାଗୁଛି ।"

... ... ... ...

ମିଷ୍ଟର୍ ଶେନ୍ ବିଦାୟ ନେଇ ଗଲା ପରେ, ମିସ୍ ଲି ମନେକଲେ, ଯାହା ସବୁ ଘଟିଲା ସେ କଥା ଜଣକୁ କାହାକୁ ନ କହିଲେ ନିଦମାଡ଼ିବ ନାହିଁ , କାହାକୁ ଆଉ କ'ଣ, ଜଣକ ବ୍ୟକ୍ତିତ ଆଉ କିଏ ଅଛି ଯେ କହିବେ ? ସ୍ୟୁଙ୍କୁ କହିବାକୁ ହେବ । ସେ ତ ବର୍ତ୍ତମାନ ତାଙ୍କର ପ୍ରିୟତମ ବନ୍ଧୁ । ମିଷ୍ଟର ଶେନ୍ ବନ୍ଧୁ ଥିଲେ ସିନା, ସେ ତ ବର୍ତ୍ତମାନ ତାଙ୍କର ବାଗ୍‌ଦତ୍ତ ସ୍ୱାମୀ । ସ୍ୱାମୀ ଓ ବନ୍ଧୁ—ଏ ଦୁଇ ସଂପର୍କରେ ସ୍ୱାତନ୍ତ୍ର୍ୟ ରକ୍ଷା କରିବାକୁ ହେବ ।

ଟେଲିଫୋନ୍‌ରେ ସ୍ୟୁଙ୍କର ଜବାବକୁ ସେ ପ୍ରତୀକ୍ଷା କରି ରହିଥାନ୍ତି । ଶେଷରେ ଜବାବ୍ ଆସିଲା, ବାୟୁମଣ୍ଡଳରେ ଏତେ ବାଟ ଆସି ସ୍ୱର ଟିକିଏ ଅସ୍ପଷ୍ଟ ହୋଇଥାଏ ପରା !

ସ୍ୟୁ ପଚାରିଲେ, "କିଏ ସେ ।"

ମିସ୍ ଲି ମଧୁର ଭାବରେ ଜବାବ ଦେଲେ, "ହେଲୋ ! ମତେ କ୍ଷମା କରିବ । ମୁଁ ବଡ଼ ଅବସ୍ଥାରେ ତୁମକୁ ଏତେବେଳେ ନିଦରୁ ଉଠାଇଲି ।"

ସ୍ୟୁ ଉତ୍ତର ଦେଲେ, "ମୁଁ ଗୋଟାଏ ନିଦ-ବଟିକା ଖାଇ ବଡ଼ ଭୁଲ କରିଛି । ନଖାଇଲେ ତ ଚଳିଲା ନାହିଁ । ଟେଡ୍ ମୋ ମୁଣ୍ଡକୁ ଏକାବେଳକେ ଗରମ କରିଦେଲେ ।"

ମିସ୍ ଲି ଏ କଥା ନଶୁଣିଲା ପରି କହିଲେ, "ଆଗ ତୁମକୁ ମୋ କଥା କହିଦିଏଁ । ମୋର ବିବାହ ସ୍ଥିର ହୋଇଯାଇଛି ।"

"ଏଁ"—ସ୍ୟୁଙ୍କର ସ୍ୱରରୁ ଜଣାଗଲା, ତନ୍ଦ୍ରା ଏକାବେଳକେ ଛାଡ଼ିଯାଇଛି ।

ସଙ୍ଗୀତ ପରି ମିସ୍ ଲିଙ୍କର ସ୍ୱର-ଲହରୀ ଟେଲିଫୋନ୍ ତାରରେ ବାଜି ଉଠିଲା, "ମୋତେ ବି ଏକଥା ବଡ଼ ଆଶ୍ଚର୍ଯ୍ୟ ଲାଗୁଛି । ଯା' ମୋର ମନଲକ୍ଷ୍ମୀନ କର୍ତ୍ତବ୍ୟରେ ନଥିଲା । ମିଷ୍ଟର୍ ଶେନ୍ କେଡେ ଭଲ, ଆସି

କହିଲେ ଯେ ସେଦିନ ସେ ଭୁଲ କରିଥିଲେ—'ପ୍ରକୃତରେ ତୁମ
ସ୍ୱାମୀଙ୍କର ହିଁ ପ୍ରକୃତ ଖବର' ବୋଲି ଆଜି ମାନିଲେ ।"

ସ୍ୟୁ ଠୋ ଠୋ ହସି କହିଲେ, "ମୁଁ ବାଜିମାରି କହିପାରେ, ଏକଥା ଶୁଣି ତୁମେ କହିଲ ଯେ, ବାସ୍ତବିକ୍ ଖବର ପ୍ରକୃତିଟା ମୋର, ଟେଡ୍‌ଙ୍କର ନୁହେଁ ।"

ମିସ୍ ଲି ହସି ହସି କହିଲେ, "ମୋତେ କ୍ଷମା କରିବ ।"

ସ୍ୟୁ ଚିଛରେ, ଅଭିମାନ ପ୍ରକାଶ କଲାପରି ଗୁଁ ଗୁଁ ହୋଇ କହିଲେ, "ହଉ, ମୁଁ ସେ କଥା ଧରି ବସୁନାହିଁ । ମୋର ଯାହା ହେଉ ପଛେ, ତୁମେ କମିତି ସୁଖରେ ରହ । ଆଚ୍ଛା ବାହାଘର କେବେ ? ତାଙ୍କ କାମ କଥା କ'ଣ ହେଉଚି ?

ମିସ୍ ଲି ତ ଏକଥା କହିବାକୁ ବଆରି ଥାନ୍ତି । "ମିଷ୍ଟର୍ ହଣ୍ଟର୍ ଦୟା କରି ଶେନ୍‌ଙ୍କ ପାଇଁ ଗୋଟିଏ କାମ ଯୋଗାଡ଼ କରି ଦେଉଛନ୍ତି । ତା'ପରେ ଆମେ ଗୋଟିଏ ଫ୍ଲେଟିଆ ବସାଘର ଖୋଜିବୁ—ଶେନ୍ କହୁଛନ୍ତି, ସେଥିରେ ବୋଷେଇଘରଟିଏ ଥିବ, ବୈଠକଖାନା ଥିବ, ୪ଟି ଚଉକି, ଗୋଟିଏ ଟେବୁଲ୍, ଟେବୁଲ ଉପରେ ଥିବ ଗୋଟିଏ ଫୁଲର ଦାନି, ପୁଣି ଶୋଇବା ଘର ଓ ଗାଧୁଆଘର । ପଛରେ ପୁଣି ଟେଲିଭିଜନ୍ ଆସିବ ବୋଲି କହିଛନ୍ତି । ଗର୍ଟ୍ରୁଡ଼୍ ଗ୍ୟାଲେରୀରୁ ଟେଲିଫୋନ ଆସିଛୁ, ମୋ ଛବି ବିକ୍ରୀ ହୋଇଛୁ—ମତେ ବଡ଼ ଆନନ୍ଦ ଲାଗୁଛୁ । ମୋର ଆଶା, ମୋର ଆଉ ଛବି ବି ବିକ୍ରୀ ହେବ—ହେଲେ, ଟେଲିଭିଜନ୍‌ଟା ଶୀଘ୍ର ଆସି ପାରିବ । ରାତିରେ ଶେନ୍ ଓ ମୁଁ ଟେଲିଭିଜନକୁ ଚାହିଁ, ଆମର ସବୁ ଦୁଃଖଦୈନ୍ୟ ପାସୋରି ଦେବୁ ।"

ସ୍ୟୁ ପଚାରିଲେ, "ଆଚ୍ଛା, ଆଜି ତମ ସଙ୍ଗେ ଦେଖାହେଲାବେଳେ ଏସବୁ ହେଉଚି ବୋଲି ମୋତେ ପଦେ କହି ନଥାନ୍ତ ?"

ମିସ୍ ଲି ମାନିଗଲେ, "ମୁଁ କ'ଣ ସେତେବେଳେ ଏସବୁ କିଛି ଜାଣିଥିଲି ? ହଠାତ୍ ପରି ସବୁ ସେଇଲେ ଘଟିଗଲା । ମୋତେ କିନ୍ତୁ ଜଣାପଡ଼ୁଛୁ, ମୋ ଅନ୍ତର ଏଇଆ ଆଶାକରି ରହିଥିଲା ।"

ସ୍ୟୁ ଏସବୁ ଶୁଣୁ ନଥାନ୍ତି । ତାଙ୍କର ଯୋଜନା ଚାଲିଥାଏ । "ମର୍ଣ୍ଣିଂ ସାଇଡ୍ ଡ୍ରାଇଭରେ ଗୋଟାଏ ଘର ଅଛି, ମୁଁ ଜାଣେ । କାଲି

ସତରେ ମୁଁ କାଗଜରେ ଦେଖିଲି । ମୁଁ ମୋର ଏମିତି ଗୋଟାଏ ଘର ଦରକାର ହୋଇପାରେ ବୋଲି ଭାବୁଥିଲି । କିନ୍ତୁ ଆଗ ତୁମେ ଏ ଘରଟା ନିଅ । ତେବେ ବିଜ୍ଞାପନରେ ଲେଖାଥିଲା 'ଶୀଘ୍ର ନେବା ଦରକାର' ।"

ମିସ୍ ଲି ଚମକି ପଡ଼ିଲେ, "ଓଃ, ତା'ହେଲେ ତ ଆମକୁ ସାଙ୍ଗେ ସାଙ୍ଗେ ବିଦା ହେବାକୁ ପଡ଼ିବ । ଘର ମିଳିବା ତ ଆଜିକାଲି ଭାରି କଷ୍ଟ ! ଶେନ୍ କହୁଥିଲେ, 'ଘର ପାଇଁ ବହୁତ ଲୋକ ବୁଲୁଛନ୍ତି' । ନାଇଁ ?"

ସ୍ୟୁ କହିଲେ, "ଲକ୍ଷ, ଲକ୍ଷ" । ସେ ଖୁବ୍ ହସିଲେ , ମନ ଆନନ୍ଦରେ କହିଲେ, "ବହୁତ ଲୋକ ଘର ପାଇଁ ଚେଠେରିଲ କରି ବୁଲୁଛନ୍ତି । ହଉ, ମେଇ ! ଯାଅ ଶୋଇବ । କାଲି ସକାଳୁ ମୁଁ ଡାକିବି ।"

"ସ୍ୟୁ ମାଣ୍ଡିରେ ମୁଣ୍ଡ ଦେଇ ପଡ଼ି ରହିଲେ । ମନରେ ଆନନ୍ଦ ଲାଗି ରହିଥାଏ । ଆପଣାକୁ ସାବାସ୍ ଦେଉଥାନ୍ତି । ସେ ଏସବୁ କରିଛନ୍ତି ଶେନ୍‌ଙ୍କୁ କର୍ମପ୍ରବଣ କରି ଓ ଚଟପଟି କିଣି । କାଲି ସେ ମେଇକୁ ନେଇ ଘରଟା ଦେଖାଇ ଆଣିବେ । କିନ୍ତୁ ବିବାହଟା ହେବ ତାଙ୍କ ନିଜ ଘରେ । ଗୋଟାଏ ଭାରି ମଜଲି ହେବ । ସେ ତାଙ୍କର ସବୁ ସାଙ୍ଗଙ୍କୁ ଡାକିବେ । ସମସ୍ତଙ୍କୁ ବିଚିତ୍ର ଲାଗିବ—ଏ ଗୃହିଣୀଙ୍କ ବାହାଘର ।"

କିନ୍ତୁ ଶେନଙ୍କ କାମଟା । ଏ ସବୁ ଯୋଜନାର ତ ମୂଳରେ ଏଇ କାମ । ସ୍ୟୁଙ୍କୁ କିନ୍ତୁ ଖୋଜିବାର ଭାର ଶେନ୍‌ଙ୍କ ଉପରେ । ତରତର ହୋଇ ସେ ଶେଯରୁ ଉଠିଲେ ଓ ଯେଉଁ ଦୁଆରଟା ଏତେ ଜୋରରେ ବନ୍ଦ କରିଥିଲେ ତାକୁ ଯାଇ ଫିଟାଇଲେ । ଶୋଇବା ଘର ଓ ଅତିଥି ଘର ମଝିରେ ଏ ଦୁଆରଟା । ଅତିଥିଘରେ ଟେଡ୍ ନିଶ୍ଚିନ୍ତ ହୋଇ ନିଘୋଡ଼ ନିଦରେ ଶୋଇଥାନ୍ତି । ଆକାଶରୁ ନିର୍ମଳ ଚନ୍ଦ୍ରକିରଣ ତାଙ୍କ ଉପରେ ପଡ଼ୁଥାଏ ।

ସ୍ୟୁ ଟେଡ୍‌ଙ୍କ ପାଖକୁ ଯାଇ ନିର୍ମମଭାବେ ତାଙ୍କୁ ଖୁବ୍ ହଲେଇଲେ; ଡାକିଲେ, "ଟେଡ୍, ଉଠ ଉଠ, ଉଠ ମ ।"

ଟେଡ୍ କ୍ଳାନ୍ତିରେ 'ଉହୁ' କହି ଆଖି ମେଲିଲେ ଓ ବିସ୍ମୟରେ ତାଙ୍କୁ ଚାହିଁରହି କହିଲେ, "କ'ଣ ହେଲା ?"

"ଟେଡ୍, ମେଇ ଓ ଶେନ୍‌ଙ୍କର ବାହାଘର ହେଉଚି ।"

ଟେଡ୍ ନିଦ ଛଡ଼ାଇବାକୁ ମୁଣ୍ଡ ଝାଡ଼ିଲେ ଓ ହାଇ ମାରୁ ମାରୁ କହିଲେ, "ପ୍ରଭୁ ହେ ! ମୁଁ ଭାବୁଥିଲି ଏ ଘରେ ନିଆଁ ଲାଗିଗଲା ।"

"ମୁଁ ଶେନ୍‌କୁ ଜବାବ୍ ଦେଲି, ତୁମେ ତାଙ୍କ ପାଇଁ ଗୋଟାଏ କାମ ଖୋଜିଦେବ । ତେବେ ତାଙ୍କର ବାହାଘର ହୋଇପାରିବ । ମୋଠାରୁ ଶୁଣିବାମାତ୍ରେ ଶେନ୍ ମେଇ ପାଖକୁ ଯାଇ ବିବାହ ପ୍ରସ୍ତାବ କରି ବସିଛନ୍ତି !"

ଟେଡ୍ ଉଠି ବସି କହିଲେ, "ପୁଣି ଧରିଲାଣି ତୋ'ର ପୁରୁଣା ରୋଗ ।"

"ଥାଉ, କଳି ଆରମ୍ଭ କରନାହିଁ" ବୋଲି କହି ସୁ ଟେଡ୍‌ଙ୍କର ପାଟିରେ ହାତ ଦେଇଦେଲେ !

ସେ ଯେଉଁ ଚିଠିଟା କଣିଲେ, ମେଇର ଚିଠି; ତାହା କ'ଣ ହଠାତ୍ ସୁଙ୍କର ମନେ ପଡ଼ିଗଲା ? ସେ ତ ସେଇ ପରିଚିତ ଛବି-ଦୃଶ୍ୟ— 'ଅନ୍ଧାରୁଆ ସ୍ତ୍ରୋଟିଆ ଗିର୍ଜା ଓ ନଗ୍ନଟିଆ ଆଲୋକିତ ବାତାୟନ' । ତାଙ୍କର ନିଜ ଗଳି, ଯାହାକୁ ଟେଡ୍ ଓ ସେ ଏତେଥର ପୂର୍ବେ ଏକାଠି ଦେଖିଥିଲେ । ସେତେବେଳେ ସେ ତଳ ମହଲାରେ କାମ କରୁଥାନ୍ତି । ଟେଡ୍ ଓ ସେ ସବୁଦିନ ଉପରକୁ ରହନ୍ତି, କାମ କଲା ପରେ ଛଳନା କରି । ସମସ୍ତେ କାମ ସାରି ଚାଲିଗଲା ପରେ ସେ ଚୁମା କରି ଆସି ଟେଡ୍‌ଙ୍କ ପାଖରେ ପହଞ୍ଚଯା'ନ୍ତି । ସେଇ ତ ଟେଡ୍‌ଙ୍କ ଅଫିସ ଝରକା ! ଟେଡ୍ ସେଇଠାରେ ବସି ଏକୁଟିଆ କାମ କରୁଥିଲେ ; ସେଦିନକାଲେ ମେଇ ଯାଇ ତାଙ୍କ ପାଖେ ପହଞ୍ଚି ସେଇଠାରୁ ଗଳିର ଦୃଶ୍ୟଟି ଦେଖି ଆଙ୍କିଛି । ଟେଡ୍ ସେତେବେଳେ ଏକୁଟିଆଟି ବସି ସେଠାରେ କାମ କରୁଥିଲେ କାହିଁକି ? ଘରକୁ ଆସିବାକୁ ମନ ହେଉ ନଥିଲା ବୋଲି । ଘର ଭାଙ୍ଗିଲେ ସେଇ ଝରକାଟି ହିଁ ତାଙ୍କର ଆଶ୍ରୟ ହୋଇ ରହିବ ! ଉଃ, ସେ କେଡ଼େ ଅଲକ୍ଷଣୀ ହୋଇ ସ୍ୱାମୀକୁ ଏତେ କଷ୍ଟ ଦେଇଛି !

ଅନୁଶୋଚନାରେ ଥରି ଥରି ସୁ କହିଲେ, "ମୋତେ ଭାରି ଶୀତ । ତୁମ ପାଖେ ଟିକିଏ ଶୋଇବାକୁ ଦିଅ ।"

ଟେଡ଼୍ ଘୋଡ଼ହେଲା ଟେକ ଦେଲେ ; ସୁ୍ୟ ଭିତରକୁ ପଶି ଗଲେ ।

"ଟେଡ଼୍ ମୋତେ ଠିକଏ ଜାକିଧର । ମୁଁ ହଠାତ୍ ଗୋଟାଏ କଥା ବୁଝିପାରୁଛି ।"

ଟେଡ଼୍ ସୁ୍ୟଙ୍କୁ କୁଣ୍ଢାଇ ଧଇଲେ । ତଥାପି ଟିକେ ଚିଡ଼ ହୋଇ ସ୍ୱରକ୍ଷିରେ କହିଲେ, "କ'ଣ ବୁଝିଲୁ ? ତୁ ତ ଯୁଗେ ହେଲା ମୋ ପାଖ ପଶିନାହୁଁ !"

"ସେ କଥା ସତ । କିନ୍ତୁ ମୁଁ ମେଇର ଶହଟିଏ କିଣିଛି । ତାହା କ'ଣ ଏପର୍ଯ୍ୟନ୍ତ ଜାଣିପାରିନଥିଲି । ସେ କ'ଣ ଆଙ୍କିଛନ୍ତି, ଏଇଲେ ହଠାତ୍ ବଣିଗଲା । ସେଇ ଝରକା ! ଓହୋ, ଟେଡ଼୍ ଆଜ କେତେ କଥା ମନେ ପଡ଼ୁଛି । ତମେ ଏ ଘରେ ଯେତେ ଆଲୁଅ ଅଛି ସବୁ ଏକାବେଳକେ ଜଳାଇ ରଖିଲେ ମୁଁ ଆଉ ପଦେ ବି ପାଟି ଫିଟାଇବି ନାହିଁ । ଘରେ ସବୁ ଝରକାକୁ ଏଥର ଆଲୋକିତ କର ।"

ଟେଡ଼୍ ପଚାରିଲେ, "କ'ଣ ଗୁଡ଼ାଏ ଏମିତି ବକର ବକର ହେଉଚୁ ?"

ଟେଡ଼ଙ୍କ କାନ୍ଧ ଭିତରେ ମୁହଁ ଗୁଞ୍ଜି ସୁ୍ୟ କହିଲେ, "ନାଇଁ ମ କିଛି ନାହିଁ । ମୋ କଥା କିଛି ଧର ନାଇଁ । ମୋ ପଛଆଡ଼େ ସ୍କୁଦରକୁ ଠିକଏ ଜାକିଜୁକି ଦିଅ । ଟେଡ଼୍ ! କାହା ଦୋଷରୁ ଆମେ ଏମିତି ହେଉଥିଲେ ସେ କଥା ଆଉ ଧରନାହିଁ, ଧରିବାରେ ଲାଭନାଇଁ । ମୋର ଏତିକି—ମୁଁ ଆଉ ଏକୁଟିଆ ଶୋଇ ପାରିବି ନାହିଁ ।"

ସୁ୍ୟ କହିବା ଅନୁସାରେ ସେ ଘୋଡ଼ହେଲାରେ ତାକୁ ଭଲ କରି ଜାକିଜୁକି ଆଣିଲେ । ସବୁଦିନ ତା' ବ୍ୟବହାରରେ ଯେପରି ବିବ୍ରତ ହୁଅନ୍ତି, ଆଜ ବି ସେଇପରି ହେଉଥାନ୍ତି । ତେବେ 'ପଛ କଥା ଧରନାଇଁ' ବୋଲି ତ ସେ କହୁଛି ! ଠିକ୍ ! ବୋଧହୁଏ ଠିକ୍ କହୁଛି । କୌଣସି କଥା ଧରିବସିବା ତାଙ୍କର ବି ବର୍ତ୍ତମାନ ଦରକାର ନାଇଁ । ହେଇଟି ତ ତା'ର ମୁଣ୍ଡ ଆସି ତାଙ୍କ ଗୁଡ଼ିରେ ରହିଛି ! ହେଇଟି ତ ସେ ତାଙ୍କର ବାହୁବନ୍ଧନରେ ବନ୍ଧା । ଏକଥା ଯେତେବେଳ ଯାଏଁ ହେଉଥିବ, କାହା କଥାକୁ କିଏ ପଚାରୁଛି ?

# ରାତ ନର୍ସ

ସେ ନୀରବରେ କୋଠରୀ ଭିତରେ ପଶିଲେ ; ଜୋତାରେ ପଶମପଟିର ତଳଥିବାରୁ ପାଦଶବ୍ଦ ଶୁଣାଯାଇ ନଥିଲା । ରାତିର ଅନ୍ଧାରରେ, ଶଯ୍ୟାପାଖରେ ଥିବା ଟେବୁଲ ଉପରର ବତିରୁ କ୍ଷୀଣ ଆଲୋକ କୋଠରୀ ଭିତରେ ପଡୁଥାଏ । କୋଠରୀ ଭିତରେ ଧୀରେ ଧୀରେ ପଦଚାରଣ କରି, ଶଯ୍ୟା ପାଖରେ ଯାଇଁ ସେ ଝୁଙ୍କି ପଡ଼ିବାବେଳେ, ମଣ୍ଡଦେଇ ଇସ୍ତ୍ରୀ କରାହୋଇଥିବା ତାଙ୍କ ପୋଷାକ ସାମାନ୍ୟ ଖଡ଼ଖଡ଼ ହେଲା । କିନ୍ତୁ ଶଯ୍ୟାରୁ ନିଶ୍ୱାସ ନେବାର ଶବ୍ଦ ବି ଶୁଣାଯାଉ ନଥାଏ ।

ସେ ଡାକିଲେ, "କ୍ୟାପ୍‌ଟେନ ବେଣ୍ଟ୍‌ଲି !"

ତାଙ୍କର ସ୍ୱର ଧୀର ଅଥଚ ସ୍ପଷ୍ଟ । କିନ୍ତୁ ଉତ୍ତର କିଛି ନାହିଁ ! ତେବେ କ'ଣ ସେ ଆସି ପହଞ୍ଚିବାରେ ବିଳମ୍ବ କରିବାରୁ, ସବୁ ସରିଯାଇଛି ? ପାଖ ୱାର୍ଡ଼ରେ ଗୋଟିଏ ଟୋକାକୁ ଔଷଧ ଦେଇ ବେହୋସ୍ କରାଯାଇ-ଥିଲା ; ଚେତା ଫେରିବା ପରେ ସେ କାନ୍ଦି ଉଠିଲା । ତାକୁ ବୋଧସୋଧ କରି ଫେରୁ ଫେରୁ, ଏଠାକୁ ଆସିବାର ଟାଇମ୍ (ଘିଣ୍ଟା) ପାର ହୋଇଯାଇଥାଏ ।

ସେ ପୁଣି ଡାକଲେ, "କ୍ୟାପ୍‌ଟେନ୍ ! ହେଇଟି, ମୁଁ ଯେ ଆସିଲିଣି ।"

ସେ ରୋଗୀର କପାଳରେ ହାତ ମାଇଲେ । ଏଥିରେ ମାଂସ ବୋଲି ଟିକିଏ ନଥାଏ । ଚମ ତଳେ, ଆଁନମୁଣ୍ଡା ହାଡ ଖାଲୁଆ ହୋଇଯାଇଥାଏ । ଚମ ହାତକୁ ଥଣ୍ଡା ଲାଗୁଥାଏ ।

ଧୀରେ ଧୀରେ ସେ ପୁଣି ଡାକଲେ, "ଜର୍ଓଫ୍, ଫେରି ଆସ ।"

ରୋଗୀ ଦୀର୍ଘନିଃଶ୍ୱାସ ମାଇଲା । ନର୍ସ ଅନୁଭବ କଲେ, ତାଙ୍କ ହାତ ତଳେ କ୍ଷୀଣ କମ୍ପନର ଅନୁଭୂତି । ଶଯ୍ୟା ଉପରେ ଥିବା ଆଲୁଅକୁ ସେ ତରତରରେ ଜାଳିଦେଲେ । ତାହାର ରୁକ୍ଷ ଧବଳିମା ରୋଗୀର ମୁଖ-ମଣ୍ଡଳରେ ଝଲସିଗଲା ।

ନର୍ସ ଚୁପ୍‌ଚୁପ୍ କରି କହିବାକୁ ଲାଗିଲେ, "ହଇଏ ଜର୍ଓଫ୍ ! ତୁମେ କେଡ଼େ ଠକ ସତେ ! ସାମାନ୍ୟ ମିନିଟ୍ କେତୋଟା ମୁଁ ଡେରି

କରଦେଲ ବୋଲି, ତୁମେ ଖସିଯିବାକୁ ବସିଛ ! ଗଲାବେଳେ ମୁଁ କହିଯାଇଥିଲି ଫେରିବି ବୋଲି, ଆଉ ତୁମେ ଜବାବ୍ ଦେଇଥିଲ—"

ଏହିପରି କହିବା ଭିତରେ ସେ ତରତର ହୋଇ କାମରେ ଲାଗିଥାନ୍ତି ; ପାଖରେ ଇଞ୍ଜେକ୍‌ସନ୍ ସିରିଞ୍ଜ୍ ପ୍ରସ୍ତୁତ ହୋଇ ଥିଲା ; ତମ ତଳେ ସେ ଗୋଟାଏ ଇଞ୍ଜେକ୍‌ସନ୍ ଫୋଡ଼ ଦେଇ, ଉପରେ ଇଲେକଟ୍ରିକ୍ ପ୍ୟାଡ୍‌ର ସେକ ଦେଉଥାନ୍ତି, କାକର ହୋଇଯାଇଥିବା ଦେହରେ ତାପ ଫେରାଇ ଆଣିବାକୁ ।

ଭିତରେ କୋମଳ କିନ୍ତୁ ବାହାରେ କର୍କଶ- ଏହିପରି ସ୍ୱରରେ ସେ ଆକଟ କରି କହିଲେ, "ଦେଖିଲ ! ଏ କି ଆଚରଣ ସତେ ! ମୋ'ର ସାମାନ୍ୟ କେତେ ମିନଟ ଡେରି ହୋଇଗଲା ବୋଲି- ମୋତେ କ'ଣ ତମ ଜଣକୁ ଖାଲି ଚାହିଁ ରହିବାକୁ ବେଳ ଅଛି ?"

ରୋଗୀର ପାଣ୍ଡୁର ଅଧର କମ୍ପିଲା, "ମୋ'ର କ'ଣ —"

ନର୍ସ୍ ସାଙ୍ଗେ ସାଙ୍ଗେ ଜବାବ ଦେଲେ, "ନା, ନା, ତୁମର ସେପରି କିଛି ହେଉନାହିଁ । ତୁମେ ସେପରି ଗୁଡ଼ାଏ ଦୁଶ୍ଚିନ୍ତା ମନରେ ଭର୍ତ୍ତି କରନାହିଁ ବୋଲି, ମୁଁ କହୁଛି । ତୁମର ଯିବାବେଳ ଆସିନାହିଁ । ମୁଁ ବି ତୁମକୁ ଯିବାକୁ ଦେବିନାହିଁ । ପାହାନ୍ତିଆ ପହରର ଡିନଟା ବେଳ ହୋଇଥିବାରୁ ତୁମେ ନିଜେ ଏପରି ହାଲ ଛାଡ଼ି ବସିଛ । ବାପରେ ! କି ବିପଦ ! ତୁମକୁ ସମ୍ଭାଳିବାକୁ ମୁଁ କେତେ ଧାଇଁ ହେଉଛି, ପ୍ରିୟ ।"

ରୋଗୀ ଆଖି ନମେଲାଇ କହିଲେ, "ମୋତେ ଆଉ ଥରେ ସେଇମିତି ଡାକ ।"

"ନା, ତୁମେ ଯଦି ପୁଣି ତାଜା ନହୁଅ, ତେବେ ମୁଁ ସେମିତି ଡାକିବିନାହିଁ । ଯେ ମୋତେ ଛାଡ଼ି ଚାଲିଯିବାକୁ ବସିଛନ୍ତି, ତାଙ୍କ ଆଗରେ ଗେଲେଇ ହେବାରେ ଫଳ କ'ଣ ?"

"ମୁଁ ଚାହେଁନାହିଁ, ଛାଡ଼ —"

"ହଁ, ତୁମେ ଚାହଁ, ତୁମେ ହାଲ ଛାଡ଼ି ବସୁଛ । ରହିବାକୁ ଚେଷ୍ଟା କରୁନାହଁ । ଏବେ ଚେଷ୍ଟାକର—ନିଜ ମନକୁ ମନ କହ, ମୁଁ ନିଶ୍ଚୟ ବଞ୍ଚିବି —"

"ହଁ, ମୁଁ ନିଶ୍ଚୟ—" ରୋଗୀର ସ୍ୱର ପବନରେ ମିଶିଗଲା ।

"ବଞ୍ଚିବ । କହ, ନଷ୍ଟପ୍ରୟ ବଞ୍ଚିବ, ବଞ୍ଚିବ, ବଞ୍ଚିବ ।"

ରୋଗୀ ଖୁବ୍ ଚେଷ୍ଟା କରି କହିଲେ, "ବଞ୍ଚିବ ।"

"ହଁ, ଏଥର ହେଲା । ତୁମକୁ ବଞ୍ଚିବାକୁ ପଡ଼ିବ, କାରଣ ମୁଁ ତୁମକୁ ମରିବାକୁ ଦେବନାହିଁ । ପ୍ରିୟତମ ! ତୁମେ ବଞ୍ଚିବ, ତୁମର ବିପଦ ଦୂର ହୋଇଛି । ଦେଖିଛି ତ ତୁମେ ନିଃଶ୍ୱାସ ମାରୁଛ, ତୁମ ଦେହର ତାପ ଫେରି ଆସିଲା – ନିଅ, ଏହି ଗରମ ସୁରୁଆ ଟିକକ ପିଅ । ପାହାନ୍ତିଆ-ଡିନିଟା-ବେଳର ଏଇ ସୁରୁଆ ।"

ନର୍ସ ଗରମ ବୋତଲର ଠିପି ଫିଟାଇଲେ ; ଗୋଟିଏ କପ୍‌ରେ ଅଧକପେ ଗରମ ସୁରୁଆ ଢାଳିଲେ ଓ ଅଳ୍ପ ଅଳ୍ପ କରି ତାଙ୍କୁ ଖୋଇବାକୁ ଚେଷ୍ଟାକଲେ । ବାପରେ ! ବାପ ! ରୋଗୀଙ୍କର ଦଫା ତ ରଫା ହୋଇ ଯାଇଥିଲା ! ସେ ଆରପାରିକୁ ଗୋଡ଼ ବଢ଼ାଇ ଦେଇଥିଲେ ଜାଣ – ଆଉ ପାଞ୍ଚ ମିନିଟ ମାତ୍ର ଡେରି ହୋଇଥିଲେ ସବୁ ସରିଥାନ୍ତା । ମୃତ୍ୟୁ ଆସି ଏତେକ ପାଖରେ ପହଞ୍ଚି ଯାଇଥିଲା ! ନାଡ଼ି ତ ଏକାବେଳକେ ମିଳୁ ନଥିଲା । ସେ ତାଙ୍କ ଶିଥିଳ ମଣିବନ୍ଧକୁ ଧରି ଯେତେ ବାରିଲେ ନାଡ଼ି ଚାଲିବାର ଆଦୌ ଜଣାପଡୁ ନଥିଲା ।

ଏଥର ଆଶ୍ୱସ୍ତ ହୋଇ ସ୍ପଷ୍ଟ ସ୍ୱରରେ ସେ ଡାକିଲେ, "ପ୍ରିୟତମ !" —ଖୁବ୍ ଚୁପ୍‌ଚୁପ୍ କରି କହୁଥାନ୍ତି, ଯେପରି ଖଣ୍ଡେ ଦୂରରେ ଥିବା ହେଡ୍‌ନର୍ସଙ୍କୁ ତାଙ୍କ କଥା ଶୁଣାନଯିବ । "ପ୍ରିୟତମ ! ମୁଁ ଏଇଠାରେ ତୁମର ପାଖେ ପାଖେ ରହିବି । ଆଉ କେବେହେଁ ଦଣ୍ଡେ ଛାଡ଼ିକରି ଯିବିନାହିଁ । ପ୍ରାଣପ୍ରିୟ ! ତୁମେ ଯେ ମୋର ଦରକାର । ତୁମକୁ ଛାଡ଼ିଲେ, ଏ ସଂସାର ମୋତେ ଶୂନ୍ୟ ଜଣାପଡ଼ିବ । ମୋ ସଂସାରର ତୁମେ ଇ କେନ୍ଦ୍ରବିନ୍ଦୁ । ତୁମକୁ ଛାଡ଼ି ମୋର ଆଉ କାହାର ପ୍ରୟୋଜନ ନାହିଁ । କାଲି ସନ୍ଧ୍ୟାରେ ଯେତେବେଳେ ଘଣ୍ଟେ ଛୁଟି ମିଳିଲା, ମୁଁ ଯାଇ କ'ଣ କଲି, ଶୁଣିବ ? ତୁମର କଥା ଭାବି ଭାବି ମୁଁ ବୃନ୍ଦାବନ ବାଡିରେ ଘଣ୍ଟାଏ ବୁଲିଲି । ମନେ ମନେ ଛଳନା କରୁଥାଏ, ତୁମେ ମୋ ସାଙ୍ଗରେ ଅଛ । ଆମେ ଦୁହେଁ ଏକାଠି ବଣ ଭିତରେ ବୁଲୁଥାଇଁ ବୋଲି ଭାବୁଥାଏ । ଦୁହେଁ ଏକାଠି ଥାଇଁ, ବଞ୍ଚିଥାଇଁ ବୋଲି ଭାବିକରି ପୁଲକିତ ହେଉଥାଏ । ବଞ୍ଚିବାଠାରୁ ବଡ଼ ଭାଗ୍ୟ ଆଉ କ'ଣ ଅଛି ? ଦୁହିଁଙ୍କୁ ଦୁହିଁଙ୍କ କଣ୍ଠସ୍ୱର ଶୁଭୁଥାଏ ; ଝଡ଼ ପଡ଼ିଥିବା

ପତ୍ର ଉପରେ ଦୁହିଙ୍କ ପାଦ ଗୁଲୁଥିବାର ଦୃଢେଁ ଅନୁଭବ କରୁଥିଲେ । ମୋ ହାତରେ ଥାଏ ତୁମର ହାତ—ଜୀବନ୍ତ, ଉଷ୍ଣ, ଶିଶିର-ସ୍ନାତ ଶତ୍ପୃଳର ସୁଗନ୍ଧ ନାକରେ ବାଜୁଥାଏ । ଶୁଣୁଛ, ମନେ ଅଛି ତ, ମନର ପୁଲକରେ ଆମେ କିପରି ଗୀତଟିଏ ଗାଇଲେ ? ସଙ୍ଗୀତ ! ମନେପକାଅ ସେ ସଙ୍ଗୀତ—"

ତାଙ୍କ ମୁହଁରୁ ଏଇପରି ଅନର୍ଗଳ କଥାର ସୁଅ ଛୁଟିଲାବେଳେ ସେ ଗୁହିଁ ଦେଖିଲେ, ରୋଗୀଙ୍କର ଚେତନା ଫେରି ଆସୁଛି । ତାଙ୍କ ଆଖିପତା ଖେଳୁଥାଏ, ମୁହଁରେ ରକ୍ତିମ ଉଲ୍ଲାସ ବୋଳି ହୋଇ ଯାଇଥାଏ । ହଁ, ଗ୍ଲୁଥାଏ, ଟ୍ରୁ ଆସ୍ତେ, କିନ୍ତୁ ନିଶ୍ଚିତଭାବେ ଗ୍ଲୁଥାଏ ।

ମୁମୂର୍ଷୁ ଯେତେବେଳେ ମରିବାକୁ ମନ କରନ୍ତି, ଯାଆନ୍ତି କୁଆଡ଼େ ? ତାଙ୍କର ନର୍ସ୍ କାମ କରିବାର ସେତେବେଳକୁ ଦଶବର୍ଷ ହୋଇଗଲାଣି, କେତେ ଲୋକ ମରିବାର ସେ ଦେଖିଲେଣି, କିନ୍ତୁ ଅଦ୍ୟାପି କେହି ମଲେ ସେ ଅବିଚଳିତ ହୋଇ ରହିପାରନ୍ତି ନାହିଁ । ହେଡ଼୍ନର୍ସ୍ ତାଙ୍କୁ କହିଥିଲେ, ''ମିସ୍ ବ୍ରାଉନ୍ ! ମୃତ୍ୟୁ ପ୍ରତି ତୁମକୁ ଅଭ୍ୟସ୍ତ ହୋଇ-ଯିବାକୁ ପଡ଼ିବ ।''

ଓଃ ! ସେଥର ସେ ସ୍ୱପ୍ନରେ, ଯେତେବେଳେ ସେ ତାଙ୍କ ପ୍ରଥମ ରୋଗୀକୁ ହରାଇଲେ ! ମହିଳାଟିଏ, ତାଙ୍କ ନିଜ ମା'ଙ୍କ ବୟସର ହେବ—ବେଶ୍ ସ୍ନେହ ମମତାପୂର୍ଣ୍ଣ ଭଲ ଲୋକଟିଏ । କିନ୍ତୁ ଜୀବନ ତାଙ୍କୁ ତିକ୍ତ ଲାଗି ଯାଇଥାଏ ; ଜୀବନ ପ୍ରତି ତାଙ୍କର ଏତେ ବିତୃଷ୍ଣା ଆସିଥାଏ ଯେ, ମୃତ୍ୟୁର ସୀମାରୁ ପଛକୁ ହଟି ଆସିବାକୁ ଟିକିଏ ଚେଷ୍ଟା କରିବାକୁ ବି ମନ ନଥାଏ । ସେ ରୋଗୀଟି ଯେ ମଲେ, "ସେଥିପାଇଁ ସେ (ନର୍ସ) ସମ୍ପୂର୍ଣ୍ଣ ଦାୟୀ ନହେଲେ ବି, କେତେକ ପରିମାଣରେ ଦାୟୀ ବୋଲି ମନେ କରୁଥାନ୍ତି । କିନ୍ତୁ ସେତେବେଳକୁ ସେ ମାତ୍ର ମାସେ ଦୁଇ ମାସ ହେଲା ନର୍ସ କାମ କରୁଥାନ୍ତି ଏବଂ ସ୍ୱପ୍ନର ମାରାତ୍ମକ ପ୍ରଭାବ ସେତେବେଳେ ତାଙ୍କୁ ଜଣା ନଥାଏ । ସ୍ୱପ୍ନର ସବୁବେଳର ଅବଶ୍ୟ ସମାନ ପ୍ରଭାବ ନଥିଲା—କେଉଁ ରୋଗୀକୁ କେତେବେଳ, ଯେପରି ପାହାନ୍ତିଆ ପାଞ୍ଚଟାବେଳେ ବୁଢ଼ ରୋଗୀଙ୍କ ପାଇଁ । କ୍ରମେ ସେ ଜାଣିଲେ ଯେ, ପ୍ରତ୍ୟେକ ରୋଗୀର ବିଭିନ୍ନ ବିପଦ

ସମସ୍ତ ଗଡର ସ୍ୱଭିନ୍ନ ବେଳାରେ ଅଛୁ । ଏହା ଜାଣିବା ପରେ ସେ ଗଡ ନର୍ସ୍ର ଉନ୍ନତି କରିବାପାଇଁ ନିଜେ ମାଗିନେଲେ ।

ହେଡ୍ ନର୍ସଙ୍କୁ କହିଲେ, "ମୁଁ ମୃତ୍ୟୁ ପ୍ରତି କେବେହେଁ ଅଭ୍ୟସ୍ତ ହେବନାହିଁ । ମୋର ପ୍ରାଣ ଥିବାଯାଏଁ ମୁଁ ମୃତ୍ୟୁ ସଙ୍ଗେ ଲଢ଼ିବି ।"

ହେଡ୍ ନର୍ସ୍ କହିଲେ, "ଏମିତି ଗୋଟିଏ ଦିନ ଆସିବ ଯେତେ-ବେଳେ ମୃତ୍ୟୁ, ତୁମ ନିଜକୁ ବି ଅକ୍ତ୍ୟାର କରି ବସିବ ।"

ଟାଣପଣ କରି ସେ ଉତ୍ତର ଦେଇଥିଲେ, "ତଥାପି ମୁଁ ମୃତ୍ୟୁ ସଙ୍ଗେ ଲଢ଼ିବି ।"

ଏଭଳି କହିଲେ ସିନା, କଥାଟି କହିଦେଇ ସେ ଭାବିବାକୁ ଲାଗିଥିଲେ । ମୃତ୍ୟୁ ସଙ୍ଗେ ଏକୁଟିଆ ପଡ଼ିଗଲେ, ଲଢ଼ିବାକୁ ତାଙ୍କର ଶକ୍ତି ରହିବ ତ ? ମଣିଷର ଦେହ ଭିତରର ନିଆଁ ଯେତେବେଳେ ଲିଭିଯିବ, ସେତେବେଳେ ଆଉ ଲଢ଼ିବାକୁ ବଳ ଆସିବ କୁଆଡ଼ୁ ? ନିଆଁ ଜଳିସାରିଲେ ପାଉଁଶ ହେବ ହିଁ ହେବ, ଯଦି କେହି ପୁଣି ନୂଆ ଇନ୍ଧନ ନଯୋଗାଏ, ଯଦି କେହି ଲିଭି ଯାଉଥିବା ଶିଖାକୁ ଉଖାରି, ବର୍ତ୍ତି ବଢ଼ାଇ ନଦିଏ, ନିଆଁ ପୁଣି ନିଜ ବଳରେ ଜଳି ଉଠିବାଯାଏଁ ତାକୁ ଯଦି କେହି ନିଜର ସେବା ଓ ପରିଶ୍ରମଦ୍ୱାରା ବଞ୍ଚାଇ ନରଖେ !

ସେ ଖୁବ୍ ଏକାଗ୍ରଭାବେ କ୍ୟାପ୍ଟେନଙ୍କ ମୁହଁକୁ ଲକ୍ଷ୍ୟକଲେ —ସୁନ୍ଦରମୁହଁ, ଯଦିଓ ଅବସନ୍ନ ହୋଇଗଲାଣି । ଯୌବନର ଦୀପ୍ତି କେଉଁଠି ଚାଲିଯାଇଛି । ସେ ଖୁବ୍ ରୋଗା ହୋଇଗଲେଣି । ଏଥରର ଏ ବେମାରରୁ ଯଦି ବା ଉଭୁରଯା'ନ୍ତି ତଥାପି ସେ ଆଉ ବେଶି ଦିନ ବଞ୍ଚିବାର ସମ୍ଭାବନା ଖୁବ୍ କମ୍ । ଅତୀତର ପାଇଥିବା ଅସ୍ୱାଘାତ ସବୁ ଏତେବେଳକୁ ତାଙ୍କୁ କାବୁ କରିବାକୁ ବସିଛନ୍ତି । ସେତେବେଳେ ଶତ୍ରୁର ତାଙ୍କ ଘା' ସିନା ଶୁଖାଇ ଦେଇଥିଲେ, ଜୀବନୀଶକ୍ତି ଓ ମନର ତେଜ ତ ଫେରାଇ ନଥିଲେ ।

ନର୍ସ୍ ରୋଗୀ ଆଡ଼କୁ ଚାହିଁ ଦେଇ ତରତର ହୋଇ କହିଲେ, "ହେଇଟି, ଦେଖ ! ତୁମେ ପୂରା ଗୋଟାଏ କପ୍ ଗରମ ସୁରୁଆ ଖାଇଛ । ସେଇଥିରେ ତୁମେ ତାଜା ହୋଇ ଯିବାର କଥା । ତୁମ ଦେହ ବି ବେଶ୍ ଉଷ୍ଣ ଅଛି । ମୁଁ ତୁମ ଦେହରେ ହାତ ମାରୁଛି, ଜାଣିପାରୁଛ କି ?"

ସେ ରୋଗୀର ଗାଲରେ ନିଜ ହାତ ନେଇ ରଖିଲେ । ରୋଗୀ ଟିକିଏ ହସିବାକୁ ଚେଷ୍ଟା କଲେ । କହିଲେ, "ମୋତେ ଶୁଣିଲା ପରି ଲାଗିଲା—।"

"ମୁଁ ତୁମକୁ ଫେରି ଆସିବାକୁ ଡାକିବାର ଶୁଣିଲ କି ବୋଲି ପଚାରୁଛ ? ହଁ, ତୁମେ ଠିକ୍ ଶୁଣିଛ । ମୁଁ ପ୍ରାଣପଣେ ତୁମକୁ ଫେରି ଆସିବାକୁ ଡାକୁଥିଲି ।"

"ମୁଁ ଠିକ୍ ଶୁଣିଛୁ ତ, ତୁମେ ମୋତେ କହୁଥିଲ—ବୋଲି !"

"କ୍ୟାପ୍‌ଟେନ୍, ମୁଁ ମୋର କର୍ତ୍ତବ୍ୟ କରୁଥିଲା ବେଳେ ଯାହା ତାହା କହିଥିବ, ଯାହା ତା' ବୋଲି ଡାକିଥିବ । ମୁଁ ବଡ଼ ନୃଶଂସ । ମୁଁ ଅଭଦ୍ର ଭାଷାରେ ଗାଳିଦିଏ । ଅଭିସଂପାତ କରେ । ମୁଁ ତ ତୁମ ଉପରେ ଏକାବେଳକେ ଚଟି ଯାଇଥିଲି—ମୋ'ର ଟିକିଏ ଡେରି ହେବାର ସୁଯୋଗ ପାଇ ତୁମେ ଖସି ପଳାଉଥିଲ ବୋଲି !"

"ନା, ନା, ମୁଁ ତା'—"

"ହଁ ହଁ, ତୁମେ ସେଇଆ କରୁଥିଲ । ମୁଁ ଆସିବା ପର୍ଯ୍ୟନ୍ତ ତୁମେ ସମ୍ଭାଳି ରହିଥିବ ବୋଲି ମୁଁ ଆଶା କରିବାର କଥା । ମୁଁ କ'ଣ ତୁମକୁ କହିନାହିଁ ? ହେଇଟି, ତୁମ ପାଦ ଦୁଇଟିକୁ ଲଗାଇ ମୁଁ ଇଲେକ୍‌ଟ୍ରିକ୍ ପ୍ୟାଡ଼୍‌ଟା ରଖୁଛି···ଏଥର ଆଉ ତୁମେ ଖସିଯାଇ ପାରିବ ନାହିଁ । ଗୋଡ ପାଇବାଯାଏ ହେଇଟି ଏଇଠି ମୁଁ ବସି ରହିବି, ଠିକ୍ ଯେମିତି ସବୁବେଳେ ମୋ ଆଖି ତୁମ ଉପରେ ପଡ଼ୁଥିବ । ତୁମକୁ ବର୍ତ୍ତମାନ ଶୋଇବାକୁ ହେବ ଓ ଶୋଇ ସୁଖସ୍ୱପ୍ନ ଦେଖିବାକୁ ହେବ । ସକାଳ ହେଲେ, ଧୂଆ ଧୋଇ କରି ତୁମର ଦାଢ଼ି ଖିଅର କରିଦେବି, ମୁଣ୍ଡ କୁଣ୍ଡେଇ ଦେବି ଓ ତୁମେ ପେଟପୂରେଇ ଜଳଖିଆ ଖାଇବ—ମୋତେ ଖୁସି କରିବା ପାଇଁ ! ମୋ କଥା ଶୁଣୁଛ ନା କ୍ୟାପ୍‌ଟେନ୍ !"

ନର୍ସ୍ ରୋଗୀଟି ପିଛା ଖୁବ୍ ଲାଗିଥାନ୍ତି, ଛୋଟ ଛୋଟ କାମକୁ ଖୁବ୍ ବଡ଼ କାମ ପରି କରୁଥାନ୍ତି । ଅତି ଯତ୍ନରେ ବିଛଣାଚାଦରକୁ ଶେଯ କଡ଼ରେ ଖୋସି ଦେଉଥାନ୍ତି, ରୋଗୀଙ୍କ ମୁହଁ ଉପରେ ଯୋଡ଼ହେଲା ଚାଦରକୁ ଆଡ଼େଇ ବେକ ପାଖରେ ଚଉଡ଼ି ଦେଉଥାନ୍ତି । ନର୍ସ୍ ଏସବୁ

ଜଲ୍ଲବେଳକୁ ରୋଗୀର ଆଖି ଦୁଇଟି ମେଲିଥାଏ—ନୀଳବର୍ଣ୍ଣର ଆଖି, ତା'ଉପରେ ଘନକୃଷ୍ଣ ଭ୍ରୂଲତା ସାଙ୍ଗକୁ ଚକ ଖଡ଼ି ପରି ଧୋବ ମୁଣ୍ଡବାଳ ।

"ମୋର ମନେହୁଏ, ତୁମେ—ଯାହା ଗପୁଛ ସମଗ୍ର ହସ୍ପିଟାଲକୁ ଶୁଭୁଥିବ—"

"ହଉ ଥାଉ, ଥାଉ, ମୋ ସଙ୍ଗେ ଆଉ କଳି କରନାହିଁ ! ଆଖି ଯୋଡ଼ିକ ବନ୍ଦ କରି ସୁନାପିଲାଟି ପରି ଶୋଇପଡ଼ ।"

"ମୋ ମନ—ତୁମକୁ ଟିକିଏ—ଚାହାଁନ୍ତି ।"

"ହଉ, ଚାହଁ । ମୁଁ ଏଇଠି ବସୁଛି ଯେ, ତୁମେ ମୋତେ ବେଶ୍ ଦେଖିପାରିବ । ଈଶ୍ୱର ଜାଣନ୍ତି, ଦେଖିବା ଭଳି ରୂପ ମୋର ନାହିଁ ।"

ଏ କଥାର ରୋଗୀ କିଛି ଉତ୍ତର ଦେଲେ ନାହିଁ । ଯେଉଁଠି ବସିବେ ବୋଲି ନର୍ସ କଥା ଦେଇଥିଲେ ସେଇଠି ବସିଲେ—ରୋଗୀ ତାଙ୍କ ଆଡ଼କୁ ମିନିଟିଏ ଦୁଇ ମିନଟ ଚାହିଁ ରହୁ ରହୁ ମନକୁ ମନ ଆଖି ମୁଦ ହୋଇଗଲା ଓ ସେ ନିଦ୍ରାରାଜ୍ୟକୁ ଖସିଗଲେ । ନିଦ ହୋଇଗଲାଣି ବୋଲି ଭଲକରି ବାରିବା ପରେ ନର୍ସ ଟିପେଇ ଟିପେଇ ତାଙ୍କ ଖଟିଆ ପାଖକୁ ଗଲେ ଓ ତାଙ୍କ ମୁହଁ ପାଖରେ କାନେଇଲେ । ବେଶ୍ ରୋଗୀଙ୍କର ନିଃଶ୍ୱାସ ପ୍ରଶ୍ୱାସ ଠିକ୍ ଚାଲିଥାଏ, ଘର୍ଘଶ୍ୱାସ ନୁହେଁ, ଯେପରି ଚାଲିବାର କଥା ସେଇପରି । ଆଉ ଚବିଶଘଣ୍ଟା ରୋଗୀ ଥାଇବ; ତା'ପରେ ହୁଏତ, ଏଇଲାଗେ ଯେଉଁ ଅଭିନୟ ହେଲା, ପୃଥିବୀରେ ତାହାହିଁ କହିବାକୁ ହେବ ।

ଏ ଲୋକଟି କିଏ ? କାହିଁକି କେହି ଯାଙ୍କୁ ସନ୍ଧୋଳିବାକୁ ଆସୁନାହାନ୍ତି ? ତାଙ୍କ ବକ୍ଷସ୍ଥରେ ଥିବା ସବୁ ରେକର୍ଡ, ନର୍ସ ତନ୍ନତନ୍ନ କରି ଦେଖିଥାନ୍ତି, କିନ୍ତୁ ସେଥିରେ ଜାଣିବା ଭଳି କିଛି ନାହିଁ ବୋଲି କହିଲେ ଚଳେ । ଯୁକ୍ତରାଷ୍ଟ୍ର ନୌବାହିନୀରେ କ୍ୟାପଟେନ୍, ଜଓଫ୍ ବେଣ୍ଟଲି—ଜନ୍ମସ୍ଥାନ ସାନଫ୍ରାନ୍ସିସ୍କୋ । ଦରିଆପାରିରେ କାମ, ଇଉରୋପ ଓ କୋରିଆ ଉପକୂଳରେ—ଯୁଦ୍ଧରେ ଆହାତ—ଇସ୍, ଆଘାତର ଯେଉଁ ଲମ୍ବ ତାଲିକା [ଦିଆ ହୋଇଛି ତା'କୁ ଗଣିଲେ, ତାଙ୍କ ପୋଷାକରେ

ଥିବା ତୋଉଆ ଚିହ୍ନର ସଂଖ୍ୟା ସଙ୍ଗେ ସମାନ ହେବ । (ପ୍ରଦର୍ଶ ଓ ସାମରିକ କୃତିତ୍ୱର ବର୍ତ୍ତମାନ ସ୍ୱରୂପ ପୋଷାକରେ ଏ ତୋଉଆ ଚିହ୍ନ ଲଗାଇବାକୁ ଦିଆଯାଏ ।)

ନର୍ସ ଯେଉଁ ଚଉକିରେ ବସିଥିଲେ ସେଇଥିରେ କୌଣସି ମତେ ଜାକଜୁକ ହୋଇ ଶୋଇଲେ । ଅନ୍ୟ କେହି ନର୍ସ ଯେ ବର୍ତ୍ତମାନ କାମରୁ ଫୁରସତ୍ ପାଇଲା ପରି ଫୁରସତ୍ ପାଇଥିଲେ, ନିଜ କାମରାକୁ ଚାଲି ଯାଇଥାନ୍ତେ ଏବଂ ସେଠାରେ ନିଜେ ଶେଯରେ କର୍ତ୍ତବ୍ୟ ସରିଛି ବୋଲି ନିଶ୍ଚିନ୍ତରେ ଶୋଇଥାନ୍ତେ । କିନ୍ତୁ ଯେ ନିଜ ଶେଯରେ ଯାଇ ପଡ଼ିଥିଲେ ବି ଶୋଇ ପାରିନଥାନ୍ତେ । ସବୁବେଳେ ଭାବୁଥାନ୍ତେ, ରୋଗୀଟିର ନିଦ ଯଦି ଦେବାରୁ ଭାଙ୍ଗିଯିବ ଓ ସେ ଚାଲିଯାଇଛନ୍ତି ବୋଲି ଜାଣିବ, ତେବେ ? ତେବେ ତ ସେ ଆଉଥରେ ଯାଙ୍କ କଥାରେ ବିଶ୍ୱାସ କରିବ ନାହିଁ । ବିଶ୍ୱାସ ଏକମାତ୍ର ରଜ୍ଜୁ ଯାହାକୁ ଧରି ଯେ, ସଂସାର ସାଗରରୁ ତରିବାକୁ ଭରସା କରିଥାନ୍ତି ।

ପୁଣି, ମିସ୍ ବ୍ରାଉନ୍‌ଙ୍କର ରାତିର ଏଇ ସମୟଟୁକୁ ମହାଭୟ । ସକାଳ ଚାରି ! ଏଇଟା ତାଙ୍କ ନିଜ ପକ୍ଷରେ ବଡ଼ ବିପଦର ବେଳ । ଛ'ଟା ବେଳେ ଯାଇ ସୂର୍ଯ୍ୟ ଉଦୟ ! ସେତେବେଳକୁ ଅପେକ୍ଷା କରିବାକୁ ହେବ—ଲମ୍ବା ସମୟ ! ବ୍ୟସ୍ତଯାକ କାମ, ଦିନତମାମ ନିଦ—ବଡ଼ ଅପ୍ରାକୃତ ପରିସ୍ଥିତି, ମଣିଷର ସମଗ୍ର ଜୀବନଟା ଓଲଟପାଲଟ ହୋଇଯାଏ ଓ ଏ ଓଲଟପାଲଟରୁ ଆରମ୍ଭ ହୁଏ, ମନର ବିଦ୍ରୋହ । ଶୋଇବା ରାତିର କାମ । ଦିନବେଳେ ଏଭଳି ଭଲ କେଉଁ ମୁହୂର୍ତ୍ତ ଅଛି, ଦୁଃଖର ମୁହୂର୍ତ୍ତ ଯେତେବେଳେ ମନ ବାଉଳା ହୋଇଯାଏ ଓ ଅନ୍ତରାତ୍ମାର ଆଲୋକ ଶିଖା ମଉଳି ଯିବାକୁ ବସେ ! ଜୀବନର ବିକାଶ ସ୍ରୋତ ରାତିରେ ଏକାବେଳକେ ରୋକ ହୋଇଯାଏ । ତାଙ୍କୁ ତ ଜଣାପଡ଼ୁଥାଏ, ଠିକ୍ ଯେପରି ତାଙ୍କ ଜୀବନର ଗତି ଏକାବେଳକେ ରୋକ ହୋଇଯାଉଛି ଓ ପୁରୁଣା ଦୁଶ୍ଚିନ୍ତାର ଢାଙ୍କୁଣି ତାଙ୍କ ଉପରେ ଘୋଡ଼ାଇ ହୋଇ ପଡ଼ୁଛି । ରାତି ପରେ ରାତି, ସେ ଅନ୍ୟମାନଙ୍କୁ ବିପଦରୁ ଉଦ୍ଧାର କରିବାରେ ଲାଗିଛନ୍ତି, କିନ୍ତୁ ତାଙ୍କ ନିଜକୁ ରକ୍ଷାକରିବାକୁ ସେ ଅସମର୍ଥ । ଜୀବନରେ ତାଙ୍କର ସୁଖ ନାହିଁ, ବଞ୍ଚିରହିବାକୁ କ୍ଳାନ୍ତ ଆସିଗଲାଣି । ତାଙ୍କର ଘର,

ଦୁଇଟି ବଖରାର ଗୋଟିଏ ଖୁଆଡ଼ି—ସେଇଥିରେ ସେ ଏକୁଟିଆ ବାସ କରୁଛନ୍ତି ନିଃସଙ୍ଗ ଭାବେ । ଏହା ଅପେକ୍ଷା ଭଲରେ ଜୀବନ କଟିବ, ସେ ଆଶା ତାଙ୍କର ନାହିଁ । କେଉଁ କାହିଁ ଯେ ଆଉ କୌଣସି ସ୍ତ୍ରୀଲୋକ ସଙ୍ଗେ ସାଥି ହେବେ ?—ପୁରୁଷ ଜଣକୁ ସାଥି କରି ପାଇବାର ତ କଥା ହିଁ ନାହିଁ । ବାପା ମା'ଙ୍କଠାରୁ ଉତ୍ତରାଧିକାରୀ ସୂତ୍ରରେ ସୁନ୍ଦରପଣ ଟିକିଏ ତାଙ୍କୁ ମିଳିଲାନି କାହିଁକି କେଜାଣି ? ବାପା ମା'ଙ୍କର ରୂପ ତ ତାଙ୍କ ମନରେ ବି ନାହିଁ । ସେ ଦୁହିଁଙ୍କର ଯେଉଁ ରୂପ ମନେପଡ଼େ ତାହା ଏତେ ଝାପ୍‌ସା ଓ ଅସ୍ପଷ୍ଟ ଯେ, ଏ ସବୁ ବେଳରେ ବିଶ୍ୱାସ ହେଉନାହିଁ, ସତେ ସେ ଦୁହିଁଙ୍କୁ ସେ କେବେ ଦେଖିଥିଲେ ବୋଲି । ବୋଧହୁଏ, ବାପା-ମା-ଛେଉଣ୍ଡ ହୋଇ ମାଉସୀଙ୍କ ଘରେ ରହିଲାବେଳେ ସେ ବାପା ମା'ଙ୍କର ରୂପ ମନେ ମନେ କଳ୍ପନା କରିଛନ୍ତି ବା ବିଜ୍ଞାପନରୁ ଓ ସିନେମା ଛବିରୁ ସେମାନଙ୍କ ରୂପ ଗଢ଼ି ତୋଳିଛନ୍ତି ।

ମାଉସୀ କହୁଥିଲେ, "ନାହିଁ ଲୋ ଝିଅ ! ତୋ' ମା'ବାପଙ୍କ ପରି ସୁନ୍ଦର ମଣିଷ ବଞ୍ଚିବାକୁ ଜନ୍ମ ହୋଇନଥାନ୍ତି । ସମସ୍ତେ କହୁଥିଲେ, ସେ ଦୁହେଁ ପରସ୍ପର ପାଇଁ ଗଢ଼ା ହୋଇଥିଲେ । ସେ ଦୁହେଁ ଯେ ରୂପ ଓ ପ୍ରକୃତିରେ ଏତେ ସମାନ ଥିଲେ, ସେଇଥିପାଇଁ ସବୁ ଅନିଷ୍ଟ ହେଲା— ଦୁହେଁଯାକ ସମାନଭାବରେ ବେପରୁଆ, ସମାନ ଭାବେ ବିଶ୍ୱାସ କରୁଥିଲେ ଯେ ସେମାନେ ଭାଗ୍ୟବାନ୍ । ତା' ନ ହୋଇଥିଲେ, ସେମାନଙ୍କ ପରି ଆଉ କିଏ ଭଲା, ଗାଧୁଆ କୁଣ୍ଡ ପରି ଉଡ଼ାଜାହାଜଟାଏ କିଣି ଆକାଶରେ ଦୌଡ଼ ଦେବାକୁ ବାହାରନ୍ତା ।

ତାଙ୍କୁ ତିନିବର୍ଷ ହୋଇଥିବାବେଳେ, ତାଙ୍କର ଏଇ ବାପା ମା' ଦୁହେଁ ପ୍ରତି ରବିବାର ଓ୍ୱିକେଣ୍ଡ ଠିକ୍ ସେଇଆ କରୁଥିଲେ । ସାଙ୍ଗରେ ଥାନ୍ତି, ଆଉ ପ୍ରାୟ କୋଡ଼ିଏ ଜଣ ସମବୟସୀ, ସାଙ୍ଗ । ସମସ୍ତଙ୍କର ମଉଜ କରିବାକୁ ସମାନ ମନ, ସମସ୍ତେ ସୁନ୍ଦର, ସମସ୍ତେ ବେପରୁଆ—ନିଜ ନିଜର ଉଡ଼ାଜାହାଜରେ ଦୌଡ଼ କରିବାକୁ ଯା'ନ୍ତି । ରବିବାର ଓ୍ୱିକେଣ୍ଡମାନ ତାଙ୍କୁ ମାଉସୀଙ୍କ ପାଖରେ ରହିବାକୁ ହେଉଥିଲା ତାଙ୍କ ବାପା ମା' ଆକାଶରୁ ଫେରିବା ପର୍ଯ୍ୟନ୍ତ । ଏହିପରି ହେଉ ହେଉ, ଗୋଟିଏ ରବିବାର ଓ୍ୱିକେଣ୍ଡ ସେମାନେ ଗଲେ ଯେ ଆଉ ଫେରିଲେ ନାହିଁ ।

ମାଉସୀ ବର୍ଷ ବର୍ଷ ଧରି ସେ ଦୁହିଙ୍କୁ ଝୁରି ହେଉଥାନ୍ତି । ମୋତେ କହନ୍ତି, "ତୁ ତାଙ୍କ ପରି ଦିଶୁନାହୁଁ, ଭଲ ହୋଇଚ । ତାଙ୍କ ସୁନ୍ଦରପଣ ତାଙ୍କର କାଳ ହେଲା ।"

ସେ ଯାହାହେଉ, ମିସ୍ ବ୍ରାଉନ୍ ପିଲଦିନୁ ଏ ପର୍ଯ୍ୟନ୍ତ କେବେ ସୁନ୍ଦରୀ ତାଲିକାରେ ଯାଇନାହାନ୍ତି । ଅଜ୍ଞାତର କେହି ଜଣେ ପୂର୍ବପୁରୁଷଙ୍କ-ଠାରୁ ସେ ପାଇଛନ୍ତି ଗୋଟିଏ ଖର୍ବ ଓ ସ୍ଥୂଳ ଦେହ ଓ ସୌନ୍ଦର୍ଯ୍ୟହୀନ ମୁହଁ । ବାହାରେ ପିତାମାତାଙ୍କ ସାଦୃଶ୍ୟ ନଥିଲେ କ'ଣ ହେବ, ତାଙ୍କର ମନ ଥିଲା ପିତାମାତାଙ୍କ ମନ ପରି—ଏକଥା ଅବଶ୍ୟ ବାହାରେ କାହାରିକୁ ଜଣା ନଥିଲା । ମନରେ ସେ ଥିଲେ ଖୁବ୍ ସାହସୀ, ବେପରୁଆ ଓ ଦୁରନ୍ତ କଳ୍ପନା କରିବାରେ ପଟୁ । ପିତାମାତା ବାସ୍ତବରେ ଯାହା କରିପାରିଥିଲେ, ସ୍ୱପ୍ନରେ ସେ ତାହା କରୁଥିଲେ ଓ ସ୍ୱପ୍ନରେ ସେ ସବୁବେଳେ ମୃତ୍ୟୁର ସୀମାରେ ଯାଇ ପହଞ୍ଚିଯାଉଥିଲେ । ପିତାମାତା ଯେପରି ଉଡ଼ାଜାହାଜରେ ଉଡ଼ୁଥିଲେ, ସେ ସ୍ୱପ୍ନରେ ସେହିପରି ଉଡ଼ୁଥିଲେ ; ଅଧିକା ଏତିକ ଯେ, ତାଙ୍କ ଉଡ଼ାଜାହାଜ ଜୀବନର ସୀମା ଟପି ଯାଉଥିଲା । ଥରେ ଗ୍ରୀଷ୍ମ ଋତୁରେ ନର୍ସିଂ ଟ୍ରେନିଂ ପାଇବାକୁ ଯିବାର ପୂର୍ବବର୍ଷ, ସେ ପର୍ବତ ଚଢ଼ିବେ ବୋଲି ପାଇକସ୍‌ପିକ୍ ପର୍ବତକୁ ଯାଇଥିଲେ । ପଥପ୍ରଦର୍ଶକ ଚଢ଼ିବା ପାଇଁ ଯେତିକି ବାଟ ବତାଇ ଦେଇଥିଲା ସେଥିରେ ତାଙ୍କ ମନ ସନ୍ତୁଷ୍ଟ ହେଲାନାହିଁ । ପଥପ୍ରଦର୍ଶକକୁ ଛାଡ଼ି ସେ ଆଗକୁ ଗଲେ ; ଶେଷରେ ଗୋଟିଏ ତୁଷାରବୃତ ଶୃଙ୍ଗରୁ ତଳକୁ ଖସି ପଡ଼ିବାରୁ ଠିକେକେ ରକ୍ଷାପାଇ ଯାଇଥିଲେ ।

ଶେଷ ମୁହୂର୍ତ୍ତର ଠିକ୍ ପୂର୍ବ ମୁହୂର୍ତ୍ତ, ପଥପ୍ରଦର୍ଶକର ଦଉଡ଼ି ତାଙ୍କ ପାଖରେ ଆସି ପହଞ୍ଚି ତାଙ୍କ ଅଣ୍ଟାରେ ଗୁଡ଼ାଇ ହୋଇଯିବାର ଠିକ୍ ପୂର୍ବରୁ ସେଇ ମୁହୂର୍ତ୍ତଟା ତାଙ୍କୁ ବଡ଼ ଅଦ୍ଭୁତ ଭାବରେ ଉଦ୍ଦୀପ୍ତ କରି ଦେଇଥିଲା । ଯାହାହେଉ, ଶେଷରେ ସେ ଜୀବନ ପାଇଲେ ; ଏବଂ ତାଙ୍କ ମାଉସୀଙ୍କର କ୍ରୋଧ ଗମ୍ଭୀର ନୀରବତାରେ ସହ୍ୟ କରିଥିଲେ ।

"ଜେନ୍ ! ମୁଁ ଏସବୁ ବରଦାସ୍ତ କରିପାରିବ ନାହିଁ । ତୁ ଆଜିଠାରୁ ଘରେ ରହିବୁ ଓ ବାହାହେବୁ । ତୋତେ ଜବତ୍ କରିବାପାଇଁ ତୋ'ର ସ୍ୱାମୀ ଥିବା ଦରକାର ।"

"ମେଘ ମାଉସୀ ! ତୁମେ ଆଜ ମୋ ପାଇଁ ଘାଣ୍ଠି ହେବ ନାଇଁ; ମୁଁ ନିଜକୁ ନିଜେ ସଂଯତ କରିପାରିବ ।"

ସ୍ୱାମୀ ମିଳିଥିଲେ ସେ ଗ୍ରହଣ କରିଥାନ୍ତେ, କିନ୍ତୁ ଦୁଃଖର କଥା ଯେ ସେଥିପାଇଁ ମଣିଷଟିଏ ତାଙ୍କୁ ମିଳିଲା ନାହିଁ । ଆଶ୍ଚର୍ଯ୍ୟ କଥା; କେହି ଜଣେ ହେଲେ ଯୁବକ ତାଙ୍କୁ ବିଭା ହେବାକୁ ପ୍ରସ୍ତାବ କଲେନାହିଁ । ଯୁବତୀ ଝିଅ, କିନ୍ତୁ କୌଣସି ଜଣେ ଲୋକର ମନକୁ ଟାଣି ପାରିବ ନାଇଁ, ଏହା ବାସ୍ତବରେ ହୋଇପାରେ ବୋଲି ସେ ନିଜେ କେବେ ବିଶ୍ୱାସ କରି ପାରିନଥିଲେ କିନ୍ତୁ ସତରେ ସେଇଆ ହେଲା । ପୁରୁଷମାନେ ତାଙ୍କ ଆଡ଼କୁ ଥରେ ଚାହିଁଦେଲେ ଯଥେଷ୍ଟ, ସେତିକିରେ ତାଙ୍କ ମୁହଁ ଟେକି ହୋଇଯାଏ ଆଗକୁ । ଏଇ କାରଣରେ ସେ କେବେ ନିଜକୁ କୌଣସି ଲୋକ ସଙ୍ଗେ ପ୍ରେମରେ ପଡ଼ିବାକୁ ଦେଇନାହାନ୍ତି । ଜୀଅନ୍ତା ମଣିଷ ପରିବର୍ତ୍ତେ ସେ ପ୍ରେମରେ ପଡ଼ିଛନ୍ତି ମୃତ୍ୟୁ ସଙ୍ଗେ । ଜୀବନର ଶେଷ ମୁହୂର୍ତ୍ତର ଆରପାଖେ କ' ଅଛି ? ନିଜ ସ୍ମୃତିରୁ ସେ ତାହା ଆବିଷ୍କାର କରିବାକୁ ବସନ୍ତି । ପର୍ବତ ଶିଖରରେ, ପଥପ୍ରଦର୍ଶକର ରଜ୍ଜୁ ତାଙ୍କୁ ପଛକୁ ଟାଣିବା ପୂର୍ବରୁ, ଯେତେବେଳେ ସେ ଉପରରୁ ଠିକ୍ ପଡ଼ି ଯାଉଥାନ୍ତି ଓ ତଳୁ ପୃଥ୍ୱୀ ଉଠି ଆସୁଥାଏ ତାଙ୍କୁ ସ୍ୱାଗତ କରିବାପାଇଁ, ସେତେବେଳେ ସେ କାହାକଥା ଭାବୁଥିଲେ ? ସେ ତ କିଛି ଶୂନ୍ୟ ମନରେ ମହାଶୂନ୍ୟକୁ ଚାହିଁ ନଥିଲେ ! ଭାବୁଥିଲେ କ'ଣ, ଚାହିଁଥିଲେ କାହାକୁ ! ସ୍ମୃତିକୁ ଯେତେ ଆଲୋଡ଼ନ କଲେ ବି ସେ ଏ ପ୍ରଶ୍ନର ଉତ୍ତର ପାଇଲେ ନାହିଁ !

ତା'ପରେ ସେ ଶେଷ ସିଦ୍ଧାନ୍ତ କଲେ—"ମୁଁ ହେବି ନର୍ସ୍", ସେ ତାଙ୍କ ମାଉସୀଙ୍କୁ କହିଲେ, "ଟ୍ରେନିଂପ୍ରାପ୍ତ ନର୍ସ୍ ।"

ବିସ୍ମୟରେ ମାଉସୀ ତାଙ୍କ ଆଡ଼କୁ ଚାହିଁଲେ, "କଲେ ! ନର୍ସ୍ ହେବୁ କାହିଁକି ?"

ଉଦାସ ଭାବରେ ତାଙ୍କ ଦେହ ଶିହରି ଉଠିଲା । ମାଉସୀଙ୍କୁ ବୁଝାଇବେ କିମିତି ? କିନ୍ତୁ କାରଣଟା ସେ ନିଜେ ଭଲ ବୁଝିଥିଲେ । ପର୍ବତ ଶୃଙ୍ଗରେ ଯେଉଁ ମୃତ୍ୟୁର ସେ ସମ୍ମୁଖୀନ ହୋଇଥିଲେ, ସେଇ ମୃତ୍ୟୁ ତାଙ୍କୁ ନର୍ସ୍ ହେବାକୁ ଡାକିନେଲା । ମୃତ୍ୟୁ ବିଷୟ ଜାଣିବା ତାଙ୍କର ଦରକାର ? ମୁମୂର୍ଷୁ ରୋଗୀ ତାଙ୍କୁ ସେ କଥା କହି ପାରିବେ । ଯେଉଁ

ରହସ୍ୟ ଉଦ୍‌ଘାଟନ କରି ପାରୁନାହାନ୍ତି, ମୁମୂର୍ଷୁ ଲୋକେ ତାହା ତାଙ୍କ ଆଗରେ ଫିଟାଇଦେବେ ।

କିନ୍ତୁ ଏଥିରେ ବି ମେଖଣ୍ଡ । ମୁମୂର୍ଷୁଙ୍କୁ ମରିବାକୁ ଦେବାକୁ ସେ ଚାହାନ୍ତି ନାହିଁ । ଠିକ୍ ଯେପରି, ସେ ପର୍ବତ ଶୃଙ୍ଗରୁ ଖସି ପଡ଼ିଲାବେଳେ ପଥପ୍ରଦର୍ଶକ ଲମ୍ଫଦେଇ ତାଙ୍କୁ ଦଉଡ଼ିରେ ବାନ୍ଧି ରଖିଥିଲା, ଠିକ୍ ସେପରି, ସେ ଏବେ ବାହାରି ପଡ଼ୁଛନ୍ତି, ସେଇମାନଙ୍କୁ ମୃତ୍ୟୁମୁଖରୁ ଉଦ୍ଧାର କରିବାକୁ ଯେଉଁମାନେ ତାଙ୍କ ଉଦ୍ୟମ ବିନା ସିଧା ମୃତ୍ୟୁକୁ ବରଣ କରନ୍ତେ । ପିଲାଙ୍କୁ ସେ ଉଦ୍ଧାର କରି ପାରିଲେନାହିଁ, ତେଣୁ, କେତେ ବର୍ଷ ଚେଷ୍ଟା କଲା ପରେ ସେ ସ୍ଥିର କଲେ, ପିଲାଙ୍କର ସେବା ସେ କରିବେ ନାହିଁ । ପିଲାଗୁଡ଼ାକ ବଡ଼ ସହଜରେ ଜୀବନ ଛାଡ଼ି ଦିଅନ୍ତି—ଗୋଟାଏ ପ୍ରକାର ଜୀବନରୁ ଅନ୍ୟ ଜୀବନକୁ ଧୀରି ହୋଇ ଖସି ଯା'ନ୍ତି । ଦିନବେଳେ ଯେମିତି ସହଜରେ ମରିଯା'ନ୍ତି, ରାତିରେ ବି ସେମିତି । ଜୁନ୍ ମାସରେ ଦିନେ ସେ ତାଙ୍କର ପ୍ରଥମ ଶିଶୁରୋଗୀର ମୃତ୍ୟୁ ଦେଖିଥିଲେ । ଛୋଟ ପିଲାଟିଏ; ଜରରେ ଦେହ ତାତି ଯାଇଥାଏ ; ସେ ତାକୁ ଥଣ୍ଡା ପାଣିରେ ପୋଛିପୋଛି କରିଦେଲେ—ସେତେବେଳକୁ ତାଙ୍କୁ କି ଜଣା, ପିଲାଟି ପାହାଡ଼-କାନ୍ଥିର କେତେ ପାଖକୁ ଚାଲିଗଲାଣି ? ସେ ପିଲାଟି ସାଙ୍ଗେ ଗପସପ କରୁଥାନ୍ତି, ନାନାବାୟା ଗୀତ ପଦେ ବି ଶୁଣାଇଲେ—ପିଲାଟି ଅଧାନିଦ୍ରିତ ଅବସ୍ଥାରେ ଥାଇ ଶୁଣିଲା, ଟିକିଏ ଟିକିଏ ହସିଲା ବି । ହଠାତ୍ କିନ୍ତୁ ତାଙ୍କୁ ଶୁଭିଲା ଗୋଟିଏ ମୃଦୁ ଦୀର୍ଘନିଃଶ୍ୱାସ । ତାଙ୍କର ଅଜାଣତରେ ପିଲାଟି ପର୍ବତ କାନ୍ଥିରୁ ଟଳି ପଡ଼ିଲା ।

ସେ ପିଲାଟି ଯେଉଁଠି ଯାଇ ପହଞ୍ଚିଲା ତାହା ତେବେ କ'ଣ ପର୍ବତ କାନ୍ଥି—ତା' ଆର ପାଖକୁ ତେବେ କ'ଣ ଅତଳ ଗହ୍ୱର ?—ବୋଧହୁଏ, ନୁହେଁ । ଯଦବା ଅତଳ ଗହ୍ୱର ଥିଲା, ତେବେ ସେଥିରୁ ଉଦ୍ଧାର କରିବାକୁ ଜୀବନ ରକ୍ଷାକାରୀ ରଜ୍ଜୁ ପରି, କ'ଣ ହୁଏତ ଥାଇପାରେ ! ହୁଏତ କୌଣସି ଏକ ଅଜ୍ଞାତ ହାତ କୌଣସିଠାରୁ କେଜାଣି ବଢ଼ାଇ ଦେଇ, ଖସି ପଡ଼ିଥିବା ଜୀବକୁ ପୁଣି ଜୀବନ ଫେରାଇ ଦେଉଥିବେ—ସେଇ ଜୀବନ ଫେରାଇ ନଦେଲେ ବି, ଅନ୍ୟ କୌଣସି ଜୀବ ଲୋକକୁ ନେଇ ଯାଉଥିବେ । କେ ଜାଣେ ?—ପୂର୍ବସ୍ମୃତିର ଖିଅ ଛାଡ଼ି ସେ ଉଠିଲେ ; ବେଣ୍ଟଲିଙ୍କ

ଖଟିଆ ପାଖକୁ ଗଲେ ଓ ତକିଆ ଉପରେ ନିଦ୍ରିତ ମୁହଁକୁ ଚାହିଁଲେ ।
କ୍ୟାପ୍‌ଟେନ୍ ଜଓଫ୍ ବେଣ୍ଡ୍‌ଲ ! ମୁହଁରେ ଶୌର୍ଯ୍ୟ ପରିସ୍ଫୁଟ, ଅଧର
ଦୁଇଟି ଦୃଢ଼, କିନ୍ତୁ ବନ୍ଦ ରହିଥିବା ଆଖି ଦୁଇଟି କୋରଟଗତ । ହଠାତ୍
ମିସ୍ ବ୍ରାଉନ୍ ଲଙ୍ଗଫର୍ଡ଼ ତାଙ୍କ ମୁହଁକୁ ଭଲକରି ଚାହିଁଲେ, ତାଙ୍କ ମୁହଁ ପାଖରେ
ନେଇ କାନ ଲଗାଇଲେ ; ବ୍ୟସ୍ତ ସମସ୍ତ ହୋଇ ତାଙ୍କ ମଣିବନ୍ଧକୁ ଦବାଣି
ଧଇଲେ ; ହୃତ୍‌କମ୍ପନ ହେଉଛି କି ନାହିଁ ପରୀକ୍ଷାକଲେ । ନିଃଶ୍ୱାସ ବନ୍ଦ,
ନାଡ଼ ଛାଡ଼ ଯାଇଛି, ହୃତ୍‌ପିଣ୍ଡର ସ୍ପନ୍ଦନ ନାହିଁ । ସେଇ ମୁହୂର୍ତ୍ତରେ ମିସ୍
ବ୍ରାଉନ୍ ଚଢ଼ ଉଠିଲେ ।

ଦାନ୍ତଚିପି ସେ ଗୁଁ ଗୁଁ ହୋଇ କହିଲେ, "ଓଃ, ଜଓଫ୍ ! ମୁଁ
ତୁମ ପାଇଁ ଏତେ କଲି—ଅଥଚ ତୁମେ ଏମିତି—ତୁମେ ଲଜ୍ଜିତ ହେବାର
କଥା—ସତରେ ତୁମ ପକ୍ଷରେ ଏ ବଡ଼ ନିନ୍ଦାର କଥା ! ମୁଁ ଏଇଠି
ଏମିତି ବସିଛି— ପଦଟାଏ ମୋତେ ଡାକ ଦେଇଥାନ୍ତ—ଛିଃ ପ୍ରିୟତମ !
ଧିକ ତୁମକୁ, ଛିଃ, ଛିଃ ।"

ଏମିତି ବଡ଼୍‌ବଡ଼୍ କରି କହିବା ଭିତରେ ସେ ତାଙ୍କର ଶେଷ
କର୍ତ୍ତବ୍ୟ କରୁଥାନ୍ତି—ଶବ ପ୍ରତି ଶେଷ ଉପଚାର—ଅଙ୍ଗ ପ୍ରତ୍ୟଙ୍ଗକୁ
ସଜାଡ଼ି ଦେବା, ହାତ ଦୁଇଟି ଆଣି ଛାତି ଉପରେ ଛନ୍ଦିକରି ରଖିବା
ଇତ୍ୟାଦି । ବେଣ୍ଡ୍‌ଲଙ୍କ ହାତ । ଯୋଡ଼ିକ—କେଡ଼େ ଲମ୍ବ ଓ ସରୁ !
ସମ୍ଭ୍ରାନ୍ତ ଲୋକର ହାତ ଏବେ ସେ—କ୍ୟାପ୍‌ଟେନ୍ ବେଣ୍ଡ୍‌ଲ ଯାଇ କ'ଣ
ହୋଇଛନ୍ତି କେ ଜାଣେ ? ଆଉ ସେ କ'ଣ ଫେରିବେ, ନା ତାଙ୍କୁ
କହିବେ ? ଯଦି ବଂଚିଥାନ୍ତେ, ତେବେ ତାଙ୍କର ଶେଷ ବେଳର ଅନୁଭୂତି
ବିଷୟ ତାଙ୍କ ସଙ୍ଗେ ସେ କଥାବାର୍ତ୍ତା ହୋଇଥାନ୍ତେ, ଶାଶ୍ୱତ ପ୍ରଶ୍ନଟା ତାଙ୍କୁ
ପଚାରିଥାନ୍ତେ—

"କ୍ୟାପ୍‌ଟେନ୍ ବେଣ୍ଡ୍‌ଲ ! ମୋର ଏ ପ୍ରଶ୍ନର ଉତ୍ତରଟି ଦିଅ ।
ବହୁ ସମୟରେ ଏଇ ପ୍ରଶ୍ନ ମୋତେ ଅଭିଭୂତ କରେ । ଆଚ୍ଛା, ଯେତେ-
ବେଳେ ତୁମେ ସେଇ ଶେଷ ମୁହୂର୍ତ୍ତରେ ଏକୁଟିଆ ଖସି ଚାଲି ଯାଉଥିଲ,
ଯେତେବେଳେ ଜୀବନର କାନ୍ଥିଟିରେ ଯାଇ ପହଞ୍ଚିଥିଲ, ସେତେବେଳେ
ଆଗରେ କ'ଣ ଦେଖିବାକୁ ପାଇଥିଲ ?—"

କାମଘର ଆଲୁଅଟି ଲିଭାଇ ଦେଇ ସେ ବାହାରିଗଲେ—ଆସ୍ତେ ଆସ୍ତେ ବାହାର ଦରଜାଟି ବନ୍ଦ କରି । ବାରଣ୍ଡାକୁ ବାହାରି, ସେ ଗ୍ଭଲିଲେ ହେଡ୍ ନର୍ସ୍‌ଙ୍କ ଅଫିସମୁହାଁ ; ଜୋତା ତଳରେ ପଶମ-ପ୍ୟାଡ୍ ଥିବାରୁ ପଦଶବ୍ଦ ହେଉନଥାଏ । ହେଡ୍ ନର୍ସ୍‌ଙ୍କ ଆଫିସରେ ପଶି ସେ ଠିଆ ହେଲେ ରିପୋର୍ଟ ଦେବାକୁ ।

"ମିସ୍ ମାର୍କସ୍, ୭ନମ୍ବର ଏଇକ୍ଷଣିକା ଗ୍ଭଲିଗଲେ ।"

ମିସ୍ ମାର୍କସ୍‌ଙ୍କ ଧଳା ପୋଷାକ ସାଙ୍ଗକୁ ମୁଣ୍ଡର ବାଳଯାକ ବି ଧଳା । ସେ ଟେବୁଲରେ ମୁହଁ ପୋତି ରିପୋର୍ଟ ଲେଖୁଥିଲେ । ମୁହଁ ଟେକି ମିସ୍ ବ୍ରାଉନ୍‌ଙ୍କ ଆଡ଼କୁ ଗ୍ଭହିଁଲେ ।

"ଆଃ, ମିସ୍ ବ୍ରାଉନ୍, ତୁମେ ଏ ଘଟଣାଗୁଡ଼ାକ ବୃଥାରେ ହୃଦକୁ ନେଉଛ ! ହଉ, ଯାଅ, ଯାଅ, ଶୋଇବ । ଏଇ, ଗୋଟାଏ ଜରୁରୀ କେସ୍ ଆସି ପହଂଚଛି । ମୁଁ ତାକୁ ସେଇ ସାତ ନମ୍ବରରେ ଦେଇଦେଉଛି ।"

ମିସ୍ ବ୍ରାଉନ୍ ଘ୍ୟାପରେ ଗଲେ ତାଙ୍କର ସେଇ ଦୁଇ କୋଠରିଆ ଖୁଆଡ଼କୁ । ଆଗ ଗରମ ପାଣିରେ ଗାଧୋଇ ପଡ଼ି ମାଖନ ଓ ଦୁଧରେ ଅଣ୍ଡା ବ୍ଭନ୍ଧିଦେଲେ ଓ ତାକୁ ସେକା ପାଉଁରୁଟି ଓ କଫି ସଙ୍ଗେ ଖାଇଲେ ; ତା'ପରେ ଗଲେ ଶୋଇବାଘରକୁ; ଉଠି ଆସୁଥିବା ସୂର୍ଯ୍ୟକିରଣ ନିବାରଣ କରିବାକୁ ଝରକାର ପରଦା ଟାଣି ଘରକୁ ଟିକିଏ ଅନ୍ଧାରିଆ କରି ଶେଯ ଧଇଲେ । କିନ୍ତୁ ନିଦ ଆସୁ ନଥାଏ । ଜର୍ଜେଫ ବର୍ତ୍ତମାନ କେଉଁଠି ଥିବେ ? ତାଙ୍କୁ ରକ୍ଷା କରିବାକୁ ସେ ଯେଉଁ କଠିଣ ପରିଶ୍ରମ କରୁଥିଲେ ତାହା କ'ଣ ସେ ଜାଣିଲେ ? ଆହା, ବଂଚିଥାନ୍ତେ କି ? ତେବେ ସେ ଦୁହେଁ ପରସ୍ପରର ପରିଚୟ ପାଇବାର ଅବକାଶ ଆସିଥାନ୍ତା, ହୁଏତ ଦୁହିଙ୍କ ଭିତରେ ବନ୍ଧୁତା ହୋଇଥାନ୍ତା—ହୁଏତ ଉଭୟେ ପ୍ରେମରେ ବାନ୍ଧି ହୋଇଥାନ୍ତେ !

ମିସ୍ ବ୍ରାଉନ୍ ଅସ୍ଥିରଭାବେ ଶେଯରେ ଗଡ଼ିତପଡ଼ିତ ହେଉ ହେଉ ପାଟିକରି ଆପଣାକୁ ଭର୍ତ୍ସନା କଲେ—"ଆଃ, ଜେନ୍ ବ୍ରାଉନ୍, ରଖ ତୋ'ର ସ୍ୱେ ସ୍ୱପ୍ନ-ସୁଖ !"

ନିଦ ଭାଙ୍ଗିଲା ବେଳକୁ ସନ୍ଧ୍ୟା ଛ'ଟା । ସାତଟା ବେଳେ କାମରେ ଯୋଗଦେବାକୁ ହେବ । ସେ ତରତରରେ ପ୍ରସ୍ତୁତ ହେଲେ । କାମଘ

ବଗୀଚ ଆଣିବାକୁ ଯିବାରେ ହେଡ଼୍ ନର୍ସ୍ ଗତାନୁଗତିକ ରୀତିରେ ବରାଦ କଲେ,

"ମିସ୍ ବ୍ରାଉନ୍ ! ସାତ ନମ୍ବର । କାଲି ରାତିର ଜରୁରୀ କେସ୍‌ଟା ସେଇଠି ଅଛି । ଟୋକା ଲେକ-ମଟର ଦୁର୍ଘଟଣାରେ ମସ୍ତିଷ୍କ-ସ୍ତମ୍ଭନ ହୋଇଛି—ଉଦ୍‌ବେଗଜନକ ଅବସ୍ଥା । ତାକୁଇ ଜଗିରହିବାକୁ ହେବ ତୁମକୁ—ହେଇଟି ଡାକ୍ତରଙ୍କ ନିର୍ଦ୍ଦେଶ ।"

ଡାକ୍ତରଙ୍କ ବ୍ୟବସ୍ଥାପତ୍ର ନେଇ ତାକୁ ମିସ୍ ବ୍ରାଉନ୍ ଭଲକରି ପଢ଼ିଗଲେ ।

"ପିଟର୍ କେଣ୍ଟସ୍ । କୋଡ଼ିଏ ବର୍ଷ ବୟସ । ପ୍ରୋଟେଷ୍ଟାଣ୍ଟ୍ ଧର୍ମ । ମସ୍ତିଷ୍କର ଦୁଇ ଜାଗାରେ ମାଡ଼ ହୋଇଛି—।"

ବାରଣ୍ଡା ପାର୍ ହୋଇ ଆସ୍ତେ ଆସ୍ତେ ଦରଜା ଫିଟାଇଲେ । ଆଉ ଜଣେ ନର୍ସ୍ ଖଟିଆ ପାଖେ ଠିଆ ହୋଇ ରୋଗୀର ନାଡ଼ିର ଗତି ଦେଖୁଥାଏ । ବେଶ୍ ଡେଙ୍ଗା—ସ୍ୱର୍ଣ୍ଣକେଶ—ସୁଶ୍ରୀ ଟୋକାଟିଏ—ଅତି ନିଷ୍ଫଳଭାବେ ପଡ଼ିଥାଏ, ସତେ ଅବା—

ମିସ୍ ବ୍ରାଉନ୍ କହିଲେ, "ମୋର ପାଳି ପଡ଼ିଲା ।"

ଅନ୍ୟ ନର୍ସ୍‌ଟି ହଉ ବୋଲି ମୁଣ୍ଡ ଟୁଙ୍ଗାଇ ଚାଲିଗଲେ । ସେ ଅଗ୍ରସର ହେଲେ ଶଯ୍ୟା ପାଖକୁ, ଟୋକାଟିର ସରୁ ମଣିବନ୍ଧକୁ ନିଜ ଆଙ୍ଗୁଠିରେ ଧଇଲେ । ନାଡ଼ିର ଗତି କ୍ଷୀଣ, କିନ୍ତୁ ଚାଲୁଥାଏ ।

ମୃଦୁ ସ୍ୱରରେ ସେ ଆରମ୍ଭ କଲେ "ପିଟର୍ ! ମୁଁ ଆସିଲି, ଧନ ! ତୁମେ ନିଶ୍ଚୟ ଭଲ ହୋଇଯିବ, ଜାଣୁଛ ନା ! ଟୋକା ସମସ୍ତ, ଦେହରେ ତାକତ୍ ଅଛି । ଜୀବନକୁ ସୁଖମୟ କରିବାକୁ ଆଗରେ ଭବିଷ୍ୟତ ପଡ଼ିଛି । ଯେଉଁ ଯୁବତୀକୁ ପ୍ରେମକରି ସ୍ୱୀମନେପଡ଼ୁଛି—"

ପ୍ରେମ ଏ ଯୁବକକୁ ଉଦ୍‌ବୁଦ୍ଧ କରିବ ବୋଧହୁଏ । ପୂର୍ବରେ ତ କେତେଥର ଏଇ ପ୍ରେମ କାମ ଦେଖେଇଚି—ସଂକୀର୍ଣ୍ଣ କାମ ଅର୍ଥରେ ନୁହେଁ, ବ୍ୟକ୍ତିଗତ ଭାବେ ଜଣକର ଅନ୍ୟଜଣକ ପ୍ରତି ପ୍ରେମ ନୁହେଁ—ମନକୁ ଉଦ୍‌ବୁଦ୍ଧ କରେ ଯେଉଁ ପ୍ରେମ ; ତାହା ବ୍ୟାପକ, ସେ ପ୍ରେମ ଜଣକଠାରେ ଜାଗ୍ରତ ହେଲେ ସମସ୍ତଙ୍କୁ ନିଜର କରିନିଏ ଓ ସମସ୍ତଙ୍କୁ ଉଦ୍‌ବୁଦ୍ଧ କରିବାକୁ ଚାହାଁରେ । ସେଇ ପ୍ରେମ ହୁଏତ ଏ କ୍ଷେତ୍ରରେ କାମ ଦେଖାଇବ ।

ମିସ୍ ବ୍ରାଉନ୍ ଗେଲ କଲାପରି ଡାକିଲେ, "ପିଟର୍, ପିଟର୍ !" ମାନବଙ୍କ ଅମୀସ୍ଥ ପ୍ରେମରେ ତାଙ୍କର କଣ୍ଠ ଆର୍ଦ୍ର ହୋଇଥାଏ – 'ପିଟର୍, ମୋ ପାଖରୁ ଚାଲିଯାଇ ପାରିବ ନାହିଁ, ପିଟର୍ ! ମୁଁ ଯେ ତୁମକୁ ଧରି ରଖିବା ପାଇଁ ହେଇଟି ହାତ ବଢ଼ାଉଛି, ପିଟର୍ ! –"

———

# ଧାନ କିଆରୀ

ଓସ୍ୱାଙ୍ଗ୍ ସାଁ – 'ସାଁ-ଲି-ଓସ୍ୱାନ୍ ସେ' ଗାଁର ପ୍ରଧାନ – ଖୁବ୍ ମନ ଦେଇ ଯୁବକଟିର କଥା ଶୁଣୁଥିଲେ । ବେଶ୍, ଉତ୍ସାହୀ ଯୁବକଟିଏ, ଚରିତ୍ରବାନ୍ ମଧ୍ୟ – କିନ୍ତୁ ତା'ର ନିର୍ବୋଧତା ଦେଖିଲେ ଦୁଃଖ ଲାଗୁଛି । ସେ ଯେ ଅଜ୍ଞ, ଏ କଥାଟି ବୁଝିବାକୁ ବି ସେ ଅଜ୍ଞ – ଏହା ଜାଣିବା ବେଳୁ ତା' ପ୍ରତି ସବୁଠାରୁ ବେଶୀ ଅନୁକମ୍ପା ହେଉଛି । କିନ୍ତୁ ତା' କଥା ଶୁଣିବାକୁ ହିଁ ହେବ, କାରଣ, ଉପରେ ପେକିଂରେ ଯେଉଁମାନେ ବସିଛନ୍ତି, ସେଇମାନେ ସ୍ୱାଙ୍କୁ ପଠାଇଛନ୍ତି । ସ୍ୱାଙ୍କ କଥା ଶୁଣିଲେ ହିଁ ରକ୍ଷା – ଏ କଥା ସମସ୍ତଙ୍କୁ ଜଣାଯାଇସାରିଛି ; ପାରିଲେ, ହଁଚୁ ନକରି ସ୍ୱାଙ୍କ କଥା ଶୁଣିବାକୁ ପଡ଼ିବ । ଏ ପର୍ଯ୍ୟନ୍ତ ଓସ୍ୱାଙ୍ଗ୍ ସାଁ ନିଜକୁ ଦବାଇ ରଖିଛନ୍ତି, ଘଡ଼େ ବି କିଛି କହି ନାହାନ୍ତି । କିନ୍ତୁ ଆଜି ସମ୍ଭାଳି ହେଉନାହିଁ । ସମସ୍ତେ ଗାଁର କୋଠଖଳାରେ ସମବେତ ହୋଇଛନ୍ତି, ତାଙ୍କ ସ୍ୱରପଟେ ତାଙ୍କ ଗାଁଲୋକେ ତନ୍ମୟ ହୋଇ ରହିଛନ୍ତି – ସ୍ୱାଙ୍କର ଭିତରେ ଏଇ ଅବସ୍ଥାରେ ଠିଆ ହୋଇ ତାଙ୍କ ପେଟ ଭିତରୁ ଯେଉଁ ସଙ୍କଳ୍ପ ବାହାରିଲା ତାହା ଆଉ ରୋକ ହେବାର ନୁହେଁ । ନୈରାଶ୍ୟରେ ମଣିଷ ଅନ୍ଧ ହୋଇଗଲେ ଯେଉଁ ବେପରୁଆ ଭାବ ଆସେ ଓସ୍ୱାଙ୍ଗ୍ଙ୍କ ମନକୁ ସେଇ ବେପରୁଆ ଭାବ ଅଧିକାର କରି ବସିଥାଏ ।

ଚେୟାର୍‌ମ୍ୟାନ୍ ମାଓ ଭାରି ଭଲ ଲୋକ ଓ ଆମେରିକାର ସାମ୍ରାଜ୍ୟବାଦୀଗୁଡ଼ାକ ଭାରି ବଦ୍‌ମାସ୍ ବୋଲି କହିଲାବେଳେ, ପାଟି ନଫିଟାଇ ବେଶ୍ ଶୁଣିହେଲା । ଚେୟାରମ୍ୟାନ୍ ମାଓଙ୍କୁ ସେ କେବେ ଦେଖିନାହାନ୍ତି କି ଆମେରିକା ଦେଶର କାହାକୁ କେବେ ଦେଖିନାହାନ୍ତି । ଅଦେଖା ଓଜ ଛପଡ଼ା ହେଲେ ହୋଇଥିବ ! କିନ୍ତୁ ଧାନ ତ ତାଙ୍କର ଅଦେଖା, ଅଶୁଣା ଜିନିଷ ନୁହେଁ । ଧାନର ଆରମ୍ଭରୁ ଶେଷଯାଏଁ ସବୁ

ତାଙ୍କୁ ଭଲକରି ଜଣା—ବିଲ ପାଇଁ ଉପଯୁକ୍ତ କିହନ ବାଛି ସାଇତବାଠାରୁ, ବର୍ଷ ଆସାଢ଼ିର ସନ୍ଧି ସନ୍ଧି କଆଁଶରେ ତଳି ପକାଇବା, ତଳି ନେଇ କାଦୁଅ, ପାଣି ହୋଇଥିବା କ୍ଷେତରେ ରୋଇବା ଏବଂ ଶେଷରେ ପାଚିଲା ଧାନ କାଟି ଖଳାକୁ ନେବାଯାଏଁ, ସବୁ ସେ ଭଲକରି ଜାଣନ୍ତି। ଧାନଚାଷ ବିଷୟରେ ତାଙ୍କୁ ପୁଣି କେଉଁ କଥା କିଏ ଶିଖାଇବ ? ସେ ପାଟି ଫିଟାଇଲେ—

"କମ୍ରେଡ୍ ଲି !"

ଯୁବକ ବକ୍ତୃତା ବନ୍ଦ କରି କିଏ ଡାକିଲା ବୋଲି ଆଖି ବୁଲାଇଲେ।

ଓୟାଙ୍ଗ୍ ସାଁ କହିଲେ, "ମୁଁ ଡାକିଲି।" ଦେହାତି ଲୋକଙ୍କ ଗହଳି ଠେଲିପେଲି ସେ ଯୁବକଙ୍କ ପାଖକୁ ଆସିଲେ।

କମ୍ରେଡ୍ ଲି ପଚାରିଲେ, "ତୁମେ ପୁଣି କ'ଣ କହିବାକୁ ଚାହଁ ?"

ଓୟାଙ୍ଗ୍ ସାଁ ଗୋଡ ଫେର୍‌କେଇ ଠିଆ ହୋଇଥାନ୍ତି, ହାତ ଦୁଇଟି ଛାତି ଉପରେ ଛନ୍ଦିକରି ରଖିଥାନ୍ତି। ପିନ୍ଧିଥିବା ସୂତାର, ନେଳିଆ ଜାମା ଓ ପାଇଜାମା ବେଶ୍ ସଫାସୁତୁରା—ଯଦିଓ ବହୁତ ଜାଗାରେ ତାଳି ପଡ଼ିଥାଏ। ଆଜିକାଲି, ବର୍ଷକୁ ଏଇ ନେଳିଆ ରଙ୍ଗର ସୂତା ଜାମା ଓ ପାଇଜାମା ହଳକରୁ ବେଶୀ ଆଶା କରାଯାଇ ନପାରେ। ଗତବର୍ଷର ଚିରା ପୋଷାକରୁ କନା କାଢ଼ି ଏ ବର୍ଷ ପୋଷାକରେ ତାଳି ପଡ଼ୁଛି। ଯେତେ କସିକାସି ଚଳିଲେ ମଧ୍ୟ ହଳେ ପୋଷାକ ବର୍ଷକୁ ଅଣ୍ଟୁ ନାହିଁ। ଆଉ ହଳେ ନିତାନ୍ତ ଦରକାର ବୋଲି ଉପରମହଲରେ କଥା ପଡ଼ିଥିଲା। କମ୍ୟୁନିଷ୍ଟ ଅମଳ ପୂର୍ବରେ ପ୍ରତ୍ୟେକଙ୍କୁ ନିଜ ପୋଷାକ ନିଜେ କିଣିବାକୁ ହେଉଥିଲା, ସେତେବେଳେ କହୁଥିଲେ, ଏକା ଧନକେ ଯେତେ ହଳ ଇଚ୍ଛା ସେତେ ହଳ ପୋଷାକ କରିବା ସମ୍ଭବ ହେଉଥିଲା। ସେତେବେଳେ ମଣିଷ ଭାବୁଥିଲା, ନିଜ କଥା ଓ ନିଜ ପରିବାର କଥା। ଏତେବେଳେ ତ ଆଉ ସେପରି ଭାବିକି ଚଳିପାରିବ ନାହିଁ। ଆଜ ଜଣକ ପାଇଁ ଦୁଇ ହଳ ପୋଷାକ ଦରକାର ବୋଲି ଯଦି ସ୍ଥିର ହୁଏ, ତେବେ ଏକାଥରକେ ଲକ୍ଷ ଲକ୍ଷ ପୋଷାକ ଦରକାର। ଜଣେ ଲୋକକୁ ଯଦି ଦୁଇହଳ ପୋଷାକ

ଦେବାକୁ ସିଦ୍ଧାନ୍ତ ହୁଏ, ତେବେ ଦେଶର ସବୁ ମଣିଷଙ୍କ ପାଇଁ ଦୁଇହଳ ଲେଖାଏଁ ଯୋଗାଇବାକୁ ହେବ । ଯୁ। ବାଦ୍ ପୁଣି ମାଇପେ ଅଛନ୍ତି, ପିଲେ ଅଛନ୍ତି । ତେଣୁ ଦୁଇହଳ ପୋଷାକ ପାଇବା, କଥାର କଥା ହୋଇ ରହୁଛି ।

ଓୟାଙ୍ଗ୍ ସା ନିଜ ଅଭ୍ୟାସଗତ ଚଡ଼ା, ଖେକ୍‌ଠୋକ୍ ଗଳାରେ କମ୍ରେଡ୍ ଲି'ଙ୍କୁ କହିଲେ, "ମୁଁ କହିବାକୁ ଚାହେ ଯେ, ଆପଣ ଯେଉଁ ନୂଆ ଧରଣର ଚାଷ କଥା କହୁଛନ୍ତି, ତାହା ଚଳାଇଲେ ଆମ ଖେତ ସବୁ ନଷ୍ଟ ହୋଇଯିବ ।"

କମ୍ରେଡ୍ ଲି ପତଳା ଡ଼େଙ୍ଗା ଯୁବକ । ତାଙ୍କ ମୁଣ୍ଡଟା ଲମ୍ବା ଓ ପୋଛିଦେଲା ପରି ; ଓଠ ଓ ଆଖି ହଳଓଟି ଫ୍ଲେଟ ଫ୍ଲେଟ । ସେ ଚିଡ଼୍‌ଚିଡ଼ ହୋଇ କହିଲେ, "କମ୍ରେଡ୍ ଓୟାଙ୍ଗ୍ ! ତୁମେ କ'ଣ ବୁଝୁଛ, ଆମ ଚେୟାର୍‌ମ୍ୟାନ୍ ମାଓଙ୍କଠାରୁ ତୁମକୁ ବେଶୀ ଜଣା ? ଏଭଳି କେହି ବୁଝିବେ ବୋଲି ମୋତେ ସମ୍ଭବ ବୋଧ ହେଉନଥିଲା !"

ଏତିକବେଳେ ଓୟାଙ୍ଗ୍ ସାଁଙ୍କୁ ଜଣାପଡ଼ିଲା, ତାଙ୍କ କୁରୁଡାର ପଛଆଡ଼କୁ କିଏ ଟାଣରେ ଭିଡ଼ିଦେଲା । ସେ ଜାଣିଲେ, ସେ ତାଙ୍କ ଭାର୍ଯ୍ୟାର କାମ ; ତାଙ୍କୁ ତୁଣ୍ଡ ନ ଫିଟାଇବାକୁ ବାରଣ କରି କୁରୁତା ଟାଣୁଛି । ତା'ହେଲେ ସେ ତାଙ୍କ ପଛେ ପଛେ ଏଠାରେ ଆସି ପହଞ୍ଚିଛି ! ତୁମ୍ଭ ହୁଅ ବୋଲି କହିବାକୁ ଚେଷ୍ଟା କରୁଛି, ମନେପକାଇ ଦେଉଛି, "ତୁମେ ବର୍ତ୍ତମାନ ଯାହା କରୁଛ, ତା'ଠାରୁ କମ୍ ଦୋଷ ପାଇଁ ଆମ ଗାଁର ମୁରବିମାନଙ୍କୁ ଗୁଳିମାଡ଼ ଖାଇ ମରିବାକୁ ହୋଇଥିଲା !" କିନ୍ତୁ ଓୟାଙ୍ଗ୍ ଏ ଚେତାବନିକୁ ପରବା କଲେନାହିଁ । ମୁରବିମାନେ ମଲେ ବି ପିଲା ମାଇପ ରହିବେ, କିନ୍ତୁ ଧାନ ନଥିଲେ ତ କେହି ରହିବେ ନାହିଁ ! ଓୟାଙ୍ଗ୍ ଘୁଞ୍ଚିଲୁ ହାତ ଫିଟାଇ ଜଙ୍ଘରେ ଲଗାଇ ରଖିଲେ ; ସ୍ୱରକୁ ଖୁବ୍ ନମ୍ର ଓ ସଂଯତ କଲେ, କିନ୍ତୁ କହିଲେ—

"କମ୍ରେଡ୍ ଲି ! ଚେୟାର୍‌ମ୍ୟାନ୍ ମାଓ ଏପରି ଅନେକ କଥା ଜାଣନ୍ତି, ଯାହାର ବିନ୍ଦୁବିସର୍ଗ ବି ମୋତେ ଜଣାନାହିଁ । କିନ୍ତୁ ଧାନ ଆମର ଜୀବିକା, ମାଓଙ୍କର ନୁହେଁ । ସେ ଭଦ୍ରଲୋକର ସନ୍ତାନ, ମୁଁ ନୁହେଁ । ତାଙ୍କ ବାପା ଥିଲେ ଜମିଦାର, ମୁଁ ଚଷାର ପୁଅ । ମୋ ଜେଜେ ବି ଥିଲେ

ଚଷା, ବାପାଙ୍କ ପୂର୍ବପୁରୁଷ ବି ଚଷା । ଶହ ଶହ ବର୍ଷ ହେଲା ଆମର ପୂର୍ବପୁରୁଷ ଏ ଜମି ଚଷୁଛନ୍ତି ଓ ହଜାରେ ବର୍ଷ ହେଲା ଏ ଜମିରେ ଧାନ ହେଉଛି । ସେ ଧାନ ପୁଣି ଯେ ସେ ଧାନ ନୁହେଁ ; ଆମେ ଏ ଯେଉଁ ମାଟିରେ ଠିଆ ହୋଇଥାଇଁ, ସେଇ ମାଟିରେ ଠିକ୍ ଯେଉଁ ବିହନରୁ ଭଲ ଗଛ ହେବ, ଭଲ ଫଳିବ, ତାକୁଇ ବାଛି, ସାଇତି, ବର୍ଷକୁ ବର୍ଷ ଏଥିରେ ପୋତା ହେଉଛି ।"

ଏହା କହିଲାବେଳେ ଓୟାଙ୍ଗ୍ ଡାହାଣ ଗୋଡ଼କୁ ମାଟିରେ ବାଡ଼େଇଦେଲେ । କମ୍ରେଡ୍ ଲି ଶୁଣୁଥାନ୍ତି, ତଳକୁ ମୁହଁକରି ଠିଆ ହୋଇ ; ମୃଦୁହାସ୍ୟରେ ତାଙ୍କ କ୍ଷୁଦ୍ର ଅଧର ଟିକିଏ କୁଞ୍ଚିତ ହୋଇଥାଏ ।

ଧୈର୍ଯ୍ୟ ଦେଖାଇଲା ପରି ସ୍ୱରରେ ସେ କହିଲେ, "କମ୍ରେଡ୍ ଓୟାଙ୍ଗ୍, ଆଉ କ'ଣ କହିବ, କହ ।"

ତାଙ୍କୁ ଉପରମହଲରୁ ନିର୍ଦ୍ଦେଶ ଥାଏ, ସେ ଯେମିତି ଚଷାଙ୍କ କଥା ଧୈର୍ଯ୍ୟ ଧରି ଶୁଣିବେ, କିନ୍ତୁ ସେମାନଙ୍କ କଥାରେ ଭସିଯାଇ ନରମ ହେବେନାହିଁ । ଚଷାଗୁଡ଼ାକ କ'ଣ କହିବେ କହନ୍ତୁ, ତାଙ୍କ ପେଟର କଥା ବାହାରିଯାଉ । ତା'ପରେ ଶୁଣାଇ ଦିଆଯିବ, କଠୋର ସିଦ୍ଧାନ୍ତ ।

ଗୁରିପଟେ ଲୋକଗୁଡ଼ାକ ଚୁପ୍ ହୋଇ ଠିଆ ହୋଇଥାନ୍ତି; ସମସ୍ତଙ୍କର ଆଖି ତଳକୁ । ଗୋଟାଏ ମାଇକିନିଆର କଳାପରେ ମାରିବଟା ଭାଙ୍ଗିଗଲା । ସେ ଓୟାଙ୍ଗ୍ ସାଁଙ୍କ ଭାର୍ଯ୍ୟା । ସେ ବୁଲିପଡ଼ି ଲୋକ ଗହଳ ଭିତରେ ତାଙ୍କ ନିଜ ମାଟି ଘରକୁ ଲସରପସର ହୋଇ ଧାଇଁଗଲେ । ସେଇ ଘର ଖଣ୍ଡିକ ଅଦ୍ୟାପି ତାଙ୍କର ହୋଇ ଅଛି । ସେ ଘର ଭିତରେ ପଶିଯିବା ପରେ ଧଡ଼୍‌କିନା ଦାଣ୍ଡ ଦୁଆର ପଡ଼ିଲା ଓ କଳଣି କଳା ହେବାର ଶୁଭିଲା ।

ଏଣେ କମ୍ରେଡ୍ ଲି କହିଲେ, "କମ୍ରେଡ୍ ଓୟାଙ୍ଗ୍, ଆଉ କ'ଣ କହିବ, କହ ।"

ଏ ଆହ୍ୱାନରେ ଓୟାଙ୍ଗ୍ ସାଁ ଆଉ ଚୁପ୍ ରହି ପାରିଲେ ନାହିଁ, ଯଦିଓ ଏତେବେଳକୁ ଭୟରେ ତାଙ୍କ କଲିଜା ଥରିବାକୁ ଆରମ୍ଭ କରିଥାଏ । ସେ ଜିଭ ବୁଲାଇ ଓଠ ଓଦା କଲେ ।

"ତୁମେ କହୁଚ, ଆମେରିକାନ୍‌ମାନେ ତାଙ୍କ ଖେତକୁ ଗନ୍ତ୍ରିଆ କରି ଚଷିବାରୁ ବେଶୀ ଫସଲ ପାଉଛନ୍ତି । ତୁମେ କହୁଚ, ସେମାନେ କଳ-ଲଙ୍ଗଳରେ ଚାଷ କରନ୍ତି ; ଏହି କଥା ଶୁଣି ଚେୟାର୍‌ମ୍ୟାନ୍ ମାଓ ଆମ ରୁଷିଆ ଭାଇମାନଙ୍କଠାରୁ ସେଇଭଳି କଳଲଙ୍ଗଳ ଆଣିଛନ୍ତି । ତୁମେ କହୁଛ, ଏଇ କଳରେ ଆମେ ଆମ ଖେତକୁ ଗନ୍ତ୍ରିଆ କରି ଚଷିବୁ । କିନ୍ତୁ ଅସଲ ପ୍ରଶ୍ନ ହେଉଚି, ଗନ୍ତ୍ରିଆ କରି ଯେଉଁ ଜମିକୁ ଚାଷ କରନ୍ତି, ସେଥିରେ ଆମେରିକାନ୍‌ମାନେ ଧାନ ରୁଅନ୍ତି ନା ଆଉ କ'ଣ ? ଏଇ ସମସ୍ୟା —"

କମ୍ରେଡ୍ ଲି'ଙ୍କ ଧୈର୍ଯ୍ୟର ବନ୍ଧ ଏଇଠାରେ ଭାଙ୍ଗିଗଲା । ସେ ଚିତ୍କାର କରି ଉଠିଲେ, "ଅସଲ ପ୍ରଶ୍ନ ହେଉଚି, ଓୟାଙ୍ଗ୍ ସାଁ, ତୁମକୁ ଯେପରି କୁହାଗଲା ତୁମେ ସେଇପରି କରିବ ନା ନାହିଁ ? ତୁମକୁ ଏ ପ୍ରଶ୍ନର ଉତ୍ତର ମୁଁ ଖୋଲ ଠୋକ୍ ଭାବେ କହୁଛି, ଶୁଣ । ତୁମକୁ ଯାହା କୁହାଗଲା, ସେଇପରି କରିବାକୁ ପଡ଼ିବ । ତୁମ ସମସ୍ତଙ୍କୁ ଇ ତା' କରିବାକୁ ପଡ଼ିବ । ତୁମେ ସମସ୍ତେ ଅଜ୍ଞାନ, ମୂର୍ଖ ; ନାମ ବି ଦସ୍ତଖତ କରି ଜାଣୁନାହଁ । ଲେଖି କରି ପଠାଇଦେଲେ ପଢ଼ି ପାରିବ ନାହିଁ । ତେଣୁ ଏ ଗ୍ଭେଟିଆ ଗାଁକୁ ମୋତେ ଆସିବାକୁ ହୋଇଚି, ତୁମେ ଯାହା ପଢ଼ି, ବୁଝିପାରିବ ନାହିଁ ତାହା ତୁମକୁ ତୁଣ୍ଡରେ ବୁଝାଇ ଦେବାକୁ । ଖାଲି ତୁମର ଏହି ଗ୍ଭେଟିଆ ଗାଁଟିର ଜମି ନୁହେଁ, ଏପାଖେ ଓ୍ୱାନ-ଲି-ସିଆଙ୍ଗ୍‌ଠାରୁ ସେପାଖେ ସାନ୍-ଲି-କାନ୍ ସେ ପର୍ଯ୍ୟନ୍ତ ସମସ୍ତ ଅଞ୍ଚଳର ସବୁତକ ଖେତ ମିଶି ହେବ ଗୋଟିଏ କଆଁସ । ସବୁ ହିଡ଼ ବାଡ଼ ଭାଙ୍ଗି ସମାନ କରିଦେବାକୁ ହେବ । ଏ ଅଞ୍ଚଳ (Commune)ର ସମସ୍ତେ ମିଳିମିଶି ଏଥିରେ ଚାଷକାମ କରିବେ । ବର୍ତ୍ତମାନ ପାଇଁ ତୁମମାନଙ୍କୁ ତୁମମାନଙ୍କ ନିଜ ନିଜ ଘରେ ରହିବାକୁ ଦିଆଯିବ, କିନ୍ତୁ ଜମି ଉପରେ ବ୍ୟକ୍ତିଗତ ସ୍ୱତ୍ୱ ସ୍ୱୀକାର କରାଯିବ ନାହିଁ । ସବୁ ଜମି ହେବ ସମସ୍ତଙ୍କର । କୃଷି ବିଷୟରେ ବିଦେଶରେ ତାଲିମ ପାଇ ଆସିଥିବା ଲୋକେ ତୁମକୁ ଚାଷକାମ ଶିଖାଇବେ । ଆମ ଦେଶର ଅତି ଆଦରର ଏ ଜମି ଆଉ ମୂର୍ଖଙ୍କ ହାତରେ ଛାଡ଼ି ଦିଆଯାଇ ପାରିବନାହିଁ । କମ୍ରେଡ୍ ଓୟାଙ୍ଗ୍ ! ତୁମ ପ୍ରଶ୍ନର ଉତ୍ତର ଏଥର ପାଇଲ ତ ?"

ଓୟାଙ୍ଗ୍ ସାଁ ବଲବଲ କରି କମ୍ରେଡ୍ ଲି'ଙ୍କ ଗ୍ଭେଟ ଆଖି ଦୁଇଟିକୁ ଚାହିଁଲେ । ତାଙ୍କ ମନର ଭୟ ସାଙ୍ଗେ ସନ୍ଦେହ ମିଶିଗଲା । ହୁଏତ ଯୁବକଟି

ଯାହା କହୁଛି ତାହା ସତ । ଗନ୍ଧରିଆ ଗୃଷ ତ ଏ ଜମିରେ କେବେହେଲେ ପରୀକ୍ଷା ହୋଇନାହିଁ । ଏଥିରେ କ'ଣ ଗୁଣ ଥାଇପାରେ । କିନ୍ତୁ ତାଙ୍କ ନିଜ ବାପା ତ ତାଙ୍କୁ ସାବଧାନ କରାଇ ଦେଇଥିଲେ, ଧାନ ଖେତକୁ କେବେହେଲେ ଗନ୍ଧରିଆ କରି ଗୃଷ କରିବ ନାହିଁ । ଠିକ୍ ସେତିକ ଗୃଷ କରିବ, ଯେତିକରେ ଧାନ ଗଛର ଚେର ପାଣିରେ ବୁଡ଼ି ରହି ପାରିବ ; ଗଛର ଉପର ଅଂଶଟା ପାଣି ଉପରକୁ ବାହାରିଥିବ—ତାଙ୍କ ବାପା କହିଥିଲେ ଏସ୍ବା । ଆଉ ଗୋଟିଏ କଥା, ଯ୍ବା ସାଙ୍ଗକୁ ସାବଧାନରେ ବିହନ ବାଛି ରଖିବାକୁ ହେବ । ଏଇତକ ହେଲେ ପୁରା ଫସଲ ନିଶ୍ଚୟ ହେବ । ଗୃଷ ହୋଇ ପାଣି ମଡ଼ା ହୋଇଥିବା ଖେତରେ ବାପାଙ୍କ ସାଙ୍ଗେ ସେ ତଳି ରୋଇବା ବେଳେ, ବାପା କେତେଥର କହିଛନ୍ତି, "ମାଇକିନଆଙ୍କ ପରି ଏ ଧାନଗଛ ଭାରି ଏକଗୁଇଁଆ । ତା ମନ ଯେମିତି, ସେମିତି ତା'କୁ ବଢ଼ାଇଲେ, ତମର ଅଭାବ ରହିବ ନାଇଁ । ତା'ର ଯାହା ଦରକାର, ସେତକ, ଯଦି ଦେଇ ନପାରିବ, ତେବେ ସେ ଫଳିବା ପୂର୍ବରୁ ମଉଳିଯିବ । ବିହନଟି ବାଛିକରି ସାଇତିବ । ପ୍ରତି ଅଞ୍ଚଳ ପାଇଁ ବିହନ ଅଲଗା ଅଲଗା । ବିହନକୁ କେଉଁ ବାରମିଶା କରିବନାଇଁ ।"

ନିଜ ବାପାଙ୍କର ଏଇ କଥା ସବୁ ମନେ ପଡ଼ିବାରୁ, କମ୍ରେଡ୍ ଲି'ଙ୍କୁ ତାହା କହି ଚେତାଇ ଦେବାକୁ ତାଙ୍କର ମନ ହେଉଥିଲା । ଗାଁର ସମସ୍ତେ ଏତେବେଳକୁ ଭୟରେ ଜଡ଼ସଡ଼ ହୋଇଯାଇ ନଥିଲେ ସେ କହିଥାନ୍ତେ । କିନ୍ତୁ ଗାଁଲୋକେ ତାଙ୍କୁ ଘେରିଯାଇ, ତାଙ୍କୁ କମ୍ରେଡ୍ ଲି'ଙ୍କ ଆଗରୁ ଭିଡ଼ି ନେଇଗଲେ । ନିଜ ନିଜ ନାମ ନକହି ସମସ୍ତେ ଏକସଙ୍ଗେ କହୁଥାନ୍ତି, 'ଓସ୍ୟାଙ୍ଗ୍ ସାଁ ନିଶ୍ଚୟ କଥା ମାନିବେ, ସେମାନେ ସମସ୍ତେ ମାନିବେ । କମ୍ରେଡ୍ ଲି ଖାଲି କହିଦିଅନ୍ତୁ, ତାଙ୍କର କ'ଣ ଦରକାର; ଠିକ୍ ତାଙ୍କର କଥା ଅନୁସାରେ କାମ ହୋଇଯିବ ।'

ଏଥର କମ୍ରେଡ୍ ଲି ବିନା ପ୍ରତିବାଦରେ ତାଙ୍କ କଥା କହିବାକୁ ଲାଗିଲେ, "ଠିକ୍ ସମୟରେ ନୂଆ କଳଲଙ୍ଗଳଗୁଡ଼ିକ ଆସି ପହଞ୍ଚିବ । ସାଙ୍ଗରେ ଶିଖେଇବାବାଲା ଆସିବେ, କଳଲଙ୍ଗଳ କିପରି ଚଳାଇବାକୁ ହେବ ଲୋକଙ୍କୁ ଶିଖାଇବାକୁ । ଲଙ୍ଗଳ ଆସି ପହଂଚିବା ପୂର୍ବରୁ ତୁମେମାନେ କଣ୍ଟାଗ୍ରାମାନଙ୍କ ମଝିରେ ଥିବା ହିଡ଼ବାଡ଼ ଭାଙ୍ଗି ଜମିଟାକୁ ସମାନ

ଜଣଦେଇଥାଅ, ଯେପରି ଲଙ୍ଗଳ ଆସିଲାମାତ୍ରେ ଚାଷ ହୋଇପାରିବ । ଦେଖିବ, କେମିତି ଫସଲ ହେବ ! ଏମିତି ଫସଲ ପୂର୍ବେ କେବେ ଦେଖି ନଥିବ ।"

ଏତେବେଳକୁ ଲୋକେ ଓସ୍ୱାଙ୍ଗ୍ ସାଁ'ଙ୍କୁ ଠେଲି ଠେଲି ସମସ୍ତଙ୍କ ପଛକୁ ନେଇ ସାରିଥିଲେ ଓ ଆହୁରି ପଛକୁ ଠେଲୁଥାନ୍ତି । ସେ ଅବସ୍ଥାରେ ମଧ୍ୟ ନିଜ କଥା ଶୁଣାଇବାକୁ ସେ ଶେଷ ଚେଷ୍ଟାଟାଏ କଲେ । ଲୋକଙ୍କ ମୁଣ୍ଡ ଉପରକୁ ମୁହଁ କରି ସେ ପାଟିକଲେ, "ବିହନ ? ବିହନ ପାଇବୁ କୁଆଡ଼ୁ ?"

କମ୍ରେଡ୍ ଲି ସେହିପରି ପାଟି କରି କହିଲେ, "ବିହନ ଯୋଗାଇଦିଆଯିବ ।"

"କିନ୍ତୁ—କିନ୍ତୁ—" ବୋଲି ଓସ୍ୱାଙ୍ଗ ସାଁ ଆରମ୍ଭକରୁଥିଲେ, ଆଉ କହି ପାରିଲେ ନାହିଁ । ଲୋକେ ଜୋରରେ ତାଙ୍କ ମୁହଁରେ ହାତ ଦେଇ ଉଡ଼ି ଉଡ଼ି ଗାଁ ଦାଣ୍ଡକୁ ନେଇଗଲେ ଓ ଦାଣ୍ଡେ ଦାଣ୍ଡେ ନେଇ ଗାଁର ପଛପଟେ ଥିବା ଧାନ ବିଲରେ ପହଞ୍ଚାଇଦେଲେ । ଗାଁଲୋକେ ତାଙ୍କୁ ଧିକ୍କାରି କହିଲେ, "ବୋକା କାହାଁକା ! ତୋ'ର ଯୋଗୁଁ କ'ଣ ଆମେ ସମସ୍ତେ ଗୁଳି ଖାଇ ମରିବୁଁ ?"

ବଡ଼ବଡ଼ କରି ଓସ୍ୱାଙ୍ଗ୍ କହିଲେ, "ହାତରେ ନମରି ଭାତରେ ମରିବ ।"

ସେମାନେ ଜବାବ୍ ଦେଲେ, "ଆରେ, ସେ କଥା ତ ଆଉ ଆଜି ହୋଇଯାଉନାହିଁ !"

ଗାଁ ଲୋକେ ସେଇ ବିଲ ଭିତରେ ଓସ୍ୱାଙ୍ଗ୍‌ଙ୍କୁ ଛାଡ଼ି ଚାଲିଗଲେ । ଓସ୍ୱାଙ୍ଗ୍ ପାଦରେ ଭର ଦେଇ ବସି ପଡ଼ିଲେ, ଗାଁ ଆଡ଼କୁ ପଛକରି । ଆଗରେ ବିସ୍ତୀର୍ଣ୍ଣ ଧାନ ବିଲ ଉପରେ ମିଟିମିଟି କରି ଆଖି ବୁଲାଇନେଲେ । ବସନ୍ତ ଋତୁ ଆସି ପହଂଚିବା ଉପରେ । ଚଳ ଜଆଣ୍ଟକୁ ପ୍ରସ୍ତୁତ କରି ସେଥିରେ ବିହନ ପକାଇବାକୁ ହେବ । ତାଙ୍କ ଓଳିତଳେ ଠାଏ, ଗୋଟିଏ ଘରରେ ତାଙ୍କର ନିଜ ବିହନ ଅଛି । ସେତକ ସେମିତି ଥାଉ । ସେ ତାହା କାହାକୁ ଦେବନାହିଁ । ବର୍ଷେ ହେଉ, ଦ'ବର୍ଷ ହେଉ ବା ଦଶବର୍ଷ ହେଉ, ତାହା ଯେମିତି ଅଛି ସେମିତି ରହିପାରିବ । ଦିନ ଆସିବ ଯେତେବେଳେ

ସେ ନିଜ ବହନ ନେଇ ନିଜ ପାଇଁ ଚଳ ପକାଇବେ । ଆଜ ପ୍ରେ ଯେଉଁ କମ୍ରେଡ଼୍ ଲି ଓ ତାଙ୍କ ସମଗୋଷ୍ଠୀ ଅନ୍ୟ କମ୍ରେଡ଼୍‌ମାନେ— ସ୍ୱାଙ୍କ ଅବସ୍ଥା କ'ଣ ହେବ ? ହଜାର ହଜାର ବର୍ଷ ହେଲା ଯେଉଁମାନେ ଧାନଗୃଷକୁ ଜୀବିକା କରି ଆସିଛନ୍ତି ; ନିଜ ଦେହକୁ ଯେତକ ଚିହ୍ନନ୍ତି ନିଜ ଗୃଷଜମିକୁ ଯେଉଁମାନେ ସେତକ ଚିହ୍ନିଛନ୍ତି ; ଯେଉଁ ଗୃଷୀମାନେ ଆଖିମୁଦ ଗୋଟାଏ ଧାନରେ ଟିପ ମାରିଦେଲେ ତାହା ଭଲ ବହନ କି ନୁହେଁ ଜାଣିପାରନ୍ତି— ସେଭଳି ଗୃଷୀଙ୍କ କଥା ଯେଉଁ କମ୍ରେଡ଼୍‌ମାନେ ଶୁଣିବାକୁ ନାରାଜ; ସେମାନେ ତ ଭୋକ ଉପାସରେ ଦହଗଞ୍ଜ ହେବେ ଇ ହେବେ— ତୁଅନ୍ତୁ, ଗୃଷୀ କ'ଣ ? ଆଜ ହେଉ, ବା କାଲି ହେଉ, ଭୋକରେ ସଢ଼ିଲେ ଏମାନଙ୍କର ଚେତନା ହୁଏତ ଆସିପାରେ ।

ଏଭଳି ବିଗ୍ଚରିବା ସତ୍ତ୍ୱେ, କମ୍ରେଡ଼୍ ଲି ଭୋକ ଉପାସରେ ଘାଣ୍ଟି ହେବେ, ଏକଥା ଭାବିଲା ବେଳକୁ ତାଙ୍କ ପ୍ରତି ଓସ୍ୱାଙ୍ଗ୍‌ଙ୍କର ଅନୁକମ୍ପା ହେଲା । ଯୁବକଟି ତ ଖରାପ ଲୋକ ନୁହେଁ । ବେଶ୍ ଭଲ ଟୋକାଟିଏ । ଦୋଷ ଭିତରେ ଏତକ, ଗୁଡ଼ାଏ ଭ୍ରମରେ ପଡ଼ିଛି । ଭୁଲ କାମ କରୁଛି, ଅଥଚ ଠିକ୍ କରୁଛି ବୋଲି ଭାବୁଛି । ଓପରବାଲା କେହି ତାକୁ ଗୁଡ଼ାଏ ଭୁଲ କଥା ବତାଇ ଦେଇଅଛନ୍ତି । ଶୀତଋତୁର ଶେଷ ଭାଗରେ, ବସନ୍ତର ଠିକ୍ ସୀମାରେଖା ଉପରେ, ଓପରଓଳର ମଧୁରିଆ ଖରାରେ ବସି ଓସ୍ୱାଙ୍ଗ୍ ଚେୟାର୍‌ମ୍ୟାନ୍ ମାଓଙ୍କ କଥା ବିଗ୍ଚରିବାକୁ ଲାଗିଲେ । ବଳଦ ବା ଘୋଡ଼ାର ପଛେ ପଛେ ଲଙ୍ଗଳ ଲଣ୍ଡି ଧରି ଏହି ଚେୟାର୍‌ମ୍ୟାନ୍ ମାଓ ଭଲି କେବେ ଜମି ଗୃଷ କରିଛନ୍ତି ? ନା, ଜମି ମାଲିକ ଭଦ୍ରଲୋକର ପୁଅ ସେ, ବୋଧହୁଏ କେବଳ ବୋଝ ବୋଝ ଧାନ ଆସି ତାଙ୍କ ବାପାଙ୍କ ଅମାରର ଡୋଲିମାନଙ୍କରେ କୁଢ଼ା ହେବାର ଦେଖିଛନ୍ତି ; ଦେଖିଛନ୍ତି, ଗହମରେ ଧୂମମାନ ଭର୍ତ୍ତି ହେଉଛି; ଶୀତଦିନେ ଖାଇବା ପାଇଁ ଘୁଷୁରି ମରା ହୋଇ ମାଉଁସ ସାଇତା ହେଉଛି । ମାଟି ହାଣ୍ଡି—ଜିନିଷ ଖରାପ ହେବ ନାହିଁ ବୋଲି ଭିତର କଳେଇ କରା ହୋଇଛି— ଏଇପରି ମାଟି ହାଣ୍ଡିରେ ଲୁଣରେ ଜୁଆଇ ବନ୍ଧାକୋବି ସାଇତା ହେବାର ଦେଖିଛନ୍ତି । ମଣିଷ ଦେଖିକରି ଶିଖିଛି, ନା କରି କରି ଜାଣିଛି— ଏଇଥିରେ ହିଁ ଜ୍ଞାନର ପାର୍ଥକ୍ୟ । ସେ ଯେଉଁ ପାଶ୍ଚାତ୍ୟ ଦେଶର ଲୋକେ, ଗହିରିଆ ଗୃଷ କରନ୍ତି,

ସେମାନେ କ ଫସଲ କରନ୍ତୁ, କ'ଣ ଖା'ନ୍ତୁ, କଏ ଜାଣେ ? ତାଙ୍କ ଚାଲିଚଳନର କଥା ବା ଜାଣେ କଏ ? ଏବେ ଶୁଣାଯାଉଛି ଯେ, ପଶ୍ଚିମ ଦେଶର ଏବଂ ଆମେରିକାନ୍‌ମାନେ ଦୁରବସ୍ଥ । ଏହି ଦୁରବସ୍ଥମାନେ ତାଙ୍କ ଦେଶରେ ଯେଉଁ ଗଣ୍ଡରିଆ ଚାଷ କରୁଛନ୍ତି, ତାହା ଆଣି ଆମର ଏଦେଶରେ ସେଇ ଦୁରବସ୍ଥଙ୍କୁ ଆମେ ଅନୁସରଣ କରିବା କାହିଁକି ? ତେବେ, ଏ ସବୁ ତ କମ୍ରେଡ୍ ଲି'ଙ୍କର ଦୋଷ ନୁହେଁ । ଯୁବକଟି ସ୍ୱଦେଶପ୍ରେମୀ – ଏଥିରେ ତ ସନ୍ଦେହ କରିବାର ନାହିଁ । ଇଚ୍ଛା କରିଥିଲେ କମ୍ରେଡ୍ ଲି ତ କୌଣସି ସହର ଅଫିସରେ ସ୍ୱଚ୍ଛନ୍ଦରେ ବସି ପାରିଥାନ୍ତେ । ତା' ନକରି ସେ ମଫସଲରେ ଆସି ରହୁଛନ୍ତି, ସାଧାସିଧା ଖାଦ୍ୟ ଖାଉଛନ୍ତି, ପଟା ଉପରେ ଶୋଉଛନ୍ତି, ମଫସଲର ଅଣ୍ଡା ହାଉଆ ସହୁଛନ୍ତି ଓ ଅସନା ବରଦାସ୍ତ କରୁଛନ୍ତି । କାହିଁକି ? ଦେଶର ସେବା କରିବାକୁ ତ ? ତାଙ୍କ କାମରେ ଅବଶ୍ୟ ଦେଶର ଇଷ୍ଟ ନହୋଇ ଅନିଷ୍ଟ ହେବ – କିନ୍ତୁ ଇଷ୍ଟ ହେବ ବୋଲି ତ ସେ ମନରେ ଦୃଢ଼ ବିଶ୍ୱାସ କରୁଛନ୍ତି । ସେ ଯାହାହେଉ, ଯୁବକଟିର ଚାଷବାସ ବିଷୟରେ କାଣ୍ଡଜ୍ଞାନ ବି ନାହିଁ ।

ଏଇପରି ବସି ଭାବୁଭାବୁ ଓୟାଙ୍ଗ୍ ସାଁ ସ୍ଥିର କଲେ, ଆଉ ଥରଟାଏ ଚେଷ୍ଟା କରିବେ । ରାତିଯାଏ ଅପେକ୍ଷା କରିବେ ; ତା'ପରେ ଗାଁଯାକ ଶୋଇ ସାରିଲେ, ସେ, ଇସ୍କୁଲ ମାଷ୍ଟରଙ୍କ ଦରିଦ୍ର କୁଟୀରର ଯେଉଁ କ୍ଷୁଦ୍ର କୋଠରୀରେ କମ୍ରେଡ୍ ଲି ରହୁଛନ୍ତି, ସେଠାକୁ ଯାଇ ତାଙ୍କ ସଙ୍ଗେ ସାକ୍ଷାତ୍ କରିବେ ଓ ତାଙ୍କୁ ଅସଲ କଥାଟା ବୁଝାଇବେ । ସେତେବେଳେ ସେ ଓ କମ୍ରେଡ୍ ଲି'ଙ୍କ ବ୍ୟତୀତ ଆଉ ଗାଁର କେହି ନଥିବେ କଥା-ବାର୍ତ୍ତାରେ ବିଘ୍ନ କରିବାକୁ ।

ସେଇ ରାତିରେ କମ୍ରେଡ୍ ଲି ତାଙ୍କ କୋଠରୀରେ ପଡ଼ିଥିବା କାଠମେଜରେ ସେଦିନର କାର୍ଯ୍ୟ ଉପରେ ରିପୋର୍ଟ ଲେଖୁଛନ୍ତି, ଏଇ ସମୟରେ ମେଲା ଥିବା ଦୁଆର ମୁହଁରେ ଠିଆ ହୋଇ ଓୟାଙ୍ଗ୍ ସାଁ ଗଳାଖଙ୍କାର ମାଇଲେ । କମ୍ରେଡ୍ ଲି ରିପୋର୍ଟ ଉପରୁ ମୁହଁ ଟେକି ରୁକ୍ଷ ଭାବରେ ପଦକେ ପଚାରିଲେ, "ଏଁ ?"

ନମ୍ରଭାବରେ ଓୟାଙ୍ଗ୍ ସାଁ କହିଲେ, "ଆପଣ ଖୁବ୍ କାର୍ଯ୍ୟବ୍ୟସ୍ତ ଅଛନ୍ତି ।"

କମ୍ରେଡ୍‌ ଲି ଉତ୍ତର ଦେଲେ, "ମୁଁ ସବୁବେଳେ କାର୍ଯ୍ୟବ୍ୟସ୍ତ। ତୁମର କ'ଣ ଦରକାର, କହ।"

ଓସ୍ୱାଙ୍ଗ୍ ସାଁ କରେଇ କରେଇ ଆସ୍ତେ ଘର ଭିତରେ ପଶିଲେ। କୋଠରୀଟି ଖୁବ୍ ସାନ, ଓସ୍ୱାଙ୍ଗ୍ ସାଁଙ୍କୁ ତାହା କୁଳାଉ ନଥିଲା ପରି ଜଣାଗଲା। ବିବ୍ରତ ହୋଇ ସେ ହସିଲେ ଓ ମୁଣ୍ଡରେ ହାତ ବୁଲାଇ ବୁଲାଇ ଆରମ୍ଭ କଲେ, "ସେଇ ଧାନ କ୍ଷେତ ବିଷୟରେ—"

କମ୍ରେଡ୍‌ ଲି ଖଟ୍‌କିନି କଲମଟା ଟେବୁଲ ଉପରେ ଫୋପାଡ଼ି ଦେଇ ଗର୍ଜି ଉଠିଲେ, "ଧାନକ୍ଷେତ ବିଷୟରେ କ'ଣ ଗୃହ୍, ତୁମେ ?"

ଓସ୍ୱାଙ୍ଗ୍ ସାଁ ଆଥା ମାମା ହୋଇଗଲେ। ହଠାତ୍ ଧାନକ୍ଷେତ କଥାଟା ଆରମ୍ଭ କରିଦେଲେ କାହିଁକି ? ସାଧାରଣତଃ ଭଦ୍ର ସମାଜରେ ଯେପରି କଥୋପକଥନ ଆରମ୍ଭ ହୁଏ ସେଇ ରୀତିରେ କମ୍ରେଡ୍‌ ଲି'ଙ୍କ ଘର, ଦେହପା କୁଶଳ, ପିତାମାତାଙ୍କ କୁଶଳ ପ୍ରଶ୍ନ ପଚାରିବା ଉଚିତ ଥିଲା। ତେଣୁ ସେ ବାକ୍ୟାଳାପ ପୁଣି ମୂଳରୁ ଆରମ୍ଭ କଲେ।

"କମ୍ରେଡ୍‌ ଲି ! ଆପଣଙ୍କ ମହାଶୟ ବାସସ୍ଥାନ କେଉଁଠି ?"

କମ୍ରେଡ୍‌ ଲି ଉଟମଟ କରି ତାଙ୍କୁ ଗୃହିଁଲେ, "ତୁମର ସେଥିରେ କ'ଣ ଅଛି ?"

ଓସ୍ୱାଙ୍ଗ୍ ସାଁ ସାହସ ଧରି ଆଉ ପାଦେ ଆଗେଇଲେ, "ଆଉ ଆପଣଙ୍କ ସମ୍ମାନପ୍ରଦ ଶରୀରର ଖବର ଭଲ ତ ?"

କମ୍ରେଡ୍‌ ଲି କଡ଼ା ସ୍ୱରରେ ପଚାରିଲେ, "ତୁମେ କ'ଣ ମୋତେ ଥଟ୍ଟା କରୁଛ ? ରାତିରେ ଏଠାକୁ ଆସି ଏଭଳି ପୁରୁଣାକାଳିଆ, ବିପ୍ଳବ-ବିରୋଧୀ ଭଦ୍ରଲୋକଙ୍କ ରୀତିରେ ମୋତେ ଏ ପ୍ରଶ୍ନ ସବୁ ପଚାରିବାର କାରଣ କ'ଣ ?"

ଓସ୍ୱାଙ୍ଗ୍ ସାଁ ଜାଣିବାକୁ ଗୃହିଁଲେ, "ଏଭଳି ପ୍ରଶ୍ନ କ'ଣ ଆଜକାଲି ପଚରାଯାଇ ପାରିବ ନାହିଁ ?"

କମ୍ରେଡ୍‌ ଲି ତତ୍‌କ୍ଷଣାତ୍ ଜବାବ ଦେଲେ, "ନା ! କଦାପି ପଚରାଯାଇ ପାରିବ ନାହିଁ। ମୁଁ ଯେତେବେଳେ ଯେଉଁଠି କାମ କରୁଛି ସେତେବେଳେ ସେଇ ମୋ ଘର। ବର୍ତ୍ତମାନ ଏଇ କୋଠରୀଟି ମୋର୍

ଘର । ଆଜ ମୋ ସ୍ୱାସ୍ଥ୍ୟ – ମୋତେ ଯେଉଁ କାମ ଦିଆ ହୋଇଛି ତାହା ମୁଁ କରିବାକୁ ସମର୍ଥ ଥିବାଯାଏଁ ମୋ ସ୍ୱାସ୍ଥ୍ୟ ବିଷୟରେ ପ୍ରଶ୍ନ କାହିଁକି ଉଠିବ ?"

"ଆପଣଙ୍କ ପିତାମାତା –"

କମ୍ରେଡ୍ ଲି ଉଦାସୀନ ଭାବେ ଉତ୍ତର ଦେଲେ, "ମୋର ପିତା-ମାତା ନାହାନ୍ତି ।"

"ମାନେ –"

"ମାନେ ଆଉ କିଛି ନାହିଁ । ସିଧାସଳଖ କଥା, ମୋର ପିତାମାତା ନାହାନ୍ତି ।"

ଓସ୍ୟାଙ୍ଗ୍ ସାଁ ବ୍ୟସ୍ତ ହୋଇଗଲେ । କମ୍ରେଡ୍ ଲି'ଙ୍କର ଏତେ ଅଳ୍ପ ବୟସ, ଅଥଚ ତାଙ୍କର ବାପମା' ନାହାନ୍ତି ! ଏ କମିତି କଥା ! ତାଙ୍କ ନିଜ ବାପା ଅବଶ୍ୟ ଜରରେ ମରିଛନ୍ତି, କିନ୍ତୁ ବୁଢ଼ୀ ମା' ଯେ ଅଦ୍ୟାପି ଅଛନ୍ତି !

ଧୀରଭାବରେ ସେ ପଚାରିଲେ, "ସେ ଦୁହିଁଙ୍କର ଦେହାନ୍ତ ହେଲା କିପରି ?"

କମ୍ରେଡ୍ ଲି କିଛି ଉତ୍ତର ଦେଲେନାହିଁ । ସେ ମୁହଁ ବୁଲାଇ ବଲବଲ କରି ମାଟି କାନ୍ଥକୁ ଚାହିଁ ରହିଲେ । ଓସ୍ୟାଙ୍ଗ୍ ସାଁ ସମବେଦନାରେ ଦୀର୍ଘ ନିଃଶ୍ୱାସ ପକାଇଲେ, କହିଲେ, "ଆପଣଙ୍କ ମନ କ'ଣ ହେଉଛି, ମୁଁ ଜାଣିପାରୁଛି, କମ୍ରେଡ୍ ଲି ! ଚେର ନଥିବା ଗଛ ଯେମିତି, ବାପମା' ନଥିବା ମଣିଷ ସେମିତି । ଆପଣ ଏତେ କମ୍ ବୟସରେ ବାପମା' ଛେଉଣ୍ଡ ହୋଇଗଲେ, ଏଇଟା ଆହୁରି ଦୁଃଖର କଥା । ଏତେ କଠିଣ ପରିଶ୍ରମ କରୁଛନ୍ତି , ଆପଣ କେତେ ସରୁ ଓ ଶୁଖିଲା ଦିଶୁଛନ୍ତି ! ଆପଣ ନିଶ୍ଚୟ ବାପମା'ଙ୍କୁ ଝୁରି ହେଉଛନ୍ତି ।"

କମ୍ରେଡ୍ ଲି ସାନ୍ତ୍ୱନା ଗ୍ରହଣ କରିବା ଅବସ୍ଥାରେ ନଥିଲେ । ଦାନ୍ତ ଚିପି ସେ ଅସ୍ପଷ୍ଟ ସ୍ୱରରେ କହିଲେ, "ମୁଁ ତାଙ୍କୁ ଝୁରିହେଉନାହିଁ । ମୋ ଦୋଷରେ ତ ସେମାନେ—ମୁଁ ତ ସେପରି କିଛି—ସେମାନଙ୍କୁ ସୁଯୋଗ ଦିଆଯାଇଥିଲା – ।"

ଓସ୍ୟାଙ୍ଗ୍ ସାଁ ବିହ୍ୱଳିତ ହୋଇଗଲେ । ଆଜକାଲି ମଣିଷର ଦଶା

ଯାହା, ସେ କଥା ତାଙ୍କୁ ଅଳ୍ପ ବହୁତ ଜଣା । "ତେବେ କ'ଣ ସେମାନେ —।"

ଏତିକ କହି ସେ ରହିଯିବାରେ କମ୍ରେଡ଼୍ ଲି ତାଙ୍କ ଆଡ଼କୁ ମୁହଁ ଫେରାଇ କହିଲେ, "ମୋ ବାପା ଥିଲେ ଜମିଦାର, କିନ୍ତୁ ଜମିଠାରୁ ବହୁ ଦୂରରେ ରହୁଥିଲେ । ଆମେ ରହୁଥିଲୁ ସହରରେ । ଆମର ଧନ ଥାଏ । ବାପା ନୂଆ ଯୁଗ ସଙ୍ଗେ ତାଳ ମିଶାଇ ଚଳିବାକୁ ପ୍ରସ୍ତୁତ ହେଲେନାହିଁ । ଜୀବନର ଗତି ବଦଳାଇବାକୁ ନାରାଜ ହେଲେ । ସବୁ କଥା ହସରେ ଉଡ଼ାଇ ଦେବାକୁ ଚାହିଁଲେ , କହିଲେ, ତାଙ୍କର ବଞ୍ଚିବାକୁ ଲୋଭ ନାହିଁ । ଏଭଳି ଅବସ୍ଥାରେ ଆଉ ଦୁଃଅଳା କ'ଣ ?—ସେ ମଲେ । ଆଉ ମୋ ମା' ଦଉଡ଼ି ଦେଇ ପକାଇଲେ ।"

ଓୟାଙ୍ଗ୍ ସାଁଙ୍କୁ ବଡ଼ ବାଧିଲା । ସେ ବ୍ୟଥିତ ସ୍ୱରରେ "ଉହୋଃ ! ଆଃ ! କି ଦୁଃଖର କଥା !"

କମ୍ରେଡ଼୍ ଲି ହଠାତ୍ ତେଜିଯାଇ ଉତ୍ତର ଦେଲେ, "କାହିଁକି ପରା ବାପା ନିଜ ଦୋଷରୁ ଦଣ୍ଡ ପାଇଲେ । କ'ଣ ଦରକାର ଥିଲା ସେ ଦୁହିଁଙ୍କର ମରିବାକୁ ? ସେ ଦୁହେଁ—ଅତି ନିଷ୍ଠୁର ସେ ଦୁହେଁ ; ମୁଁ ତାଙ୍କର ପୁଅ, ମୋ କଥା ଟିକିଏ ବିଚାରିଲେ ନାହିଁ । ତାଙ୍କୁ କେତେ ବୁଝେଇଲି, କେତେ ନେହୁରା ହେଲି । ତାଙ୍କ ଆଗରେ—ଆଣ୍ଠୁମାଡ଼ି ପ୍ରାର୍ଥନା କଲି । ମୁଁ ତାଙ୍କ ଆଗେ ଏଭଳି ନ୍ୟୂନ ହେବା, ଆଜି ମନେ ପଡ଼ିଲେ ଲାଜ ମାଡ଼ୁଛି ।"

ଓୟାଙ୍ଗ୍ ସାଁ କହିଲେ, "ଏଥିରେ ଲାଜ ମାଡ଼ିବାର କ'ଣ ଅଛି ? ନିଜ ବାପା ମା'ଙ୍କ ଆଗେ ଆଣ୍ଠୁମାଡ଼ି, ନ୍ୟୂନ ହୋଇ ଅଳି କରିବା, ତୁମର କରିବାର କଥା, ଠିକ୍ କରିଛ ।"

କମ୍ରେଡ଼୍ ଲି ଚିତ୍କାର କଲେ, "ନା, ନା, ସେପରି କରିବା ଠିକ୍ ନୁହେଁ । ବିପ୍ଳବ-ବିରୋଧୀ ସମ୍ଭ୍ରାନ୍ତ ସମାଜରେ ଏ ରୀତି ଚଳୁଥିଲା । ଯାହାହେଉ, ମୋ ଦୋଷ ପାଇଁ ମୁଁ ପ୍ରାୟଶ୍ଚିତ୍ତ କରିଛି । ମୁଁ ଯାଇ— ସବୁକଥା କର୍ତ୍ତୃପକ୍ଷଙ୍କୁ ଜଣାଇଦେଲି । ମୋ ବାପାଙ୍କର ଦୋଷ କହିଦେଲି । ତା'ପରେ ସେମାନେ ଆସିଲେ, ଓ ତାଙ୍କୁ ଧଇଲେ ।"

ଓୟାଙ୍ଗ୍ ସାଁ ପଚାରିଲେ, "ଜେଲ୍‌କୁ ନେଲେ ?"

ଢମେଣ୍ଡ୍‌ଲ୍ କହିଲେ, "ନା, ଦଣ୍ଡକେ ସବୁ ସରିଗଲା । ଆମର ଘରେ ତାଙ୍କ ଦୋଷର ବିଚାର ହୋଇଗଲା - ଆଜ - ଅଗଣାରେ ତାଙ୍କୁ ଗୁଳିକରି ମାରି ଦିଆହେଲା ।"

ଓସ୍ମାଙ୍ଗ୍ ଶୋକ ପ୍ରକାଶ କରି କହିଲେ, "ସେଇଥିପାଇଁ ତ ତୁମେ ଏତେ ଦୁର୍ବଳ ହୋଇଛ ! ତୁମକୁ ତ ଖାଇବାକୁ ରୁଚୁ ନଥିବ । ସବୁବେଳେ ବାପା ମନେ ପଡୁଥିବେ ।"

ଢମେଣ୍ଡ୍‌ଲ୍ ଛାଣ୍ଡେଇ କରି କହିଦେଲେ, "ଭୁଲ୍ ବୁଝିଛ । ମୁଁ ବାପାଙ୍କୁ ଝୁରୁନାହିଁ । ଯାହା ହୋଇଛି ଠିକ୍ ହୋଇଛି । ମୁଁ ମୋର କର୍ତ୍ତବ୍ୟ ଯଥାଯଥ ଭାବେ ସମ୍ପନ୍ନ କରିଛି । ହଉ, ଏଥର ତୁମେ ଯାଅ; ମୋତେ ମୋର କର୍ତ୍ତବ୍ୟ କରିବାକୁ ଦିଅ ।"

ଓସ୍ମାଙ୍ଗ୍ ସାଁଙ୍କର ମନେ ପଡ଼ିଲା, ସେ ଯାହା କରିବାକୁ ଆସିଥିଲେ ସେ କାମ ଏ ପର୍ଯ୍ୟନ୍ତ ହୋଇନାହିଁ । ସେ ପୁଣି ଆରମ୍ଭ କଲେ -

"ହଁ, ଧାନବିଲ କଥା - "

ଏ କଥା କେତେ ଗଭୀର ଏତେ ପ୍ରଭାବ—ଓସ୍ମାଙ୍ଗ୍ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଢମେଣ୍ଡ୍‌ଲ୍ ଧଡ଼୍‌କିନା ଠିଆ ହୋଇ ପଡ଼ିଲେ, ହାତ ମୁଠା କରି, ଓସ୍ମାଙ୍ଗ୍‌ଙ୍କ ଆଡ଼କୁ ଝପଟି ଆସି କହିଲେ, "ଏଇ ଧାନ ଖଳାରେ ଗୁଳିଖାଇ ମରିବାକୁ ମନ ହେଉଛି ?"

ଷଣ୍ଢ ହେଣ୍ଟାରିଲା ପରି ସ୍ୱର । ଏତେ ପାଟି କଲେ ଯେ, କଣ୍ଠ ଫାଟିଗଲା । ସେ ପୁଣି କହିବାକୁ ଲାଗିଲେ, "ବୁଝ କାହାଁକା ! ଜାଣୁ, ସେ ମୋଠାରୁ ଶୁଣିଲେ ତୋତେ ମଧ୍ୟ କାନ୍ଥ ପାଖରେ ଠିଆ କରାଇ ଗୁଳି କରିଦେବେ । ତୋ'ର ଭଲମନ୍ଦ ମୋର ଉପରେ ! ତୁ ଆଦେଶ ମାନି ଚଳିଲୁ, ଏହା ଦେଖିବା ମୋର କର୍ତ୍ତବ୍ୟ—ମୋର କର୍ତ୍ତବ୍ୟ ।"

ଓସ୍ମାଙ୍ଗ୍ ସାଁ ପଳାଇ ଯାଇ ଅନ୍ଧାରରେ ମିଶିଗଲେ । ଆଉ ଅଧିକା କ'ଣ ବା କରି-ପାରନ୍ତେ ? ପରିଷ୍କାର ଜଣାପଡ଼ିଗଲା ଯେ, ଢମେଣ୍ଡ୍‌ଲ୍'ଙ୍କ କଥା ଟଳିବାର ନୁହେଁ । ସେ ତ ପରିଷ୍କାର ଶୁଣାଇ ଦେଇଛନ୍ତି— ସେ କରୁଛନ୍ତି—ତାଙ୍କ କର୍ତ୍ତବ୍ୟ । କର୍ତ୍ତବ୍ୟ ବୋଲି ବୁଝିଲେ, ମଣିଷ ତ କୌଣସି ପାପ କରିବାକୁ ପଛେଇବ ନାହିଁ । ବେଶ୍ ତ ଜଣାପଡ଼ୁଛି,

କମ୍ରେଡ୍ ଲି ଖାସା ଲୋକ—ଆଜକାଲିର ମାପକାଠିରେ ବେଶ୍ ସ୍ୱଦେଶପ୍ରେମୀ ଯୁବକ । ସେ ତାଙ୍କ ପାରୁପର୍ଯ୍ୟନ୍ତ କର୍ତ୍ତବ୍ୟ କରି ଚାଲିଛନ୍ତି । ଖୁବ୍ ସମ୍ଭବ, ନିଜ ବାପାଙ୍କୁ ନେଇ ହାଣମୁହଁରେ ପହଞ୍ଚାଇଲା ବେଳେ ବି ସେ ନିଜର କର୍ତ୍ତବ୍ୟ ସମାପନ କରୁଛନ୍ତି ବୋଲି ବୁଝିଥିଲେ । ମଣିଷକୁ, ତା, କର୍ତ୍ତବ୍ୟ ବୋଲି ଯାହା ପଢ଼ାଇ ଦିଆଯିବ, ସେ ତ ସେଇ ଅନୁସାରେ ଆଗେଇବ । ବାଃ, କର୍ତ୍ତବ୍ୟ ! ଭୟାନକ ଏ ଶବ୍ଦଟା ! ଗୋଟିଏ ଖଣ୍ଡା ପରି ଏହା ମଣିଷ ଉପରେ ପଡ଼ି ଏକଦମ୍ ଦଫା ରଫା କରିଦେବ । ଏଇ କର୍ତ୍ତବ୍ୟ-ନିଶାରେ ତ ମଣିଷ ପାଗଳ ହୋଇଯିବ – ସବୁବେଳେ ବିଶ୍ୱାସ କରୁଥିବ, ସେ ଯାହା କରୁଛି ତାହାହିଁ ଠିକ୍—ଅନ୍ୟମାନେ ଯାହା କରୁଛନ୍ତି ସେ ସବୁ ଭୁଲ । ହେଇଟି, ଉଦାହରଣ ସ୍ୱରୂପ, ଏଇ ଯେଉଁ ଜମିକୁ ଗହିରିଆ କରି ଚାଷ କରିବା କଥାଟା—ଓୟାଙ୍ଗ୍ ସାଁ ବ୍ୟସ୍ତ ମନରେ ମୁଣ୍ଡ ହଲାଇଲେ । ମନରେ ଯେଉଁ ଆଶାଟିକକ ରହିଥିଲା ସେତକ ଛାଡ଼ିଦେଲେ । ଆଉ ତ କେହି ନାହିଁ, କାହା ଆଗରେ ଯାଇ ଆପତ୍ତି କରିବେ ? ଦିଅଁ ଦେବତା ବି ଗଲେଣି । ଦେଉଳରେ ଆଉ ଦିଅଁ ନାହାନ୍ତି, ତାଙ୍କ ବଦଳ, ଏବେ ସେହି ଦେଉଳରେ ସୈନ୍ୟମାନେ ପୁରିଲେଣି ।

ସେଦିନ ପରେ, ଓୟାଙ୍ଗ୍ ସାଁ ଓ ଗାଁର ଅନ୍ୟ ଚାଷୀଙ୍କ ଭିତରେ କାର୍ଯ୍ୟରେ ବା ବିଶ୍ୱାସରେ; କୌଣସିମାତ୍ର ପାର୍ଥକ୍ୟ ଥିବାର କେହି ଲକ୍ଷ୍ୟ କରି ନଥାନ୍ତେ । ପ୍ରତିଦିନ ବଡ଼ଭୋରରୁ ଗାଁର ସମସ୍ତେ ନିଦରୁ ଉଠି, ଧାଡ଼ି ଧରି ଗହିରକୁ ଯା'ନ୍ତି ଓ କଆଁଶମାନଙ୍କ ମଝିରେ ଥିବା ଛିଡ଼ବାଡ଼ ଭାଙ୍ଗିବା କାମରେ ଲାଗନ୍ତି । କୋଦାଳ ଓ ଫାଉଡ଼ା ଧରି ମୁହୂର୍ତ୍ତେ ବିଶ୍ରାମ ନକରି ହଣାମରା ଚାଲିଥାଏ, କମ୍ରେଡ୍ ଲି ପ୍ରଚଣ୍ଡ ବେଗରେ କାମ ଲଗାଇ-ଥାନ୍ତି, ତାଙ୍କ ପଛରେ ମହଜୁଡ୍ ଥାନ୍ତି ବନ୍ଧୁକଧାରୀ ପଲ୍ଟଣ ।

କମ୍ରେଡ୍ ଲି ମଝିରେ ମଝିରେ ପାଟି କରୁଥାନ୍ତି, "ଧାନ ରୋଇବା ନିମନ୍ତେ କ୍ଷେତକୁ ସମାନ କରି ସଜାଡ଼ିବାକୁ ହେବ ।"

ତଳି କଆଁଶମାନଙ୍କର ଅବସ୍ଥା ଖୁବ୍ ଭଲ ଥାଏ । ବସନ୍ତ ଋତୁ ବେଗେ ଆସି ପଡ଼ିବାରୁ ବହୁତ ବେଗେ ତଳି ପଡ଼ିଥିଲା । ତଳି କଆଁଶ ମାନଙ୍କରେ ଖାଲି ଯେ ଖତ ଲାଗିଥିଲା ତାହା ନୁହେଁ, ବିଦେଶରୁ ଆସିଥିବା ସାର ବି ଦିଆ ହୋଇଥିଲା । ଅବଶ୍ୟ, ବହୁତ ଗୋଲମାଲିଆ ହୋଇ

ଯାଇଥିଲା ; ଅର୍ଥାତ୍‌, ବିହନ ଏକାଜାତିଆ ବା ବିଶୁଦ୍ଧ ନଥିଲା । ସେଇ ଅଞ୍ଚଳର ବିହନ ଅବଶ୍ୟ ବୁଣା ହୋଇଥିଲା, କିନ୍ତୁ ତା' ସାଙ୍ଗେ ଦେଶର ଅନ୍ୟ ଅଞ୍ଚଳରୁ ଆସିଥିବା ବିହନ ବି ମିଶିଥିଲା । ଆଜିକାଲି ତ ଆଉ ଯେଉଁ ଅଞ୍ଚଳର ବିହନ ସେଠାରେ ଅଲଗା ହୋଇ ରହୁନାହିଁ ; ସବୁ ଯାଇ ରହୁଛି କେନ୍ଦ୍ରରେ, ବଡ଼ ବଡ଼ ଗୋଲମାନଙ୍କରେ । ଚଷାମାନେ ନିଜେ ଯେଉଁ ବିହନ ସାଇତନ୍ତି, ଆଜିକାଲି ତାକୁ ନିଜେ ରଖି କର୍ତ୍ତୃପକ୍ଷଙ୍କ ହାତକୁ ଟେକି ଦେବାକୁ ନିୟମ ହୋଇଛି । ଓସ୍ୟାଙ୍ଗ୍‌ ସାଁ ଏ ନିୟମକୁ ଅମାନ୍ୟ କରି, ନିଜେ ବିହନରୁ ଅଧେ ହେବ ଦେଇ ବାକି ଅଧିକ ଲୁଚାଇ ରଖି ଥିଲେ । ଗାଁର ଅନ୍ୟ କୃଷୀମାନେ ଏଇଭଳି କେତେ ଲୁଚାଇଥିଲେ କେଜାଣି ? କିଏ କାହାକୁ କହୁଛି ଯେ ଜଣାପଡ଼ିବ । ପୂର୍ବକାଳରେ ପର-ସ୍ପରକୁ ବିଶ୍ୱାସ ଥିଲା, କିନ୍ତୁ ଏବେ ନିଜର ଗୁପ୍ତ କଥା ·ଅନ୍ୟକୁ କହିବାକୁ ଭରସା ପାଉନାହିଁ । ଧରାପଡ଼ିଲେ ତ ଖାଲି ନିନ୍ଦା ମିଳିବ ନାହିଁ, ମିଳିବ ମାଡ଼, ଯନ୍ତ୍ରଣା ଓ ଶେଷରେ ଦଣ୍ଡ । କୌଣସି ମତେ ଜୀବନ ଧରି ରହିବାର କଥା । ଏତେବେଳେ ଯେଝାର ଗୁପ୍ତ କଥା ତା' ନିଜ ପେଟରେ ରଖିବାକୁ ହେବ ହିଁ ହେବ ।

ସେ ଯାହାହେଉ, ଚାଳକିଆଣ୍ଣିଗୁଡ଼ିକ ଯେପରି ଗାଢ଼ ସାଗୁଆ ଦିଶିଲେ, ତାହା ଦେଖି ଜଣା ପଡ଼ୁଥାଏ ଯେ, ତାଙ୍କର ନିଜ ଅଞ୍ଚଳର ବିହନ ବେଶୀଭାଗ ବୁଣା ହୋଇଛି । ଖୁବ୍‌ ବିସ୍ତୀର୍ଣ୍ଣ ଭାବେ ଚାଷ ପଡ଼ିଥାଏ, କାରଣ ମସ୍ତବଡ଼ ବିସ୍ତୀର୍ଣ୍ଣ କ୍ଷେତରେ ପାଣି ମଡ଼ାଇ ବୋଇବାକୁ ପଡ଼ୁ-ଥାଏ ।

ଯଥାସମୟରେ ଗହିରର ସବୁତକ ହିଡ଼ବାଡ଼ ଭାଙ୍ଗି ସମାନ ହୋଇ-ଗଲା—ଆଖି ଯେତେଦୂର ପାଇଲା, ସବୁ ସମାନ ଗୋଟିଏ କ୍ଷେତ । କ୍ଷେତଟି ଦିଗ୍‌ବଳୟ ଆଡ଼ ପାଖକୁ ବି ବିସ୍ତୃତ ହୋଇଥାଏ । ତା'ପରେ ଟ୍ରକ୍‌ମାନଙ୍କରେ ବୁହା ହୋଇ ଆସିଲା ବିଦେଶୀ ଲଙ୍ଗଳ ସବୁ । ସେଗୁଡ଼ିକ ବିଦେଶରୁ ଆସିଥିବା ଟ୍ରାକ୍ଟର୍‌ମାନଙ୍କରେ ଖଞ୍ଜା ହେଲେ । ଟୋକାମାନେ ଟ୍ରାକ୍ଟର୍‌ ଚଳାଇ ସେଇ ବିସ୍ତୀର୍ଣ୍ଣ କ୍ଷେତକୁ ଚଷିବାକୁ ଲାଗିଲେ । ଗାଁ ଲୋକେ ଖଣ୍ଡେ ଦୂରରେ ଆଡ଼େଇହୋଇ ଠିଆ ହୋଇଥାନ୍ତି ଓ ଲଙ୍ଗଳ ମୂନକୁ ଚାହିଁଥାନ୍ତି—ମୁହଁରେ ଫୁଟି ଦିଶୁଥାଏ ବିସ୍ମୟ ଓ ଆତଙ୍କ ।

ମନର ବେଦନା ରୋକିବାକୁ ନିଃଶ୍ୱାସ ଚପି ସେମାନେ ଆର୍ତ୍ତସ୍ୱରରେ ଅସ୍ଫୁଟ ଚିତ୍କାର କରୁଥାନ୍ତି, "ଆଃ, ଉଃ, ଊଃ ।"

ବେଦନା ହେବାର କଥା । କାରଣ, ଜଙ୍ଗଲମୂଳରେ ଖାଲି ତ ନିର୍ଜୀବ ଜମି ବିଦାରି ହେଉନଥାଏ, ବିଦୀର୍ଣ୍ଣ ହେଉଥାଏ ସେମାନଙ୍କର ନିଜ କଲିଜା । ମଣିଷର ହାତ କେତେ ଯତ୍ନରେ ଏ ଜମିର ରକ୍ଷଣାବେକ୍ଷଣ କରି ଆସିଛି, ହକେ ଅଧେ ନୁହେଁ, ହଜାର ହଜାର ବର୍ଷ ଲଗାଏତ । ଆଜ ତା'କୁ କଳଲଙ୍ଗଳ ବିଦାରି ପକାଇ କି ଯନ୍ତ୍ରଣା ନ ଦେଉଛି ! ଜମିର ଉପରଭାଗରେ ଯେଉଁ ଉର୍ବରମାଟିର ସ୍ତରଟି ଅଛି, ତାହା ଲଙ୍ଗଳ ମୂଳରେ ଏ ପାଖକୁ ସେ ପାଖକୁ ପଡ଼ିଯାଉଥାଏ । ତା'ତଳେ ପ୍ରାୟ ଛ'ଇଞ୍ଚ ବହଳିଆ ପଙ୍କୁଆ ମାଟି—ଧାନ ଗଛର ପ୍ରାଣ, ପାଣିକୁ ଧରି ରଖୁଥିଲା । ଗନ୍ଧରିଆ ଚାଷ କରୁଥିବା କଳଲଙ୍ଗଳର ମୂଳରେ ଏ ମାଟି ମଧ୍ୟ ଚିରି ହୋଇ ଏପାଖେ ସେ ପାଖେ ଫୋପାଡ଼ ହୋଇଗଲା । ତା' ତଳେ, ଅନ୍ତର୍ଭୂମିରେ ଫସ୍‌ଫସିଆ ସଚ୍ଛିଦ୍ର ମାଟିର ସ୍ତର ।

ପୈତୃକ ଚାଷୀମାନେ ପୁରୁଷାନୁକ୍ରମେ ତାଙ୍କ ପିଲାଙ୍କୁ କହି ଆସିଛନ୍ତି, "ମାଟିର ଚମକୁ କେବେଁ ବିଦାରି ଦେବନାହିଁ । ଆମ ଦେହର ଯେପରି ଚମ, ସେହିପରି ମାଟିର ଓପର ପ୍ରସ୍ଥଟା ମାଟିର ଚମ । ଚମ ଯେପରି ଆମ ଦେହର ହାଡ଼ ଓ ରକ୍ତକୁ ଆବୃତ କରି ରଖିଛି, ମାଟିର ଏଇ ଚମ ସେହିପରି ମାଟି ଭିତରର ବାଲି ଓ କଙ୍କରକୁ ଆବୃତ କରି ରଖିଛି ।"

କଳଲଙ୍ଗଳର ଏଇ ଗନ୍ଧରିଆ ଚାଷରେ ମାଟିର ସେଇ ଚମ ଛିନ୍ନଭିନ୍ନ ହୋଇ ନଷ୍ଟ ହୋଇଗଲା; ଭିତରର ଧୋବଲା ବାଲି ଓ ପଥରର ଛୋଟ ଛୋଟ ଟୁକୁରା—କଙ୍କର, ବାହାରକୁ ବାହାରି ଜମିରେ ବାଞ୍ଛ ହୋଇ-ଗଲା । ଗାଁ ଲୋକେ ଏହା ଦେଖିଲେ; ସେମାନଙ୍କ ହୃଦୟରେ ନୈରାଶ୍ୟ ଭରିଗଲା । ଫଳ କ'ଣ ହେବ ତାଙ୍କୁ ଜଣା ପଡ଼ିଗଲା । ବାପ ଗୋସିଁ ବାପ ଯାହା କହିଥିଲେ, ସେଇଆ ନିଶ୍ଚୟ ଘଟିବ । କିନ୍ତୁ ଗାଁର ଜଣେ କେହି ତୁଣ୍ଡ ଫିଟାଇ ପଦେ କିଛି କହିଲେ ନାହିଁ; ଓସ୍ତାଙ୍କ୍ ସାଁ ବି ଚୁମା ହୋଇ ରହିଲେ । ଯେଉଁ ଅନିଷ୍ଟ ହେବାର କଥା ତାହା ତ ହୋଇ ସାରିଲାଣି, ଆଉ କହିଲେ କି ଲାଭ ?

ବିରସମନରେ ସମସ୍ତେ କେବଳ ହୁକୁମ ତାମିଲ କରୁଥାନ୍ତି ; କୁତପର, ସମସ୍ତଙ୍କଠାରୁ ବେଶୀ ଧ୍ୟାନ ଦେଇ ଲାଗିଥାନ୍ତି ଓସ୍ୟାଙ୍ଗ୍ ସାଁ ।

"ହଁ, ହଁ, କମ୍ରେଡ୍ ଲି ! ଆପଣ ଯେପରି କହୁଛନ୍ତି, ଆମେ ଠିକ୍ ସେଇପରି କରୁଛୁ, ହେଉଛି ।"—ବଦନକେ ଶହେ ଥର ଓସ୍ୟାଙ୍ଗ୍ ସାଁ ଏଇକଥା କହୁଥାନ୍ତି । କମ୍ରେଡ୍ ଲି ପୂର୍ବକଥା ପାସୋରି ଓସ୍ୟାଙ୍ଗ୍ ସାଁ'ଙ୍କ କାମକୁ ପସନ୍ଦ କଲାପରି ଜଣା ପାଡୁଥାଏ । ସେ ଭାବୁଥାନ୍ତି, ଏ ପଧାନଟି ବେଶ୍ ସାଧୁ ଲୋକ ; ନିଜର ଭ୍ରମ ଦୂର ହେବା ପରେ ବେଶ୍ କାମରେ ଲାଗିଛି ।

ଶେଷରେ ଦିନେ ସେ ଶୁଣାଇଦେଲେ, "ଓସ୍ୟାଙ୍ଗ୍ ସାଁ, ମୁଁ ତୁମକୁ ପ୍ରଶଂସା କରି ଉପରକୁ ଲେଖିବି ।"

ଉଦାସୀନ ଭାବରେ ଓସ୍ୟାଙ୍ଗ୍ ସାଁ ଉତ୍ତର ଦେଲେ, "ଆପଣଙ୍କର ମଙ୍ଗଳ ହେଉ, କମ୍ରେଡ୍ ଲି !"

ଭବିଷ୍ୟତର ସମସ୍ତ ଆଶା ସେ ଛାଡ଼ି ସାରିଥିଲେ । ତାଙ୍କ ମନରେ ଏତେବେଳେ ଗୋଟିଏ ମାତ୍ର ଚିନ୍ତା ଥାଏ, ଶେଷରେ ଯେତେବେଳେ ସର୍ବନାଶ ହେବାକଥା ଜଣାପଡ଼ିବ ସେତେବେଳେ ଏ କମ୍ରେଡ୍ ଲି'ଟିର ଦଶା ହେବ କ'ଣ ?

ଏଭଳି ସୁନ୍ଦର ବସନ୍ତ ଋତୁ ଆଗରୁ କେବେ ହୋଇନଥିଲା । ଭଲ ବର୍ଷା ହେଲା, ନଦୀରେ ଘୂରିପାଆ ପାଣି ଘୁରିଲା । ଗ୍ରୀଷ୍ମ ଋତୁ ଆରମ୍ଭ ହେଲା ବେଳକୁ ସବୁଜ ଚାରାଗଛଗୁଡ଼ିକ ପୂରି ଉଠିଥାନ୍ତି । ଧାନ ରୋଇବାର ଏଇ ଅସଲ ବେଳ ।

ଆଗେ ଲୋକେ ନିଜ ପରିଶ୍ରମରେ ନଈରେ ମାଟିର ଆଡ଼ି ପକାଇ ଯେତିକି ପାଣି ଦେଲେ ଧାନକୁ ପାଇବ, ନଈରୁ ସେତିକି ପାଣି ବିଲ ଭିତରକୁ ଛାଡ଼ନ୍ତି । ଏବେ ଆଉ ପରିଶ୍ରମ କରି ଆଡ଼ି ପକାଇବା ଦରକାର ହେଲା ନାହିଁ । ଟ୍ରକ୍ ତିନିଟାରେ ବୋଝେଇ ହୋଇ ତିନୋଟା ବଡ଼ ଲୁହା ପମ୍ପ୍ ଆସିଲା, ଓ ନଈକୂଳରେ ଠାଏ ଠାଏ ରଖାହେଲା । ସେଇ ପମ୍ପ୍ ତିନୋଟି ନଈରୁ ପାଣିଟାଣି ସୃଷ୍ଟ ହୋଇଥିବା ସେଇ ପ୍ରକାଣ୍ଡ କ୍ଷେତରେ ପାଣି ମଡ଼ାଇଲେ । ମାତ୍ର ଦୁଇଟା ଦିନରେ ସବୁଆଡ଼େ ପାଣି ଭରି ହୋଇ ଗୋଟାଏ ହ୍ରଦପରି ହୋଇଗଲା । ଗଛ ଗଛ ତା ଭିତରେ ଟାପୁ ପରି ରହିଥାଏ,

ଉଚ୍ଚା ହୋଇ ତିଆରି ହୋଇଥିବା ସଡ଼କଟି ବାହାର ଭୂଭାଗ ସଙ୍ଗେ ଏକମାତ୍ର ଯୋଗସୂତ୍ର ହୋଇ ରହିଥାଏ । ପାଣି ଭରିଗଲା ପରେ, ଏହି ପାଟ ଭିତରେ ଏକାଥରକେ ଶହ ଶହ ଶ୍ରମିକ ପଶିଲେ—ଏମାନଙ୍କୁ ବି ଟ୍ରକ୍‌ମାନଙ୍କରେ ବାହାରୁ ଅଣା ଯାଇଥିଲା । ଯେଉଁଆଡ଼େ ଚାହିଁବ ସେଆଡ଼େ ନେଳିଆପୋଷାକ-ପିନ୍ଧା ଲୋକେ ଲଇଁ ପଡ଼ି ଧାନ ରୋଇଯାଉଥାନ୍ତି । ରୁଆ ସରିଲା ପରେ ଆଗରୁ ଯାହା ହ୍ରଦପରି ଦିଶୁଥିଲା, ତାହା ହୋଇଗଲା ସବୁଜ ଧାନ ଚାରାର ଗୋଟିଏ ପ୍ରକାଣ୍ଡ କିଆରି । କମ୍ରେଡ୍ ଲି ସୁ ଉପରେ ଆଖି ବୁଲାଇ ଆଣି ଖୁସି ହେଲେ ଯେତିକି, ନିଜ କାର୍ଯ୍ୟ ପାଇଁ ଗର୍ବ ଅନୁଭବ କଲେ ସେତିକି । ଏ ଅଭିନବ ଦୃଶ୍ୟକୁ ଦେଖିବାରେ ସେ ବହୁତ ସମୟ କଟାଇଲେ ; ସେତେବେଳେ ଓ୍ୟାଙ୍ଗ୍ ସାଁ'ଙ୍କୁ କଥା ପଦେ କହିବାକୁ ବି ତାଙ୍କର ମରଜି ହେଲା ନାହିଁ ।

ନଈଟା କାଳ ନହୋଇଥିଲେ, ସବୁ ଠିକ୍‌ଠାକ୍ ଚାଲିଥାନ୍ତା । ନଈଟା କଲା ଅଡ଼ୁଆ । ଛୋଟ ନଈଟାଏ ତ ; ବସନ୍ତଋତୁର ବଢ଼ିପାଣି ଖସିଯିବାରେ ଏହା ହୋଇଗଲା ଗୋଟିଏ ଛୋଟ ନାଳିଆ; ପାଣିଧାରଟି ସରୁ ହୋଇ ବାଲିଚଡ଼ା ଭିତରେ ମନ୍ଦଗତିରେ ବହୁଥାଏ । ପମ୍ପ୍ ଗୁଡ଼ାକ, ବାଲିମିଶା ପାଣି ଘଡ଼ିଏ ଖଣ୍ଡେ ମହାକଷ୍ଟରେ ବାନ୍ତ କରି, ଭିତର କଳରେ ବାଲି ପଶିଯିବାରୁ, ବନ୍ଦ ହୋଇଗଲେ । ତଥାପି ସବୁ ଠିକ୍ ରହିଥାନ୍ତା ଯଦି ଜମି ବର୍ଷାପାଣିକୁ ଧରି ରଖିପାରିଥାନ୍ତା । ପୂର୍ବକାଳରେ ଛୋଟ ଛୋଟ କିଆରି-ଗୁଡ଼ିକ ଗୋଟିଏ ଗୋଟିଏ ପାଣିକୁଣ୍ଡି ପରି ରହିଥାନ୍ତି । ବଢ଼ି ଆସୁ ବା ନ ଆସୁ, ଯଥେଷ୍ଟ ବର୍ଷା ହେଉ ବା ନହେଉ, କିଆରିରେ ଯେଉଁ ପାଣି ମୁନ୍ଦିକ ଥାଏ, ତାକୁ ଓପର ମାଟି ତଳେ ଥିବା କାଦୁଅ ଚଟାଣ ଧରି ରଖିଥାଏ, ତଳ ଫସ୍‌ଫସିଆ ମାଟିରେ ଉବେଇ ଯିବାକୁ ଦିଏନାହିଁ । ଏଇ ପାଣି ମୁନ୍ଦିକ ଧାନ ଗଛ ବଢ଼ି ପାକଳ ହେବାଯାଏଁ ସମ୍ଭାଳିନିଏ । ଗ୍ରୀଷ୍ମଋତୁର ଶେଷଭାଗର ତିରେଟିଆ ବେଳ ଆସିଲେ ପାଣି ଆସ୍ତେ ଆସ୍ତେ ଶୁଖିଯାଏ ; ସେତେବେଳକୁ ଆଉ ଧାନର ପାଣି ଦରକାର ନଥାଏ । ସେତେବେଳକୁ ଧାନର ନାଡ଼ ମୋଟା ହୋଇ ଯାଇଥାଏ, ଚେର ବଳୁଆ ହୋଇଥାଏ ; ଫଳ ଫଳ ହଳଦିଆ ପଡ଼ିଯିବାଯାଏଁ ଧାନଗଛ ଆଉ ଝାଉଁଳେ ନାହିଁ ।

ଏବର୍ଷ ଧାନଗଛର ଚେର ତଳେ ଆଉ କାଦୁଅା ଚଟାଣ ନଥାଏ । ତଣ୍ଟେଟି ବେଳ ଆସିବାର ବହୁତପୂର୍ବରୁ ଜମି ଶୁଖିଗଲା ; ଯାହା ବା ବର୍ଷା ପଡ଼ିଲା ସେଥିରେ ଧାନଗଛ ମୂଳକୁ ପାଣି ଅଣ୍ଟିଲା ନାହିଁ । ଷଷ୍ଠ ମାସରେ ଯେଉଁ ମୁନ୍ଦାକ ବର୍ଷିଲା, ତାହାକୁ ସଙ୍ଗେ ସଙ୍ଗେ ଅନ୍ତର୍ଭୂମିର ଫସଫସିଆ ବାଲି ଟାଣି ନେଲା । ବନେ ଦ'ଵନ ନଈଟେଏ ଭଲକରି ପାଣି ମୁନ୍ଦେ ଆସିଲେ କ'ଣ ହେବ, ଧାନ କଅାଗ୍ମରେ ଯେତକ ପାଣି ରହିବାର କଥା, ସେତେ ପାଣି ରଖି ହେଲା ନାହିଁ । କଅାଗ୍ମରେ ଯେତକ ପାଣି ପଶିଲା, ସେତକ ଶୁଖିଲା ଜମିର ଫାଟବାଟେ ଉଭେଇଗଲା । ଧାନ ମଥା ମାରିବା ପୂର୍ବରୁ, ଗଛଗୁଡ଼ିକ ଶୁଖି ଝାଉଁଳି ପଡ଼ିଲେ ।

ଆଉ ଉପାୟ କ'ଣ ? ଗାଁଲୋକେ ତୁନି; ଖାଲି ମୁଣ୍ଡ ହଲଉଥାନ୍ତି । କମ୍ରେଡ୍ ଲି ନିଜର ପୂର୍ବକଥା ଓ ବଡ଼ପଣିଆ ପାସୋରି ଦେଇ ଗାଁଲୋକଙ୍କ ଉପରେ ଗର୍ଜି ଉଠିଲେ, "ଏମିତି ହେବ ବୋଲି ମୋତେ ଆଗରୁ ନକହିଲ କାହିଁକି ? ନିର୍ବୋଧ, ବିଶ୍ୱାସଘାତକ ଗୁଡ଼ାକ ! ସବୁ ଜାଣିଶୁଣି ତୁମେମାନେ ତୁନି ହୋଇ ରହିଲ ।"

ଏ କଥାର ଉତ୍ତର ଦେବାକୁ କେହି ତୁଣ୍ଡ ଫିଟାଇଲେ ନାହିଁ । କେହି ଜଣେ ହେଲେ କମ୍ରେଡ୍ ଲି'ଙ୍କର ମନେ ପକାଇ ଦେଲେ ନାହିଁ ଯେ, ଏପରି ଘଟିବ ବୋଲି ତାଙ୍କୁ ମୂଳରୁ କୁହା ହୋଇଥିଲା, କିନ୍ତୁ ସେ ଲୋକଙ୍କ କଥା ବିଶ୍ୱାସ କରିନଥିଲେ । ବିଦେଶର ଜମି ପାଇଁ ଗହିରିଆ ବୃକ୍ଷ ଯେତେ ଭଲ ହେଉ ପଛେ, ପିତୃପିତାମହଙ୍କ ଏ ମାଟି ତାହାର ଅନୁକୂଳ ନୁହେଁ ।

କମ୍ରେଡ୍ ଲି'ଙ୍କ ରାଗକୁ ସମସ୍ତେ ଡରୁଥାନ୍ତି, ତଥାପି ତାଙ୍କ ଦଶାରେ ସମସ୍ତଙ୍କର ସମବେଦନା ଜାତ ହେଉଥାଏ । ନିଜ ସାମର୍ଥ୍ୟ ତୁଳନାରେ ବିଚରା ପାତଳା ଟୋକାଟି ଖୁବ୍ ଖାଟିଛନ୍ତି, ପାରୁପର୍ଯ୍ୟନ୍ତ ମେହନତ କରିଛନ୍ତି ; ତାଙ୍କ ଓପରବାଲାଙ୍କ ନିର୍ଦ୍ଦେଶ ଅକ୍ଷରେ ଅକ୍ଷରେ ମାନିଛନ୍ତି— ସେତେବେଳେ ତାଙ୍କର ବିଶ୍ୱାସ ଥିଲା ଯେ, ଓପରବାଲା ସବୁ ବୁଝିଶୁଝି ବ୍ୟବସ୍ଥା ଦେଇଛନ୍ତି ! ଏପରି ସ୍ଥଳେ ଏ ବିଚରା ଟୋକାଟିର କୌଣସି ଦୋଷ ଧରିବାକୁ ଗାଁବାଲାଙ୍କର ମନ ହେଉ ନଥାଏ । ପ୍ରକୃତ ଦୋଷ ଯାହାଙ୍କର, ଯାହାଙ୍କ ଦୋଷ ଧରନ୍ତେ, ସେ ମହାପୁରୁଷମାନେ କାହିଁ

ଲୁଆଡେ ? ଏଠାରେ ତ ତାଙ୍କର ଦେଖାସାକ୍ଷାତ୍ ମିଳିବ ନାହିଁ । ଏଠାରେ ବଞ୍ଚିଛନ୍ତି କେବଳ କମ୍ରେଡ୍ ଲି ବଚର !

କ୍ରମେ ଦିନ ଆସିଲା, ଯେତେବେଳେ କମ୍ରେଡ୍ ଲି'ଙ୍କର ମଧ୍ୟ ପାଟି ବନ୍ଦ ହୋଇଗଲା । କହିବାକୁ ଆଉ ଅଛି ବା କ'ଣ ? ଭୁଲ୍ ତ ତାଙ୍କର । ଭୁଣ୍ଡ ଫିଟାଇ ନିଜର ଭୁଲ ସ୍ୱୀକାର କରିବେ ନାହିଁ ସିନା, ମନରେ ତ ନିଜର ଭୁଲ ମାନିବାକୁ ହେବ । କମ୍ରେଡ୍ ଲି ମନେ ମନେ ନିଜ ଭୁଲ ବୁଝିଲେଣି ବୋଲି ତାଙ୍କୁ ବୃଦ୍ଧ ଗାଁଲୋକଙ୍କୁ ବେଶ୍ ଜଣାପଡ଼ିଲା ।

ଶେଷରେ ଓସ୍ୟାଙ୍ଗ୍ ସାଁ ସାହସ କଲେ, କମ୍ରେଡ୍ ଲି'ଙ୍କ ପାଖକୁ ଯିବାକୁ । ଭୂଇଁ ଫାଟି, ଧାନ ଗଛଗୁଡ଼ିକ ଶୁଖିଲା କୁଟା ପରି ଭୂଇଁରେ ନଇଁ ପଡ଼ିବା ଯାଏଁ କମ୍ରେଡ୍ ଲିଙ୍କ ପାଖକୁ ଯାଇ କଥା ପଦେ କହିବାକୁ ଓସ୍ୟାଙ୍ଗ୍ ସାଁ । ବି ଭରସିପାରି ନଥିଲେ । ପୂର୍ବରେ ଥରେ ଯେପରି ଯାଇଥିଲେ, ସେଇପରି ଦିନେ ସନ୍ଧ୍ୟାବେଳେ, ସେ କମ୍ରେଡ୍ ଲି'ଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ବାହାରିଲେ । ସବୁଦିନ ପରି କମ୍ରେଡ୍ ଲି' ତାଙ୍କ ମାଝନ୍ତି ଟେବୁଲ ପାଖେ ବସି ରିପୋର୍ଟ ଲେଖୁଥାନ୍ତି । ଓସ୍ୟାଙ୍ଗ୍ ସାଁଙ୍କୁ ଦେଖି ସେ ଟେବୁଲରୁ ମୁହଁ ଟେକିଲେ ।

ସେ ପଚାରିଲେ, "କଣ ! କ'ଣ ?" ଆଜି ଆଉ ତାଙ୍କ ସ୍ୱରରେ ରୁକ୍ଷତା ନଥାଏ ।

ଓସ୍ୟାଙ୍ଗ୍ ସାଁ ପାଟିରେ ହାତ ଦେଇ କାସିଲେ, ଗଳା ସଫା କରି କହିଲେ, "ପୂର୍ବକାଳରେ ବି ଦଶ ବାରବର୍ଷରେ ଥରେ ଏଇ ପରି ଫସଲ ନଷ୍ଟ ହେଉଥିଲା । ପାଣି ଅଭାବ ଥାଉ ବା ନଥାଉ, ଯେ କୌଣସି କାରଣରୁ ଏହା ହୁଏ ।"

ବହୁ ସପ୍ତାହ ପରେ ସେ ଦିନ ପ୍ରଥମ କରି କମ୍ରେଡ୍ ଲି'ଙ୍କର ଆଗ୍ରହ ହେଲା ସ୍ୟାଙ୍କ କଥା ଶୁଣିବାକୁ ।

ସେ ପୁଣି ପଚାରିଲେ, "ଆଚ୍ଛା ?"

ଓସ୍ୟାଙ୍ଗ୍ ସାଁ କହି ଲାଗିଲେ, "ଏଭଳି ଅବସ୍ଥା ଘଟିଲେ, ଗାଁରେ କିଛି ଖାଇବାକୁ ମିଳେ ନାହିଁ । ଦକ୍ଷିଣର କୌଣସି ବଡ଼ ସହରକୁ ନଯାଇ ଗାଁରେ ରହିଲେ ଭୋକରେ ମରିବା ବ୍ୟତୀତ ଅନ୍ୟ ଗତି ନଥାଏ ।"

କମ୍ରେଡ଼୍ ଲି କହିଲେ, "ଏବେ ତ ଆଉ କୌଣସି ବଡ଼ ସହରକୁ ଯାଇ ଲାଭ ନାହିଁ । ସହର ଲୋକେ ଗାଁ ଗହଳର ଚାଷୀଙ୍କ ଉପରେ ନିର୍ଭର କରୁଛନ୍ତି, ଖାଦ୍ୟ ପାଇଁ । କୌଣସି କ୍ଷୁଦ୍ର ଅଞ୍ଚଳର କ୍ଷୁଦ୍ର ଗୋଷ୍ଠୀ ଆଜିକାଲି ଆଉ, ନିଜର କ୍ଷୁଦ୍ର ସ୍ୱାର୍ଥ ସାଧନ କରିବାକୁ ଚେଷ୍ଟା କରିବାର ଅବସର ନାହିଁ । ପ୍ରତ୍ୟେକଙ୍କୁ ସମଗ୍ର ଦେଶର ସ୍ୱାର୍ଥ ଚିନ୍ତା କରିବାକୁ ହେବ । ଦେଶରେ ଯଥେଷ୍ଟ ଖାଦ୍ୟଶସ୍ୟ ଉତ୍ପନ୍ନ ନହେଲେ ସମସ୍ତଙ୍କୁ ସମାନଭାବେ ଭୋକ ସହିବାକୁ ହେବ ।

ଓୟାଙ୍ଗ୍ ସାଁ ପଚାରିଲେ, "ଆଚ୍ଛା, ଅନ୍ୟ ଅଞ୍ଚଳମାନଙ୍କରେ ଫସଲ ଅବସ୍ଥା କ'ଣ ?"

କମ୍ରେଡ଼୍ ଲି ସଂକ୍ଷେପରେ ଉତ୍ତର ଦେଲେ, "ଭଲ ନୁହେଁ । ସେଠାରେ ସବୁ, ବିହନ ଖରାପ ପଡ଼ିଲା ।"

ଓୟାଙ୍ଗ୍ ସାଁ'ଙ୍କ ହୃଦୟରେ ଆଉ ଗୋଟାଏ ଆଘାତ ବାଜିଲା । ବିହନ ! ସତ ତ ! ଭିନ୍ନ ଭିନ୍ନ ଅଞ୍ଚଳରୁ ଭିନ୍ନ ଭିନ୍ନ ପ୍ରକାର ବିହନ ଆଣି ଗୋଟାଏ କେନ୍ଦ୍ରରେ ସାଇତା ହେବା ଯୋଗୁଁ, ସବୁ ମିଶାଗୋଳିଆ ହୋଇଯାଇଥିଲା । ତାଙ୍କ ବାପା ସବୁବେଳେ କହୁଥିଲେ, ଧାନ ମାଇକିନିଆଁ ଙ୍କ ପରି ମନୁଆ । ପ୍ରତିପ୍ରକାର ବିହନକୁ ବାଛିବୁଛି ଅଲଗାକରି ନରଖିଲେ, ଫସଲ କେଉଁଠି ହେବ ନାହିଁ ।

"ତେବେ ତ ଦେଶତମାମ ଲୋକେ ଦୁର୍ଭିକ୍ଷରେ ପଡ଼ିଲେ ?"

ଓୟାଙ୍ଗ୍ ସାଁ ଏ ପ୍ରଶ୍ନ ପଚାରିଲେ ସିନା, ଉତ୍ତରର ଆବଶ୍ୟକତା ନଥିଲା । ପ୍ରଶ୍ନର ଉତ୍ତର ତାଙ୍କୁ ଜଣାଥିଲା । କମ୍ରେଡ଼୍ ଲି ବି କିଛି ଉତ୍ତର ଦେଲେ ନାହିଁ ।

ଓୟାଙ୍ଗ୍ ସାଁ'ଙ୍କ ମନରେ ଗୋଟିଏ କଥା ଜାଗିଲା । କହିବେ କି ନାହିଁ । ଇତସ୍ତତଃ ହେଲେ । ସାହସ କରି କହିବେ ? ନକହିବେ ବା କାହିଁକି ? ଫସଲ ଯଦି ନଷ୍ଟ ହେଲା ତେବେ ଜୀବନର ବା ମୂଲ୍ୟ କ'ଣ ? କମ୍ରେଡ଼୍ ଲି ରିପୋର୍ଟ୍ ଲେଖାରେ ପୁଣି ଲାଗିଯାଇଥାନ୍ତି । ସତେ ଯେମିତି ପାଖରେ ଆଉ କେହି ନାହାଁନ୍ତି ! ଓୟାଙ୍ଗ୍ ସାଁ ପେଟ ଭିତରକୁ ନିଃଶ୍ୱାସ୍ଟାଣି ନେଇ ପ୍ରାଣମୂର୍ଚ୍ଛା ଭାବରେ ସେଇ ଗୋଟିକ କଥା କହିବାକୁ ବାହାରିଲେ; ଯାହା କହିବାର ନୁହେଁ, ସ୍ୱଚ୍ଛନ୍ଦରେ ଯାହା କହି ହୁଅନ୍ତା ନାହିଁ ।

ସେ କହିଲେ, "ପୂର୍ବକାଳରେ—"—ସ୍ୱର ଓଠଟିପାଖରେ ଅଟକି ଯାଉଥାଏ ।

କମ୍ରେଡ୍ ଲି ତାଙ୍କ ଆଡ଼କୁ ଚାହିଁଲେ; ସ୍ଥୂଳ ସ୍ଥୂଳ ଆଖିରେ ଘୃଣା ପୂରି ରହିଥାଏ । ସେ ଚିତ୍କାର କଲେ । "ପୂର୍ବକାଳ କଥା କହିବ ନାହିଁ ।"

କିନ୍ତୁ ଓୟାଙ୍ଗ୍ ସାଁ ଆଉ ମନର କଥା ରୋକି ପାରିଲେ ନାହିଁ; ସ୍ଥିରକଲେ, ନିଶ୍ଚୟ କହିବେ । ବଡ଼ ପାଟିରେ ଗଡ଼ଗଡ଼ କରି ସେ କହି ପକାଇଲେ, "ପୂର୍ବକାଳରେ, ଆମର ଖାଦ୍ୟ ଶସ୍ୟ ନିଅଣ୍ଟ ପଡ଼ିଲେ, ଆମେରିକାନ୍‌ମାନେ ଆମ ଦେଶକୁ ପଠାଉଥିଲେ, ଗହମ, ଅନ୍ୟାନ୍ୟ ଖାଦ୍ୟଶସ୍ୟ ଓ—"

ଆଉ କହି ହେଲା ନାହିଁ । ସେତେବେଳକୁ କମ୍ରେଡ୍ ଲି ତାଙ୍କ ଲୁଚିତା ଚମଡ଼ା ଗୋଟିଏ ଅସ୍ତ୍ର ବାହାର କରି ସାରିଲେଣି, ହାତର ମଣିବନ୍ଧରୁ ଆଙ୍ଗୁଠି ଅଗ ଯାଏଁ ଲମ୍ବ ହେବ ବା ଆହୁରି ସ୍ଥୂଳ । ଅସ୍ତ୍ରଟା ଓୟାଙ୍ଗ୍ ସାଁଙ୍କ ଆଡ଼କୁ ଦେଖାଇ ସେ ଘୋଡ଼ାଟିପିବାକୁ ଘୋଡ଼ା ଉପରେ ବଙ୍କିଆଙ୍ଗୁଠି ରଖିଦେଲେ । ଓୟାଙ୍ଗ୍ ସାଁ ଭୟରେ କାଠ ହୋଇଗଲେ, ଘୁଞ୍ଚିବାକୁ ସୁ ନଥାଏ । କେବଳ ଏତିକି ଭାବୁଥାନ୍ତି, ଏଇ ତେବେ ମୃତ୍ୟୁର ମୁହୂର୍ତ୍ତ !

ତା' ପରେ ! ହଠାତ୍ କମ୍ରେଡ୍ ଲି ନିଜ ଡାହାଣ ହାତ ତଳକୁ ଖସାଇଦେଲେ; ଠିକ୍ ଯେପରି ହଠାତ୍ ହାତ ଉଠାଇ ଅସ୍ତ୍ର ଟେକି ଥିଲେ, ସେହିପରି ।

ଦାନ୍ତ ଚିପି ସେ କହିଲେ, "ନାଃ, ତୁମକୁ ମାରିବ କିଆଁ ?" ଏତିକି କହି ସେ ନିଜ ମୁଣ୍ଡର ଡାହାଣ ଥାନମୁଣ୍ଡାରେ ରିଭଲ୍‌ଭର୍‌ର ମୁହଁ ନେଇ ରଖିଲେ ।

ସେ ଘୋଡ଼ା ଟିପିବା ପୂର୍ବରୁ ଓୟାଙ୍ଗ୍ ସାଁ ଆଗକୁ କୁଦି ପଡ଼ିଲେ – ଭାବି ଚିନ୍ତି ନୁହେଁ, ଯୁଗଯୁଗର ସ୍ୱାଭାବିକ ପ୍ରେରଣାରେ । ନଳରୁ ଗୁଳି ଓ ନିଆଁ ଚମକ ଆସିବା ବେଳକୁ ସେ ରିଭଲଭର୍‌ଟା କମ୍ରେଡ୍ ଲି'ଙ୍କ ହାତରୁ ଛଡ଼ାଇ ଆଣି ସାରିଥାନ୍ତି ।

ବନ୍ଧୁକର ଆବାଜ ସାଙ୍ଗେ ସାଙ୍ଗେ ତାଙ୍କ ମୁହଁରୁ ଆବାଜ ବାହାରିଲା, "ତୁମେ ନିଜର ପ୍ରାଣ ବା କାହିଁକି ନେବ ? ତୁମେ ବି ତ ଏହି ଚିନ୍‌ଦେଶର ସନ୍ତାନ !"

ରିଭଲ୍‌ଭର୍‌ଟି ଧଡ଼ କନ ତଳେ ପଡ଼ିଲା— ଦୁଇଜଣଯାକ ମୁହାଁ-ମୁହିଁ ଠିଆ ହୋଇ ପରସ୍ପରର ଆଖିକୁ ଚାହିଁ ରହିଥାନ୍ତି ।

— — —

# ଗୋଟିଏ ଖ୍ରୀସ୍‌ମାସ୍‌ର କଥା

ସେ ଖ୍ରୀସ୍‌ମାସ ବୃକ୍ଷରେ ସବାଶେଷ ଅଳଙ୍କାରଟି ଝୁଲାଇଦେଲେ । ଏଇଟି ସେଇ ଗ୍ଲେଃ ରୂପା ତଆର ବୀଣାଟି, ଯାହାକୁ ଛଅ ବର୍ଷ ପୂର୍ବେ ଏଇ ଖ୍ରୀସ୍‌ମାସ ଦିନ ତାଙ୍କୁ ତାଙ୍କ ସ୍ୱାମୀ ସୀନ୍ ଉପହାର ଦେଇଥିଲେ । ସେତେବେଳେ ସେ ଦୁହେଁ ବିବାହପର ମଧୁମାସଟି ଆୟାର୍‌ଲ୍ୟାଣ୍ଡରେ କଟାଉଥାନ୍ତି ।

ସେ ଦିନ ତାଙ୍କ ସ୍ୱାମୀ ତାଙ୍କୁ କହିଥିଲେ, "ମିସେସ୍ ଓ'ମ୍ୟାଲି, ଆୟାର୍‌ଲଣ୍ଡ୍‌ର ଜଣେ ସୁସନ୍ତାନଠାରୁ ବୀଣାଟି ଉପହାର ଗ୍ରହଣ କରିବ ? ବସ୍ତୁଟିତ, ଏଇଟି ସୁନାରେ ତିଆରି ହୋଇଥାନ୍ତା, ଏଥିରେ ମଝିରେ ମଝିରେ ହୀରା ବସିଥାନ୍ତା ତେବେ ଯାଇ ଏହା ତୁମର ଯୋଗ୍ୟ ହୋଇଥାନ୍ତା, ପ୍ରିୟେ !—ଯେତେ ହେଲେ ଏଇଟି ଗୋଟିଏ ବୀଣା ହୋଇଥିବାରୁ ମୁଁ ଆଶା କରୁଛି, ତୁମେ ଏହା'କୁ ଅବଜ୍ଞା କରିବ ନାହିଁ । ଏହାକୁ ବଜେଇଲେ ବି ବାଜିବ ।"

ଏହା କହି ସୀନ୍ ଏହି ଗ୍ଲେଃ ଖେଳନା-ବୀଣାଟିର ଗ୍ଲେଃ ଗ୍ଲେଃ ତାରରେ ଟିପ ମାରିଲେ—ଶୁଣାଗଲା, ବୀଣାର କ୍ଷୀଣ କିନ୍ତୁ ମଧୁର ସଙ୍ଗୀତ । ଆଜି ସେଇ ଦିନର ସ୍ମୃତି ମନେ ପଡ଼ିବାରୁ ସେ ବୀଣାର କ୍ଷୁଦ୍ରତନ୍ତ୍ରୀରେ ନିଜର ଟିପ ଚଳାଇଲେ; ସେଇ ମଧୁର ଟୁଂଟାଂ ଶବ୍ଦ ବାହାରିଲା—ଠିକ୍ ଯେପରି ଗୋଟିଏ ସତବୀଣାର ଶବ୍ଦ ଦୂରରୁ ଭାସି ଆସୁଛି ।......ଏତିକି-ବେଳେ ପାଖ କୋଠରୀରୁ, କୁକୁର ଆସ୍ତେ ଆସ୍ତେ ଗାଉଁଗାଉଁ ହେବାର ଶୁଭିଲା ।

ସେ ପାଟି କଲେ, "ଡେଭି ! ପୁଣି ମିମିର ଛୁଆକୁ ତୁ ନେଇଛୁ ପରା ?"

"ନା, ଏଇଟା ତ ମୋ' କୁକୁର ଛୁଆ ।"

ଏହା କହୁ କହୁ ତାଙ୍କ ପାଖରେ ଆସି ପହଞ୍ଚିଲା ଡେଭି—ତାଙ୍କ ପାଞ୍ଚବର୍ଷର ପୁଅ—ତା' ବାପା ସୀନ୍‌ଙ୍କର ଅବିକଳ ପ୍ରତିରୂପ । ସେ ଦୁଇ ହାତ ମୁଣ୍ଡ ଉପରକୁ ଯେତେ ଟେକି ହେବ, ଟେକିଥାଏ ଓ ଦୁଇ ହାତରେ ଝିଙ୍କଟ ମଟକଟ କରି ଧରିଥାଏ, ଗୋଟାଏ ପୁରୁଣା ଖେଳନା, ଛିଣ୍ଡାକନାରେ ତିଆରି ଗୋଟିଏ କୁକୁରଛୁଆ । ପ୍ରଥମେ ଖେଳନାଟି ଦିଶୁଥିଲା ଧୋବ, ଏବେ କୋଚଟ୍ଟ ହୋଇଗଲାଣି । ତିନିବର୍ଷ ପୂର୍ବେ ତାଙ୍କର ଜନ୍ମଦିନର ଉପହାର ସ୍ୱରୂପ, ତାଙ୍କୁ ଯେଉଁ ଫ୍ରାନ୍‌ସ ଦେଶୀୟ ପୁଡ଼ଲ୍ କୁକୁରଟି ସୀନ୍ ଦେଇଥିଲେ, ସେଇ ମିମି, ବାଘୁଣୀ ପରି, ଛିଣ୍ଡାକନାର କୁକୁର ପିଲାଟା ଛଡ଼ାଇ ନେବା ପାଇଁ ଡେଭିର ଚାରିପଟେ ଉହୁଙ୍କୁଥାଏ ଓ ବିକଳ ହୋଇ କୁଁ କୁଁ ଶବ୍ଦ କରୁଥାଏ ।

ସେ ଡେଭି ହାତରୁ ଖେଳନାଟା ଛଡ଼ାଇ ଆଣିଲେ ଓ ଭର୍ତ୍ସନା କରି କହିଲେ, "ତୋ'ର ତ ଏତେ ଖେଳନା ଅଛି, ଏଇ ପୁରୁଣା କୁକୁରଛୁଆଟା ମିମିକୁ ନ ଦେଉଛୁ କାହିଁକି ?"

ଡେଭି ସକେଇଲା—"ସେ୍ୱ ତ ମୋ'ର—ମୋ'ର—ମୁଁ ମୋ ଖଟରେ ସ୍ୱାକୁ ମୋ କୋଡ଼ରେ ଶୁଆଇବି ।"

"ଛି, ଏମିତି ନିବୁଦ୍ଧିଆ ହୁଅନ୍ତୁ ? ଏବେ ତ କେତେ ମାସ ହେଲା ଏ କୁକୁର ଛୁଆଟାକୁ ପାଖରେ ଶୁଆଇ ନାହୁଁ, ଆଜି କାହିଁକି ଶୁଆଇବୁ ? ··ଦେ, ଦେ, ମିମି ଏଇଟା ନେଉ ।"

ଏହା କହି ସେ ଖେଳନାଟା ମିମି ଆଡ଼କୁ ଫୋପାଡ଼ି ଦେଲେ ଓ ଡେଭିକୁ ଟାଣିଆଣି ସୋଫା ଉପରେ ନିଜ ପାଖରେ ବସାଇ ତା ମୁଣ୍ଡର ବାଳ ସାଉଁଳିଲେ । ଡେଭିର ଆଖି ଉପରେ ନଜର ପଡ଼ିଲା—ଠିକ୍ ସୀନ୍‌ଙ୍କ ନିଜ ଆଖି ପାଇଛି; ତାଙ୍କର କଳା ଭଅଁର ବାଳ ପରି ସ୍ୱାର ବାଳ—ହଁ, ମୁହଁଟି ବି ସେଇ ସୀନ୍‌ଙ୍କ ଚେଜାସ୍ଥାନ୍, ଅମାନିଆ ମୁହଁ ପରି ।

ସେ ପୁଅକୁ ପୁଣି ବୁଝାଇ କହିଲେ, "ଏ କୁକୁରଛୁଆଟା ବହୁତ ଦିନର ଖେଳନା, କେଡ଼େ କୋଚଟ୍ଟ ହେଲାଣି । ଆଜି ରାତିରେ ସ୍ୟାଣ୍ଟା କ୍ଲଜ୍ ତୋ' ପାଇଁ କେତେ ନୂଆ ନୂଆ ଜିନିଷ ଆଣିବେ !"

ଆଶ୍ଚର୍ଯ୍ୟ କଥା, ସାନ୍ତ୍ୱନା ନଦେଇ, ଡେଭି ତାଙ୍କ ଗ୍ରୀବରେ ମୁହଁ ଗୁଞ୍ଜି ହଠାତ୍ ଫେଁ'କନ କାନ୍ଦିବାକୁ ଆରମ୍ଭ କଲା । ସେ ତାକୁ ଟିକିଏ ଆଡେଇ ଦେଇ ତା' ମୁହଁକୁ ତାଙ୍କ ସାମନାରେ ଧରି କହିଲେ, "ଛି, ଡେଭି ! କାନ୍ଦୁଛୁ ? ଆଜ ପର୍ବ ଦିନରେ କାନ୍ଦନ୍ତି ? ଏତେ ପିଲାଟିଏ ହେଲୁଣି, ଲଜ ମାଡୁନାହିଁ, କାନ୍ଦୁଛୁ ?"

"ମମି, ମୋ କୁକୁର ଛୁଆକୁ ଏତେ ସୁଖ ପାଇବା ମୁଁ ଚାହେ ନାହିଁ ।"

ଏକଥାର ଉତ୍ତର କ'ଣ ଦେବେ, ତାଙ୍କୁ ଜଣା ପାଉନଥାଏ – ଠିକ୍ ସେଇ ମୁହୂର୍ତ୍ତରେ, ତାଙ୍କୁ ଡେଭିକୁ କିଛି କହିବାକୁ ସମୟ ନଦେଇ ଟେଲିଫୋନ୍ ଘଣ୍ଟି ବାଜିଲା ଓ ସେ ଟେଲିଫୋନ୍‌ର ଚୁଙ୍ଗା କାନ ପାଖକୁ ନେବାମାତ୍ରେ ଶୁଣିଲେ, ସୀନ୍‌ଙ୍କର କଣ୍ଠ ।

"ହେଲୋ, ସିନ୍ଥିଆ ! ମୁଁ ସୀନ୍ କହୁଛି ।"

ସ୍ୱରରେ ଆଦରର କୌଣସି ସଙ୍କେତ ନଦେଇ ଉଦାସୀନ ଭାବେ ସେ କହିଲେ, "ପରିଚୟ ଦେବାର ପ୍ରୟୋଜନ ନାହିଁ । ତୁମ ସ୍ୱର ଏପର୍ଯ୍ୟନ୍ତ ମୋର ମନେ ଅଛି ।"

ଆଉ ମୁହୂର୍ତ୍ତେ ସୀନ୍‌ଙ୍କର ହସ ଶୁଣାଗଲା – ଏ ହସ ମଧ୍ୟ ତାଙ୍କର ପାସୋର ଯାଇନାହିଁ – ସେଇ ଉଚ୍ଛୁଳା ଉଦ୍ଦାମ ହସ ।

ହସ ସାଙ୍ଗେ ଶୁଣାଗଲା, "ଆଜ ଖ୍ରୀସ୍‌ମାସର ପୂର୍ବରାତ୍ରି, କେତେ ଆନନ୍ଦ ଉତ୍ସବର ସ୍ମୃତି ଜାଗୁଛି । ବସିରହିଛି, ମିନଟ୍ କେତୋଟା ପାଇଁ ମାତ୍ର ଘରକୁ ଟିକିଏ ଯାନ୍ତି । ଡେଭି ପାଇଁ ଗୋଟିଏ ଉପହାର କିଣିଛି, ତାହା ତାକୁ ଦେଇ ଆସିବା ଏକମାତ୍ର ଉଦ୍ଦେଶ୍ୟ ।"

ଏତିକ କହି ସୀନ୍ ଅପେକ୍ଷା କଲେ; ସ୍ତ୍ରୀଙ୍କଠାରୁ କୌଣସି ଉତ୍ତର ନମିଳିବାରୁ ତରତର ହୋଇ କହିଲେ, "ମୁଁ ନିର୍ଭର ଜବାବ୍ ଦେଉଛି ଯେ, ରାତିରେ ସେଠାରେ ରହିବି ନାହିଁ ।"

ସେଇ ମୁହୂର୍ତ୍ତରେ ସିନ୍ଥିଆଙ୍କ ଆଖି ପଡ଼ିଲା ଡେଭିର ମୁହଁ ଉପରେ, ତା ମୁହଁ ଆଲୁଅ ହୋଇଯାଇଥାଏ, ସତେ ଯେପରି ପେଟ ଭିତରେ ଜଳୁଥିବା ଦୀପର ଆଲୁଅ ମୁହଁରେ ଫୁଟି ଦିଶୁଥାଏ ।

ଆଉ କିଛି ବଢ଼ାଇ ନକରି ଟେଲିଫୋନ୍‌ରେ ଜବାବ୍ ଦେଲେ, "ହଁଉ ଆସ, କିନ୍ତୁ ଡେରି ଏଇ ସାଙ୍ଗେ ସାଙ୍ଗେ ଶୋଇବାକୁ ଯାଉଛୁ ।"

ସୀନ୍ ସେ ମୁଣ୍ଡ ହଲେଇଲେ, ତା'କୁ ଶୋଇବାକୁ ପ୍ରସ୍ତୁତ କରିଦଅ । ଗାଧୋଇ ଦେଇ, ଗରମ ପାଇଜାମା ପିନ୍ଧାଇ ଦେଇଥାଅ । ମୁଁ ଫେରିବାମାତ୍ରେ ତା'କୁ ଶୁଆଇଦେବ । ଯେତେ ଡେରି ହେଲେ ବି, ତା ଶୋଇବାକୁ ଅଧଘଣ୍ଟାରୁ ବେଶୀ ଡେରି ହେବ ନାହିଁ ।"

ସେ ଏକଥାର କୌଣସି ଉତ୍ତର ଦେବା ପୂର୍ବରୁ, ତେଣେ ସୀନ୍ ଟେଲିଫୋନ ଚୁଙ୍ଗା ରଖିଦେବାର ସିନ୍ଥିଆ ଶୁଣିଲେ—ଏ ବି ସୀନ୍‌ଙ୍କର ଗୋଟାଏ ଫିକର୍—ଯେ କୌଣସି କଥାବାର୍ତ୍ତାରେ ଶେଷ ପଦଟା ତାଙ୍କର ହେବାର ଦରକାର । ଏ ଟେଲିଫୋନ୍ କରିବାଟା ବି ଗୋଟାଏ ଗୁଳିକ । ଗଲା ଅକ୍ଟୋବର୍ ମାସରେ ଯେତେବେଳେ ତାଙ୍କ ବିବାହ ହଜିବ ବୋଲି ସ୍ଥିର ହେଲା ଓ ସେ ତାଙ୍କର ଶେଷ ସିଦ୍ଧାନ୍ତ ଶୁଣାଇଦେଲେ, ସେତେବେଳେ ସୀନ୍ ତାଙ୍କ ନଇଁଥିବା ମୁଣ୍ଡ ଉପରେ ଧୀରଭାବରେ ଚୁମ୍ବନଟିଏ ଦେଲେ ଓ ପଦେ ମାତ୍ର କଥା ନକହି, ଘର ଛାଡ଼ି ବାହାରିଗଲେ । କିନ୍ତୁ ଦଶ ମିନିଟ୍ ପରେ, ଯେତେବେଳେ ସେ ଅତି ବିକଳ ହୋଇ କାନ୍ଦୁଥାନ୍ତି । ସେତେବେଳେ ଟେଲିଫୋନ୍ ଘଣ୍ଟି ବାଜିଲା ଓ ସୀନ୍ ଅନର୍ଗଳ କଥା ଶୁଣାଇବାରେ ଲାଗିଲେ :

"ପ୍ରିୟତମେ ! ସିନ୍ଥିଆ ! ତୁମକୁ ମୁଁ ଆଦୌ ଦୋଷ ଦେଉନାହିଁ—ଟିକିଏ ବି ନୁହେଁ । ମୁଁ ଯଦି ଆଜି ତୁମ ସ୍ଥାନରେ ଥା'ନ୍ତି, ମୁଁ ବି ସେଇଆ କରନ୍ତି । ମୁଁ ତ ଅଳସୁଆ ଲୋକଟାଏ, ଏକାବେଳକେ ଅକାମୀ । ଯୁଆ ବାଦ୍ ଆଉ ଯାହା ଯାହା ତୁମେ ମୋତେ କହିଲ, ସେ ସବୁ ମଧ୍ୟ ନିର୍ଘଟ ସତ । କେବଳ ଗୋଟିଏ କଥା ସତ ନୁହେଁ । ଏ କଥା ସତ ଯେ, ମୋର ସ୍ୱେଚ୍ଛାଚାରୀ ଢଙ୍ଗ ଯୋଗୁଁ ମୁଁ ମୋତେ ମିଳିଥିବା କାମରେ ମୁହଁ ମାଡ଼ି ରହି ନପାରି, ବର୍ଷକ ଭିତରେ ତିନି ତିନିଟା କାମ ଛାଡ଼ିଲି । କିନ୍ତୁ ମୁଁ ଆଉ କୌଣସି ସ୍ତ୍ରୀ ଲୋକକୁ ଥରେ ହେଲେ ଚୁମା ଦେଇନାହିଁ । ଏ କଥାଟା ଯାହା ତୁମେ କହିଲ, ତାହା ସତ୍ୟ ନୁହେଁ । ଏକଥା ସ୍ୱୀକାର କରୁଛି ଯେ, ବେଳେ ବେଳେ ଜଣେ ଜଣେ ଯୁବତୀଙ୍କ

ସ୍ୱରଧ୍ୱନିରେ ପ୍ରେମର ଆହ୍ୱାନ ପାଇ ମୋର ମିନିଟିଏ ଖଣ୍ଡେ ମନ କମ୍ପିତ କମ୍ପିତ ହୋଇଯାଏ—ତା'ଙ୍କୁ ଧରି ପକାଇ ଚୁମାଟିଏ ଦେବାକୁ ଆକାଂକ୍ଷା ଜାଗି ଉଠେ । ସେ ଦୁର୍ବଳତା ମୋର ହୋଇଛି; କିନ୍ତୁ ସେଇ ଆକାଂକ୍ଷା-ଟିକକ ମାତ୍ର । ଶପଥ କରି କହୁଛି, ଏଥିରୁ ଅଧିକ କେବେ କିଛି ହୋଇ ନାହିଁ । ତୁମଠାରେ ମୁଁ ବିଶ୍ୱାସଘାତକତା କରି ନାହିଁ । କାରଣ, ମୋ'ର ପ୍ରେମର ଆସ୍ପଦ ଏକୁଟିଆ ତୁମେ ହିଁ—"

ସିନ୍ଥିଆ ଏ କଥା-ସ୍ରୋତରେ ବାଧା ଦେଇ କହିଲେ, "ସୀନ୍‌, ମୁଁ ଖୁବ୍‌ ଚେଷ୍ଟା କରିଛି, କିନ୍ତୁ—"

ତାଙ୍କ କଥାରେ ବାଧା ଦେଇ ସୀନ୍‌ ପୁଣି କହି ଚାଲିଥିଲେ, "ନିଶ୍ଚୟ, ନିଶ୍ଚୟ, ତୁମେ ଖୁବ୍‌ ଚେଷ୍ଟା କରିଛ, କିନ୍ତୁ ମୁଁ ସବୁବେଳେ ତୁମକୁ ନିରାଶ କରିଛି । ପ୍ରକୃତରେ ମୋର ବଦ୍‌ପ୍ରକୃତି ମୋ ନିଜର ସଦ୍‌ବୁଦ୍ଧିକୁ ମଧ୍ୟ ନିରାଶ କରିଛି । ତୁମେ ଠିକ୍‌ ବିଚାର କରିଛ, ଆମେ ଦୁହେଁ, ଅଳ୍ପ କିଛିଦିନ ପାଇଁ ହେଲେ ମଧ୍ୟ, ଛାଡ଼ବାଡ଼ ହୋଇଯିବା ଉଚିତ । ମୁଁ ନିଜେ ବିଚାର କରି ମଧ୍ୟ ଏହି ସିଦ୍ଧାନ୍ତ ଠିକ୍‌ ବୋଲି ବୁଝିଥିଲି । ମାନିବାକୁ ହେବ, ଅନେକ ଦିନ ହେଲା ଆମ ଦୁହିଙ୍କ ସଂସାର ଭଲରେ ଚାଲିପାରି ନାହିଁ । ନାଇଁ ? ଅବଶ୍ୟ ଯେତେବେଳେ ଘରଖଣ୍ଡିକ କିଣିଲେ, ସେତେବେଳେ ଭାବିଥିଲି—"

ଏଇଠାରେ ସୀନ୍‌ଙ୍କର ସ୍ୱର ରୁଦ୍ଧ ହୋଇଗଲା, ସିନ୍ଥିଆଙ୍କର ଆଖି ମଧ୍ୟ ଲୁହରେ ପୂର୍ଣ୍ଣ ହୋଇଗଲା । ଏଇ ଘରଟି, ଏଇ ସୁନ୍ଦର ଘରଟି—ଡେଭିଡ୍‌ ଜନ୍ମ ହେବା ଦିନୁଁ ଏଇ ଗୋଟିକ ପାଇଁ ସେଦୁହେଁ କେତେ ସପନ ନ ଦେଖିଛନ୍ତି ? ଏଇ ଗୋଟିଏ ପାଇଲେ କାଳ କାଳକୁ ଦୁହେଁ ମହାସୁଖରେ ରହିବେ ବୋଲି ସେତେବେଳେ କଳ୍ପନା କରିଥିଲେ । କିନ୍ତୁ ଆଜ ଏ ଘରଟି ହୋଇଛି ସଂସାରରେ ସବୁଠାରୁ ନିଘୁଣିଆ ଜାଗା ! ସୀନ୍‌ କହିଲେ, 'ଯେତେବେଳେ ଏ ଘର କିଣିଲେ ?' କିଣିଲା କିଏ ? ଏ ଘରତ ସେମାନେ କିଣି ନାହାନ୍ତି—ଏବେ ତ ମହାଜନ ପାଖେ ଆବଦ୍ଧ ହୋଇ ରହିଛି । ଘର ଯେତିକି, ବନ୍ଧକୀ ଟଙ୍କାର ପରିମାଣ ସେତିକି । ଏ ସମସ୍ତ ଦାୟିତ୍ୱ ସତ୍ତ୍ୱେ ସେ, ସୀନ୍‌ଙ୍କୁ ସହି ରହିଯିବାକୁ ମନେଇପାରିଲେ ନାହିଁ । ଡେଭିଡ଼ଟି ତ ପୁଣି କୌଣସିମତେ ଶାନ୍ତିପୂର୍ଣ୍ଣ ପରିବେଶରେ ବଢ଼ିବ ! ଆଜି ସେ ସୀନ୍‌ଙ୍କୁ କ୍ଷମା

କରି ପାରିବେ ନାହିଁ, ତାଙ୍କ କଥାରେ ଭଲ ଯିବେ ନାହିଁ । କିନ୍ତୁ ଏସବୁ କଥା ସେ କହିବାକୁ ଉଆର ହେଲାବେଳକୁ ତେଣେ ସୀନ୍ ଟେଲିଫୋନ୍ ଥୋଇଦେଇ ସାରିଥାନ୍ତି ।—

ତାଙ୍କର ଚିନ୍ତାସ୍ରୋତରେ ବାଧା ଦେଇ ଏତିକବେଳେ ଡେଭି କହିଲା—

"ବାପା ଆସିବେ କି, ବୋଉ !"

ସିନ୍ଥିଆ ପୁଅର ଉତ୍ସୁକ ମୁହଁକୁ ଚାହିଁଲେ; କହିଲେ, "ହଁ; କିନ୍ତୁ ତାଙ୍କ ଆସିବା ପୂର୍ବରୁ ତୁ ଗାଧୋଇ ସାରିବା ଦରକାର । ଚାଲ, ଚାଲ । ସେ କେବଳି ବେଳ ରହିପାରିବେ ନାହିଁ ।"

ଡେଭି ନାଚି ନାଚି ତାଙ୍କ ଆଗରେ ଗାଧୁଆ ଘରକୁ ଧାଇଁଗଲା । ସୀନ୍‌ଙ୍କ ବିରୁଦ୍ଧରେ ନିଜ ମନକୁ ଯେତେ କାଠ କଲେ ମଧ୍ୟ, ସିନ୍ଥିଆ ନିଜ ହୃଦୟରେ ଗୋଟାଏ ଅସ୍ପଷ୍ଟ ଉଦ୍ଦୀପନା ଅନୁଭବ କଲେ । ସୀନ୍ ଆସିବେ ! ସେ ଆସନ୍ତୁ ବୋଲି ମନରେ ଇଚ୍ଛା ହେଉଛି ଜାଣି ଭୟ ବି ହେଉଚି । ସୀନ୍ ତାଙ୍କଠାରୁ ଦୂରରେ ଥିଲାବେଳେ ସିନା ତାଙ୍କ ବିଷୟରେ ସେ ଉଦାସୀନ ରହିପାରୁଥିଲେ । କିନ୍ତୁ ସେ ଆସି ଆଗରେ ଠିଆ ହୋଇଯିବା ମାତ୍ରେ ତ ତାଙ୍କ ହସ, ତାଙ୍କ ସ୍ୱର, ତାଙ୍କ ମନଭୁଲାଣିଆ ଢଙ୍ଗଢଙ୍ଗର ଯାଦୁକରୀ ପ୍ରଭାବ ପଡ଼ିବ । ତାଙ୍କ ବିରହ ସିନ୍ଥିଆଙ୍କୁ ଖୁବ୍ ବାଧୁଛି— କେତେ ବାଧୁଛି କଥାରେ କହି ହେବ ନାହିଁ । କିନ୍ତୁ ସିନ୍ଥିଆ ମନକୁ ଖୁବ୍ ଟାଣ କରିଛନ୍ତି । ପୂର୍ବେ ଯେଉଁ ଚାକିରି କରୁଥିଲେ—ୟୁନାଇଟେଡ଼୍ ଷ୍ଟୀଲ୍ କମ୍ପାନୀର ପରିଚାଳକ ମିଷ୍ଟର୍ ରବିନ୍‌ସ୍‌ଙ୍କର ପରିଚାଳନା ସହକାରୀ— ସେଥିରେ ପୁଣି ବାହେଲ୍ ହୋଇଛନ୍ତି ; ଘର ବାବଦରେ ବାକି ଥିବା ଟଙ୍କାର ଆଗାମୀ କିସ୍ତି ପାଇଁ କିଛି କିଛି ସଞ୍ଚି ରଖୁଛନ୍ତି ।

ଏ ଭିତରେ ମାଧ ସୀନ୍ କରୁଛନ୍ତି କ'ଣ, ଚଳୁଛନ୍ତି କେମିତି ? ତାଙ୍କର ଚାକିରି ନେଇଛି କିଏ ? ଅତି ବେଖାପେଲିଆ ଲୋକ, ସେ ତ ନିଜ କଥା ନିଜେ ବୁଝି ପାରୁନଥିବେ—ଏତେ ଅସାବଧାନ ଯେ, ଥଣ୍ଡା ଦିନରେ ଉପର କୋଟ ଖଣ୍ଡେ ଲଗାଇବାକୁ ବି ମନେ ପକାନ୍ତି ନାହିଁ ; ଖାଇବାକୁ ମନେ ପଡ଼େ ନାହିଁ ; ଘରକୁ ଯେତେବେଳେ ଫେରିବେ ବୋଲି କହିଥାନ୍ତି, ତାହା ପାସୋରି ଦିଅନ୍ତି । ବଡ଼ ଯନ୍ତ୍ରଣା ଦିଏ ତାଙ୍କର ଏହି ଅମନୋଯୋଗିତା ।

ଖାଇବାକୁ କେତେବେଳେ ଆସିବେ, ବାହାରେ ଖାଇଲେ ବା ଶୋଇବାକୁ କେତେବେଳେ ଘରକୁ ଫେରିବେ ଏକଥା ସିନ୍ଥିଆ କେବେହେଁ ନିଶ୍ଚିତଭାବେ ଜାଣି ପାରନ୍ତି ନାହିଁ । ଯେତେବେଳେ ଫେରନ୍ତି ସେତେବେଳେ ସେ ଟିକିଏ ବିରକ୍ତ ହେଲେ, ତାଙ୍କର କେତେ ନଷ୍ଟ ହୁଏ ହାଣି ! ସତେ ଯିମିତି, ଏ ଲୋକ କାହିଁକି ବଗିଚ୍ଛୁଛି କିଛି ଜାଣି ପାରୁନାହାନ୍ତି !

ସେ ଗାଧୁଆ ଟବ୍‌ଟି ବାହାର କରି ପାଣି ପାଇପ୍ ଫିଟାଇଦେଲେ ଓ ଡେଭିର ପାଇଜାମା ଧଇଲେ । ତା'କୁ ଗୁଡ଼, ଯେଉଁ ନୂଆ ପାଇଜାମାଟି ଆଜ ଖ୍ରୀସ୍‌ମାସ୍ ଗଛ ମୂଳରେ ରଖିବେ ବୋଲି ଭାବୁଥିଲେ ତାକୁ ଇ ପିନ୍ଧାଇବେ ବୋଲି ସ୍ଥିର କଲେ—ହଁ, ତା' ସାଙ୍ଗକୁ ନୂଆକରି ଆଣିଥିବା ଗାଧୁଆ କୁରୁତାଟି ଓ ସେଇପରି ନାଲିଆ ରଙ୍ଗର ଚଟି ହଳକ ମଧ୍ୟ ପିନ୍ଧାଇବାକୁ ବସିଲେ ।

—ଡେଭିକୁ କହିଲେ, "ଖ୍ରୀସ୍‌ମାସ୍ ପୂର୍ବରୁ ଏ ଉପହାରଗୁଡ଼ିକ ତୋ'ତେ ମୁଁ ଦେଇ ଦେଉଛି, ଆଜ ଏଗୁଡ଼ାକୁ ପିନ୍ଧିଲେ ସୁନ୍ଦର ଦିଶିବୁ ବୋଲି ।"

ଡେଭି ପଚାରିଲା, "ଏଗୁଡ଼ାକୁ ଖ୍ରୀସ୍‌ମାସ୍ ପାଇଁ ଦେଉଛୁ ନା ବାପା ଦେଖିବେ ବୋଲି ?"

ଏତେବେଳକୁ ଡେଭି ଗାଧୁଆ ଟବ୍‌ରୁ ବାହାରିଆସିଥାଏ, ଦେହରୁ ଟପ୍‌ଟପ୍ ହୋଇ ପାଣି ଗଡ଼ୁଥାଏ । ସିନ୍ଥିଆ ତା'କୁ ଭଲରକମ ପୋଛି-ପୋଛି କରି ଶୁଖାଇଦେଲେ ।

ଡେଭି ପଚାରିଥିବା ପ୍ରଶ୍ନର ଉତ୍ତର ଦେଲେ, "ଖ୍ରୀସ୍‌ମାସ୍ ପାଇଁ" —ପରେ ପୁଣି କହିଲେ, "ହଁ, ତୋ' ବାପା ଦେଖିବେ ବୋଲି ମଧ୍ୟ ଟିକିଏ ମନ ଅଛି ।"

ସିନ୍ଥିଆ ନୂଆ ପାଇଜାମାଟି ପୁଅକୁ ପିନ୍ଧାଇ ଦେଇ ତା'ଉପରେ ନାଲିରଙ୍ଗର ଗାଧୁଆ କୁରୁତାଟି ଗଳାଇ ଦେଲେ, ଚଟି ହଳକ ପିନ୍ଧାଇ ଦେଲେ, ମୁଣ୍ଡଟି କୁଣ୍ଡାଇ ଦେଲେ । ଡେଭି ଭାରି ସୁନ୍ଦର ଦିଶିବାର ଦେଖି ତାଙ୍କ ମନରେ ଭୟ ହେଲା । ଯଦି ସୀନ୍ ପୁଅକୁ ନେବାକୁ ଦାବି କରନ୍ତି ? ଛାଡ଼ପତ୍ର ଫଇସଲା ହେଲାବେଳେ ଯଦି ସୀନ୍ କହନ୍ତି ଯେ, ବର୍ଷକରୁ ଛ' ମାସ ସେ ଡେଭିକୁ ନେଇ ପାଳିବେ, ତେବେ ସେ କରିବେ କ'ଣ ?

ତେଭ୍ ପାଖରେ ନଥାଇ ଗୋଟିଏ ରାତି ବି ସେ ରହିପାରିବେ ଟିକି ? ସେ ହଠାତ୍ ତେଭ୍‌କୁ କୁଣ୍ଢାଇ ପକାଇଲେ ; ଏତେ ଜୋରରେ ଯେ ତେଭ୍ ତାଙ୍କୁ ଠେଲି ଆଡ଼େଇ ହୋଇଯାଇ ଅଭିଯୋଗ କଲା :

"ମୋତେ ଏତେ ଗେଲ କରନା । ମୋତେ କାଟୁଛି ।"

ସିନ୍ଥିଆ ଅନୁଭବ କଲେ, ତାଙ୍କ ହୃତ୍‌ପିଣ୍ଡରେ ଅଦ୍‌ଭୁତ ଶିହରଣ, ଯୀନ୍ ତ ଥରେ ଏଇମିତି କଥା କହିଥିଲେ —

"ପ୍ରିୟେ ! ତୁମେ ମୋତେ ବହୁତ କଷ୍ଟ ସ୍ନେହ କରୁଛ ! ମୋତେ ଟିକିଏ ବି ସ୍ୱାଧୀନତା ଦେଉନାହଁ ।"

ଏକଥା ଶୁଣି ତୀବ୍ର ମାନସିକ ବେଦନା ଓ କ୍ରୋଧରେ ସେ କହିଲେ, "ତୁମେ ଯଦି ସତେ ମୋତେ ସୁଖ ପାଉଥାନ୍ତ ; ତେବେ ସ୍ୱାଧୀନତା ପାଇଁ ଏପରି ମନ କରୁଥାନ୍ତ ।"

ଏ କଥା ଶୁଣି ଘୋର ଅସ୍ୱସ୍ତିରେ ଯୀନ୍ ତାଙ୍କ ଆଡ଼କୁ ଚାହିଁ କହିଲେ, "ଏଇତ ! ଆମ ଦୁହିଁଙ୍କର ଚିନ୍ତାଧାରାରେ ପାର୍ଥକ୍ୟ ଏଇଠାରେ ।"—

ପୁଅକୁ ପୋଷାକ ପିନ୍ଧାଇସାରି ସିନ୍ଥିଆ କହିଲେ, "ଚାଲ, ଏଥର ଖ୍ରୀସ୍‌ମାସ୍ ଗଛର ଦୀପ ସବୁ ଜାଳି ଦେଇ ତୋ' ବାପା ଆସିବାକୁ ପ୍ରତୀକ୍ଷା କରିବା ।"

ମା ପୁଅ ଦୁହେଁ ବୈଠକଖାନାକୁ ଗଲେ ; ସିନ୍ଥିଆ ଖ୍ରୀସ୍‌ମାସ୍ ଗଛର ଆଲୁଅ ସବୁ ଲଗାଇ ଦେବା ପରେ, ଦୁହେଁ ଯାକ ସଜବାଜ ହୋଇ ବସି ଯୀନ୍‌କୁ ଚାହିଁ ରହିଲେ ।

ଘରର ଯେଉଁ କୋଣଟିରେ ସେ ସବୁବେଳେ ଶୁଏ, ସେଇଠି ମିକି କଳା କୁକୁରଟିକୁ କୋଡ଼ରେ ଜାକି ଚେକି ମାରିଥାଏ, କିନ୍ତୁ ସତର୍କ ଦୃଷ୍ଟି ରଖିଥାଏ ତେଭ୍ ଉପରେ — କେଜାଣି ତେଭ୍ ତା' ଧନ ଉପରେ ଜବରଦସ୍ତି କରିବ କି, ଏଇ ଭୟରେ ।

କେଡ଼େ ବୋକା ଏ କୁକୁରଟା — ସିନ୍ଥିଆ ଭାବୁଥାନ୍ତି । ମିମି ତା'କୁ ଏଭଳି ଗଣ୍ଠିଧନ କରି ଧରି ନଥିଲେ ସେ ଏ ଖେଳନାଟାକୁ ଅଳିଆଗଦାରେ ଫୋପାଡ଼ି ଦିଅନ୍ତେଣି । ସେପରି କଲେ, କୁକୁରଟା ଛୁଆକୁ ଝୁରି ହୋଇ ଖାଇବା ଛାଡ଼ିଦେବ, ସତ ଛୁଆ ମରିଗଲା ପରି

ସତରେ ଗୁଡ଼ାଏ ଲୁହାଇବ । ଗତ ସପ୍ତାହରେ ଜେଭ୍ ଏଇଟାକୁ ନେଇ କହ୍ମ ଆଳଜପରେ ରଖିଦେବାରେ ମିମି ଏଇମିତ ହୋଇଥିଲା । ଜେଭର ରାଗ ଓ ହେ ହେ କାନ୍ଦକୁ ଖାତିର ନକରି ସେ କୁକୁରଟୁଆଟା ତା'ଆଡ଼କୁ ପକାଇଦେବାରେ ଯାଇ ମିମି ଅସୁସ୍ଥ ହୋଇଥିଲା । ଅନ୍ୟାସକାରଣରେ କେତେ ଝଡ଼ତୋଫାନ—ଘରଟା ସତେ ଡୋଲପାଡ଼ ହୋଇଗଲା !

ଦାଣ୍ଡ ଦୁଆର ଘଣ୍ଟି ବାଜିଲା । ଜେଭ୍ ଖପ୍‌କିନା ଧାଇଁଗଲା, ଦୁଆର ଫିଟାଇବାକୁ ; ସିଲ୍ଭିଆ ଧୀରେ ଧୀରେ ତା'ପଛରେ ଗଲେ । ସୀନ୍‌ଙ୍କ ପାଖରେ ଦୁଆରର ଚୋହଣ୍ଡ ଗୁଣ୍ଡ ଥାଏ । ତା'କୁ ବ୍ୟବହାର ନକରି ଅଜ୍ଞାତ ଆଗନ୍ତୁକ ଭଳି ଘଣ୍ଟି ବଜାଇ, ସୀନ୍ ବର୍ତ୍ତମାନ ପରିସ୍ଥିତିରେ ଠିକ୍ କାମ କରିଛନ୍ତି ବୋଲି ସିଲ୍ଭିଆ ଭାବିଲେ । ଗ୍ଛୋଟ ଗ୍ଛୋଟ କଥାରେ ସୀନ୍ ଅପରର ମନ ବେଶ୍ ବୁଝନ୍ତି, ଯଦିଓ ବଡ଼ ବଡ଼ କଥାରେ ତାଙ୍କର ନିଜ ସ୍ୱାର୍ଥ ଚିନ୍ତାଟା ଆଗ ।

"ବାପା !"

ସିଲ୍ଭିଆ ଦେଖିଲେ, ଜେଭ୍ ବାପାଙ୍କ ଉପରେ କୁଦେଇ ପଡ଼ିଲା । ତାଙ୍କ ଗୁଡିରେ ହଠାତ୍ କମିତ ଗୋଟାଏ ବେଦନାର ଆଘାତ ହେଲା । ସୀନ୍ ତାଙ୍କର ସାମନାରେ—ଏତେ ନିକଟରେ । ଦୁହିଙ୍କର ଆଖିର ମିଳନ ହେଲା । ସୀନ୍‌ଙ୍କ ମୁହଁରେ ମୃଦୁହସ ଫୁଟି ଉଠିଲା । ସିଲ୍ଭିଆଙ୍କ ହୃଦସ୍ପନ୍ଦକୁ ପୂର୍ବର ସ୍ମୃତି ବିଚଳିତ କଲା ।

ସେ ଖାଷ୍ଟ୍ସ ସ୍ୱରରେ ପୁଅକୁ ତାଗିଦ୍ କଲେ, "ଜେଭ୍, ଏମିତ କୁକୁର ପରି କାହିଁକି ହଉଚୁ ?"

"ସେ କୁକୁର ପରି ହେଉନାଇଁ, ସିଲ୍ଭିଆ ! ତା ବାପକୁ ଦେଖି ସେ ଖୁସି ହେଉଛି ଯେ ! ନାଇଁରେ ଟୋକା ? ବାପ୍‌ରେ ! ତା'କୁ ନଦେଖି ମୁଁ କେତେ ବ୍ୟଥିତ ନହୋଇଥିଲି ! ଆଜି ତୁମକୁ ନଦେଖି ମଧ୍ୟ, ପ୍ରିୟତମେ !"

ସୀନ୍ ଦେହରୁ କୋଟ୍‌ଟା କାଢ଼ି ଫୋପାଡ଼ିଦେଲେ, ତାହା ଗୋଟାଏ ଚଉକି ଉପରେ ଯାଇ ପଡ଼ିଲା । ସବୁ ଦିନେ ତାଙ୍କର ଏଇ ଅଭ୍ୟାସ । ଆଉ, ସବୁଦିନେ ସିଲ୍ଭିଆ କୋଟ୍‌ଟା ହଠାତ୍ ଉଠାଇ ନେଇ କୋଟ୍-ଆଲନାରେ ଝୁଲାଇ ଦିଅନ୍ତି । ଆଜି ବି ସେଇ ପ୍ରବୃତ୍ତି ଜାଗି ଉଠିଥିଲା ; ସିଲ୍ଭିଆ ଜୋର୍‌କରି ତାହା ଦବାଇଦେଲେ ।

ସୀନ୍ ପଚାରିଲେ, "ଦେହ ଭଲ ଅଛି ତ ?" ସିନ୍ଥିଆ ଦେଖିଲେ, ସୀନ ବେଶ୍ ସୁସ୍ଥ ଦିଶୁଛନ୍ତି ; ତାଙ୍କର ଯତ୍ନ ବିନା ସେ ଏତେ ସୁସ୍ଥ ଦିଶିବା, ସିନ୍ଥିଆଙ୍କ ପ୍ରତି ଚରମ ବିଶ୍ବାସଘାତକତା ପରି ମନେ ହେଲା । ସିନ୍ଥିଆଙ୍କର ମନେ ହେଲା, ସୀନ୍ ଖୁବ୍ ସୁଖରେ ଥିଲା ପରି ଦିଶୁଛନ୍ତି, ଜୀବନରେ ପୂର୍ଣ୍ଣ ସନ୍ତୋଷ ଉପଭୋଗ କରୁଥିବା ଲୋକ ପରି । ସୀନ୍ ତାଙ୍କୁ ଛାଡ଼ି ଯେଉଁଠାରେ ଅଛନ୍ତି, ସେଠାରେ ତେବେ ପୂର୍ଣ୍ଣରୂପେ ଜୀବନ ସମ୍ଭୋଗ କରୁଛନ୍ତି ! ଏ ସମ୍ଭୋଗ ହେଉଛି, କେଉଁ ନାରୀର ଯତ୍ନରେ ? ଏହି ପ୍ରଶ୍ନଟା ଚିରକାଳ ଉତ୍ତର ବିନା ନହୋଇ ରହି ଆସିଛି ।

ଏହାପରି ଭାବି ସେ ଧୀର ଭାବେ ସୀନ୍‌ଙ୍କ ପ୍ରଶ୍ନର ଉତ୍ତର ଦେଲେ, "ମୁଁ ଭଲ ଅଛି । ଦେଖୁଛି, ତୁମେ ବି ଭଲରେ ଅଛ ।"

ସୀନ୍ ଉତ୍ତର ଦେଲେ, "ମୁଁ ଗୋଟାଏ ନୂଆ କାମ ପାଇଛି । ଅବଶେଷରେ ଗୀତ ଓ ବାଦ୍ୟ ଉଭୟରେ ମୁଁ କାମ କରୁଛି ।"

"ଗୀତ ଓ ବାଦ୍ୟ ?"

ସୀନ୍ କହିଲେ, "ଥିଏଟରରେ କାମ ; ତେଣୁ ଗୀତ ଓ ବାଦ୍ୟ ଉଭୟରେ । ଏକଥା ଶୁଣି ହସ ନାହିଁ, ସିନ୍ଥିଆ ! ମୁଁ କ'ଣ କରିବାକୁ ଜନ୍ମ ହୋଇଛି, ଏପର୍ଯ୍ୟନ୍ତ ଜାଣି ନଥିଲି; ଏବେ ଜାଣୁଛି । ମୁଁ ବର୍ତ୍ତମାନ ନାଟକର ଅଭିନେତା—ଏହି କଳା ନେଇ ମୁଁ ଜନ୍ମ ହୋଇଛି ବୋଲି ସମସ୍ତେ କହୁଛନ୍ତି ।

ଧୀର ନିରାନନ୍ଦ ସ୍ୱରରେ ସିନ୍ଥିଆ ଜବାବ୍ ଦେଲେ, "ଠିକ୍ ତ ! ଥିଏଟରରେ ଖାଲି କାହିଁକି, ସବୁଠି ତୁମେ ଅଭିନେତା ହୋଇ ଆସିଛ—ଅଭିନେତା ବ୍ୟତୀତ ଅନ୍ୟ କିଛି ନୁହେଁ ।"

ସୀନ୍ ହସିଲେ, "ମୋତେ ଗାଳି ଦିଅ, ପ୍ରିୟତମ ! ତୁମଠାରୁ ଗାଳି ଖାଇଲେ ମୁଁ ପୁଣି ଘରେ ମୋ ସ୍ୱସ୍ଥାନକୁ ଫେରି ଆସିଲି ବୋଲି ଅନୁଭବ କରୁଛି ।"

ମନକୁ ଫୋଟି ଆସିଥିବା କ୍ରୋଧକୁ ଚାପି ରଖି ସିନ୍ଥିଆ କହିଲେ, "ହଉ, ଥାଉ । ତୁମେ ଯେ ଜଣେ ଅଭିନେତା ସୀ ପୁଣି ଆବିଷ୍କାର କଲି କିପରି ?"—ସିନ୍ଥିଆଙ୍କ ସ୍ୱରରେ ସେଇ ଅବିଚଳିତ ଉଦାସୀନତା ।

ସିନ୍ଥିଆ ପୁଣି ସୋଫା ଉପରେ ବସିଲେ ଓ ତାଙ୍କ ସିଲେଇ କାମ ଆରମ୍ଭ କଲେ । ଡେଭି ପାଇଁ ଗୋଟିଏ ନେଳିଆ ସ୍ୱେଟର୍ ବୁଣା ହେଉଥାଏ । ସୀନ୍ ତାଙ୍କ ପାଖରେ ଯାଇ ବସିଲେ ; ସୀନ୍‌ଙ୍କ କୋଡ଼ରେ ଡେଭି ।

"ହଠାତ୍ ଏ ଆବିଷ୍କାରଟା ହୋଇଗଲା । ସବୁ ଦିନ ପରି ସେ ଦିନ ମୁଁ ଖବରକାଗଜର ବିଜ୍ଞାପନ ସ୍ତମ୍ଭ ଦେଖୁଥାଏ । ଗୋଟାଏ ବିଜ୍ଞାପନ ଉପରେ ନଜର ପଡ଼ିଗଲା—ଗୋଟାଏ ନୂଆ ନାଟକ ପାଇଁ ଅଭିନେତା ଦରକାର—ବିଶେଷ କରି ଦରକାର, ଜଣେ ଆଇରିସ୍ ଲୋକ । ମନକୁ ମନ ବିଚାରିଲି, ମୋଠାରୁ ଅଧିକ ଆଇରିସ୍ ଢଙ୍ଗ ଓ ପ୍ରକୃତି ଆଉ ଅଛି କାହାର ? ସାଙ୍ଗେ ସାଙ୍ଗେ ଯାଇ ମୁଁ ଠିକଣା ଜାଗାରେ ପହଞ୍ଚିଲି, ଓ ମୋ'ର ଯେଉଁ ଆଇରିସ୍ ଉଚ୍ଚାରଣ ଭଙ୍ଗୀ ଭାଙ୍ଗିବାକୁ ତୁମେ ମୋତେ ଦେଖିବାଦିନୁ ଚେଷ୍ଟା କରୁଛ, ତାକୁଇ ପୂରାଦମ୍‌ରେ ଶୁଣାଇ ଦେଲି । ପ୍ରିୟତମେ ! ତାଙ୍କର ଏ ନାଟକ ପାଇଁ ଦରକାର ଥିଲା ଠିକ୍ ସେଇଆ—ଆଇରିସ୍ ଲୋକଟିଏ ହୋଇଥିବ, ଦେଖିବା ସୁନ୍ଦର ହୋଇଥିବ ଓ ଏଭଳି ଆଇରିସ୍ ଉଚ୍ଚାରଣ ଭଙ୍ଗୀ ଥିବ ଯେ,ଶୁଣିଲେ କାନ ଅଟକି ପଡ଼ିଯାଉଥିବ । ତୁମେ ତ ଜାଣ, ଏ ସବୁ ଗୁଣ ମୋ'ଠାରେ ପରିପୂର୍ଣ୍ଣ ! ମୋ'ର କାମ ପାଇବାର ଆଜିକୁ ହେଲା ସାତ ଦିନ । ପ୍ରଥମ ହପ୍ତାର ଦରମାରେ ମୁଁ ଦୁଇଟି ଉପହାର କିଣି ଆଣିଛି, ଗୋଟିଏ ତୁମ ପାଇଁ ଓ ଆଉଟି ଡେଭି ପାଇଁ ।"

ସେ ତାଙ୍କ ପକେଟ୍‌ସବୁ ଦରାଣ୍ଡାଦରାଣ୍ଡି କରି ଯୋଡ଼ିଏ ପୁଡ଼ା ବାହାର କଲେ—ଗୋଟିଏ ଛୋଟ ଓ ଆଉଟି ତା'ଠାରୁ ବଡ଼ ।

ଦୁଇଟିଯାକ ସିନ୍ଥିଆଙ୍କ ହାତକୁ ବଢ଼ାଇ ଦେଇ ସୀନ୍ କହିଲେ, "ତୁମଟା ଖୋଲ ।"

ସିନ୍ଥିଆ କହିଲେ, "ମୋର ଉପହାର ଦରକାର ନାହିଁ ।"

ସୀନ୍ ହାକୁଲେଇ କହିଲେ, "ଦରକାର ନାହିଁ କାହିଁକି ? ନିଶ୍ଚୟ ନେବାକୁ ହେବ । ଆଗ ପ୍ୟାକେଟ୍ ଖୋଲ, ଦେଖ, ତେବେ ନିଶ୍ଚୟ ନେବାକୁ ଚାହିଁବ । ଜିନିଷଟି ଏଡ଼େ ସୁନ୍ଦର ଯେ, ମୋ'ଠାରୁ କାହିଁକି, ଜଣେ ଅଚିହ୍ନା ଲୋକଠାରୁ ମଧ୍ୟ ଏହା ତୁମେ ନେବାକୁ କୁଣ୍ଠିତ ହେବ-ନାହିଁ ।"

"କିନ୍ତୁ ମୁଁ ଯେ ତୁମ ପାଇଁ କୌଣସି ଉପହାର ରଖି ନାହିଁ, ଯୀନ୍ ! ତୁମେ ଆସିବ ବୋଲି ତ ମୁଁ ଜାଣି ନଥିଲି ।"

"ମୋତେ ପୁଣି ତୁମେ ଉପହାର କାହିଁକି ଦେବ, ପ୍ରିୟେ ! ମୁଁ ତୁମକୁ ଯେତେ କଷ୍ଟ ଦେଇଛି, ଯେତେ ହରକତ କରିଛି, ସେଥିରେ ତୁମେ ଯଦି ମୋତେ ଉପହାର ଦିଅ ତେବେ ମୋ ବିବେକକୁ ବାଧିବା ହିଁ ସାର ହେବ । ମୋ ସୁନାଟି ପରି ! ତୁମ ପ୍ୟାକେଟ୍‌ଟି ଖୋଲ । ତୁମେ ଏ ଉପହାରଟି ଗ୍ରହଣ କଲେ, ତୁମଠାରୁ ବିଦାୟ ନେବା ପୂର୍ବରୁ ମୁଁ ଟିକିଏ ଖ୍ରୀସ୍‌ମାସ୍ ଆନନ୍ଦ ପାଇବି । ଅନ୍ତତଃ ସେଥିପାଇଁ ଏ ଉପହାରଟି ଗ୍ରହଣ କର ।" ଏହା କହି ଯୀନ୍ ନିଜ ହାତଘଡ଼ିକୁ ଚାହିଁଲେ ; ପୁଣି କହିଲେ, ମୋତେ ଯିବାକୁ ପଡ଼ିବଇ ପଡ଼ିବ । ଆଜି ରାତିରେ ଆମକୁ ଗୋଟାଏ ଅଭିନୟ ଦେବାକୁ ହେବ—ବିଶେଷ କରି ଖ୍ରୀସ୍‌ମାସ୍ ଉଦ୍ଦେଶ୍ୟରେ ।"

ସିନ୍ଥିଆ କୁନ୍ଥୁ କୁନ୍ଥୁ ହୋଇ ଫିତା ଫିଟାଇଲେ । ଯୀନ୍ ତ ଏତେ ଶୀଘ୍ର ଯିବେ ବୋଲି କହୁଛନ୍ତି, ଏପରିସ୍ଥଳେ କପରି ନାହିଁ କରିବେ ? ପାକେଟ୍ ଭିତରରୁ ବାହାରିଲା ଗୋଟିଏ ଭେଲ୍‌ଭେଟ୍ ବାକ୍ସ । ତାଭିତରେ ସେ ଦେଖିଲେ ଗୋଟିଏ ପୁରୁଣାକାଳିଆ ବ୍ରୋଚ୍—ପିନ୍ ଉପରେ ରୁପାର ଫୁଲଗୁଡ଼ିଏ ଖଞ୍ଜା ହୋଇଛି—ଫୁଲ ଗୁଡ଼ିକର ପାଖୁଡ଼ାରେ ଗୋଟିଏ ଗୋଟିଏ ଛୋଟ ଛୋଟ ମୁକ୍ତା । ଅତି ସୁନ୍ଦର ଜିନିଷଟିଏ, ଠିକ୍ ସିନ୍ଥିଆଙ୍କର ମନଲାଖି ।

ଚୁପ୍ ଚୁପ୍ କରି ସେ କହିଲେ, "ହାଇଏ ଯୀନ୍ !" ସାଙ୍ଗେ ସାଙ୍ଗେ କିନ୍ତୁ ରାଗରେ ତାଙ୍କୁ ଆକ୍ରମଣ ଆରମ୍ଭ ହେଲା, "ଗୋଟାଏ ସାମାନ୍ୟ ଜିନିଷରେ ଏତେ ପଇସା ଖର୍ଚ୍ଚ କରିବାକୁ ତୁମ ହାତ ଗଲା କିମିତି କେଜାଣି ? ଜାଣ ତ ହପ୍ତାକ ଭିତରେ ଘରର ବନ୍ଧକ ବାବଦ୍ କିସ୍ତି ଦେବାକୁ—"

ଯୀନ୍ ସିନ୍ଥିଆଙ୍କ ମୁହଁରେ ହାତ ଦେଇ କହିଲେ, "ଥାଉ, ଥାଉ, ଆଜି ପରା ଖ୍ରୀସ୍‌ମାସ୍— । ବନ୍ଧକଟଙ୍କା ଦେବାରେ ଟିକିଏ ଡେରି ହୋଇଗଲେ ଦୋଷ ନାହିଁ ।"

ସିନ୍ଥିଆ ଚିତ୍କାର କଲେ, "ଏଇ ତ ତୁମର ଭୁଲ୍ । ଏଭଳି କରିବା ଭଦ୍ରଲୋକର କାର୍ଯ୍ୟ ନୁହେଁ । ଭଲ ଲୋକେ ଆଗ ତାଙ୍କ ଉଧାର ଧାର

ପରିଶୋଧ କରନ୍ତୁ । ମୁଣ୍ଡରେ କରଜବୋଝ ଅଛୁ ବୋଲି ମୋତେ ପୁଣି ସ୍କୁଲଘରକୁ ଫେରିବାକୁ ହେଲା । ସ୍କୁଲରୁ ଧାର ଉଧାର କରି ରହିବା ମୋ' ପକ୍ଷରେ ଅସହ୍ୟ ।"

"ତୁମେ ତ ସ୍କୁଲଘରକୁ ଯାଉଛ, ତେବେ ଘରେ ଡେଭି ପାଖେ ରହୁଛି କିଏ ?"

ସ୍ତମ୍ଭୀଭୂତ ହୋଇ ସିନ୍ଥିଆ ସାଇନ୍‌ଙ୍କ ଆଡ଼କୁ ଚାହିଁଲେ । ସେ ତ ଏ ଅଭିଯୋଗ ଆପଣା ମୁଣ୍ଡକୁ ଆପେ ଆଣିଛନ୍ତି ! ତେବେ, ଅବସ୍ଥାକୁ ବିଚାର ନକରି, ଡେଭି କଥାଟା ଉଠାଇବା ସାଇନ୍‌ଙ୍କର ହୃଦୟହୀନତା, ବୋଲି ସେ ଧରିନେଲେ । ଏଣେ ସାଇନ୍‌ଙ୍କୁ ସେ କଚୁଣିଆ ଭାବେ ଚାହିଁଲା ବେଳକୁ ସାଇନ୍‌ଙ୍କ ଆଖିରେ ଦିଶିଲା ଦ୍ୱେଷ ଓ ବିରକ୍ତି ।

ସଫେଇ ଦେଇ ସେ କହିଲେ, "ଡେଭି କଥା ମୁଁ ବୁଝୁଛି । ସକାଳ ଓଳି ସେ କିଣ୍ଡରଗାର୍ଟନ୍ ସ୍କୁଲରେ ରହୁଛି, ଆଉ—"

ସାଇନ୍ ବାଧା ଦେଇ କହିଲେ, "ଆସ୍ତେ, ଆସ୍ତେ । ଡେଭି ତ ପୁରା ତୁମର ନୁହେଁ । ମୋର ମଧ୍ୟ ତା' ଉପରେ ଅଧା ଭାଗ ଅଛି । ଅଧା-ପୁଅ ହେଲେ ବି, ତୁମେ ସ୍କୁଲ ନାମରେ ବାହାରେ ବୁଲୁଥିବ ଓ ପିଲାର ଅଯତ୍ନ ହେଉଥିବ, ଏହା ମୁଁ ବରଦାସ୍ତ କରିପାରିବି ନାହିଁ । ପ୍ରକୃତରେ, ମୁଁ ତ ଅନାୟାସରେ ତା'ର ପୁରା ଦାୟିତ୍ୱ ନେଇ ପାରିବି । ଦିନ ତମାମ ମୁଁ ତା' ପାଖରେ ରହିପାରିବି ଏବଂ ରାତିରେ ଥିଏଟରକୁ ଯିବା ପୂର୍ବରୁ ତା'କୁ ଶୁଆଇ ଦେବି । ସେତେବେଳେ ତା' ଉପରେ ଟିକିଏ ନଜର ରଖିବାକୁ ଜଣକୁ ଠିକଣା କରିଦେଲେ କାମ ଶେଷ ।"

ଉତ୍ତ୍ୟକ୍ତ ହୋଇ ସିନ୍ଥିଆ ଜବାବ ଦେଲେ, "ତୁମ ପାଖେ ତା'କୁ ଛାଡ଼ି ମୁଁ ନିଶ୍ଚିନ୍ତ ରହି ନପାରେ । ନାଟକରେ ଅଭିନେତା ! କୋଉ କାମଟାଏ ସେ ? ଏ ନାଟକଟା ସରିବା ପରେ ଆଉ ଗୋଟାଏ ପାଇବାକୁ କେତେ ଦିନ ଲାଗିବ ତା'ର କୋଉ ଠିକ୍ ଠିକଣା ଅଛି ? କାମ ଖୋଜିବାକୁ ଯେତେବେଳେ ତୁମେ ରାସ୍ତାରେ ବୁଲୁଥିବ ସେତେବେଳେ ଡେଭି କଥା ବୁଝିବ କିଏ ? ମୁଁ ବଞ୍ଚିଥିବା ଯାକ ଡେଭିକୁ ତୁମ ହାତରେ କଦାପି ଦେବି ନାହିଁ ।"

ଏତିକିବେଳେ ପାଖ କୋଠରିରୁ କୁକୁରର ଗାଉଁ ଗାଉଁ ଶବ୍ଦ ଦୁହେଁ ଶୁଣିଲେ ।

ଯୀନ୍ ଧଡ଼କନ ଉଠିପଡ଼ି କହିଲେ, "ହେ ଭଗବାନ୍ ! ଏ ଗର୍ଜନ କାହିଁକ ?"

"ସ୍ୱେ ସେଇ ବୋକା ମିମିର ପ୍ରକାର ।"

ସିଲ୍ଭିଆ କଥାଟା ପରିଷ୍କାର କରି ବୁଝାଇବାକୁ ବେଳ ନଥିଲା, କାରଣ ସେତିକବେଳେ ଡେଭି ଚିତ୍କାର କଲା—ଚୋଟି ଚପି ହୋଇଗଲେ ଯେପରି ଶବ୍ଦ ହୁଏ ସେହିପରି ଶବ୍ଦ । ତାହା ଶୁଣିବାଲୋକେ ବ୍ୟସ୍ତ ହୋଇପିବାର କଥା । ଦାମ୍ପତ୍ୟ କଳହ ଲଗିବାରେ ଡେଭି ଆଉଘରକୁ ଗୃଲି ଯାଇଥାଏ । ତାହା ତା'ର ଘର, ସେଇଠାରେ ସେ ଶୁଏ ଓ ଖେଳେ । ପିତା ମାତା ସେ ଘରକୁ ଧାଇଁ ଯାଇ ଦେଖିଲେ, ଚଟାଣରେ ଡେଭି ପଡ଼ିଛି ; ହାତରେ ଖେଳଣା କୁକୁରଛୁଆଟାକୁ ଜକଟମକଟ କରି ଧରିଛି ଓ ଡେଭିର ବେକରେ ମୁହଁ ଲଗାଇଛି ଗ୍ଲେଟିଆ କୁଞ୍ଚ ମିମି ।

ଯୀନ୍ ଖ୍ରିଷଣ ଜୋରରେ ଆଦେଶ ଦେଲେ, "ଛାଡ଼, ଛାଡ଼, କୁଞ୍ଚ ।"

ସେ ଦୁଇହାତରେ କୁକୁରକୁ ଧରି ପୁଅଠାରୁ ତା'କୁ ଭିଡ଼ିବାକୁ ଚେଷ୍ଟା କଲେ । ବାପ୍ପା ବଲୁଆକୁ ଛଡ଼ାଇବା ଯେପରି ଅସମ୍ଭବ, ମିମିକୁ ଛଡ଼ାଇବା ସେହିପରି ଅସମ୍ଭବ ହେଲା । ଏତେ ଧୀର, ଏତେ ଗେଲରେ ଖେଳେ ଏଇ ମିମି ! ଏତେ ବଜଟେ ବୋଲ କୁକୁର । ହିଂସାରେ ପାଗଳ ହୋଇ ସେତେବେଳେ ହୋଇଯାଇଥାଏ ପ୍ରଚଣ୍ଡ ଶକ୍ତିର ଅବତାର ।

ଯୀନ୍ ଦାନ୍ତ କଡ଼ମଡ଼ କରି କହିଲେ, "ମୁହୂର୍ତ୍ତିକ ପାଇଁ ତା'କୁ ଛଡ଼ାଇ ପାରିଲେ ତା' ବେକ ମୋଡ଼ି ଦିଅନ୍ତି— ।"

ସିଲ୍ଭିଆ ଡେଭି ହାତରୁ କୁକୁରଛୁଆଟା ଛଡ଼ାଇ ଆଣି ଦୂରକୁ ଫୋପାଡ଼ି ଦେଇ ଚିତ୍କାର କଲେ, "ଯା, ନେ, ମିମି—ହେଇଟି ତୋ ଛୁଆ ।"

ତତକ୍ଷଣେ ମିମି ଡେଭିକୁ ଛାଡ଼ି ଦେଇ ଛୁଆ ପାଖକୁ ଗଲା ; ତା'କୁ ଦାନ୍ତରେ ଧୀରକନ ଧରି, ଘରର ଗୋଟାଏ କୋଣକୁ ଗୃଲିଯାଇ, ଚାଟି ଲଗିଲା ।

ଯୀନ୍ ଡେଭିକୁ ଟେକ ଠିଆ କରି କହିଲେ, "ଦେଖି, କ'ଣ ହୋଇଛି ।"

ଡେଭି ଉପୁରେ କାନ୍ଦୁଥାଏ ସିନା, ତା ବେକରେ ଆଘାତ ଲାଗିନଥାଏ । ଯେତେ ରାଗିଲେ ହେଲେ କ'ଣ ହେବ ଡେଭି ଦେହରେ ଦାନ୍ତ ଲଗାଇବାକୁ ମିମି ମନ କରି ନଥିଲା । ଗୁରୁତର ଘ୍ରେଟ ଘ୍ରେଟ-ଚିହ୍ନ—ଦାନ୍ତର ଚିହ୍ନ – କିନ୍ତୁ ଡେଭିର କର୍ଣ୍ଣ ଚମକୁ ଭେଦ କରି ନଥାଏ—ଆଘାତ ଭିତରେ ଏତିକିମାତ୍ର ଦେଖା ପଡ଼ିଲା । ସିନ୍ଥିଆ ଡେଭି ପାଖେ ଜାନୁପାତ କରି ହାତରେ ତାକୁ କୁଣ୍ଢେଇ ପକେଇଲେ ।

"ହାଇରେ ଡେଭି ! ଏମିତି ହବ ବୋଲି ତୋତେ ପରା ମୁଁ କହୁଥିଲି—"

ସୀନ୍ ଜିଜ୍ଞାସା କଲେ, "କ'ଣ ଏ ଋବାଡ଼୍ ?"

କାନ୍ଦୁଥିବା ପିଲାକୁ କୁଣ୍ଢେଇ ଧରି ସିନ୍ଥିଆ ମୁହଁ ଟେକି ସୀନ୍‌ଙ୍କୁ ଚାହିଁଲେ, ଓ କହିଲେ, "ଏଇ ମିମି । ଏଇଲେ ବଢ଼ୁରୁଛି, ତୁମେ ଯାକୁ ଆଣି ମୋତେ ନ ଦେଇଥିଲେ ଭଲ ହୋଇଥାନ୍ତା ।"

ସୀନ୍ ଡେଭିର ଖଟ ଉପରେ ବସି ପଡ଼ି ସିନ୍ଥିଆଙ୍କୁ ବିସ୍ମୟରେ ପଚାରିଲେ, "ମିମି ?" ପୁଅକୁ କହିଲେ, "ଆସିବୁଟି ଏଠିକି, ଦେଖେଁ ତୋ'ର ଗଳା ।"

ସୀନ୍ ପୁଅର ଗଳାକୁ ଭଲ କରି ଚାହିଁଲେ ଓ ଦାନ୍ତ ଦାଗ-ଗୁଡ଼ିକୁ ଘଷି ଘଷି ମିଶାଇ ଦେଲେ ; ଦାନ୍ତଚାପି ଚାପି କହିଲେ, "ହତ୍ୟା କରିବାର ପଶୁବୃତ୍ତି । କିନ୍ତୁ ବିଲୁଆ ଏତେ ଭଲ ଯେ ପ୍ରବୃତ୍ତିକୁ ଚରିତାର୍ଥ କରିବାକୁ ସାହାସ କଲା ନାହିଁ । ପଶୁବୃତ୍ତି ସତ୍ତ୍ୱେ ବିଲୁଆର ହୃଦୟଟି ସ୍ନେହ ପୂର୍ଣ୍ଣ ।"

ସିନ୍ଥିଆ କହିଲେ, "ବଡ଼ ଭୟଙ୍କର ଅବସ୍ଥା ସୃଷ୍ଟି କରିଛି ସିଏ । ଏଇ ଛୁଣ୍ଡା କନାର କୁକୁର ଛୁଆ ପାଇଁ ସେ ବାଘୁଣୀ ହୋଇ ଗଲାଣି ; ବଢ଼ୁରୁଛି, ସତେ ଏ ଛୁଆଟା ଜାଇଛି । ଯାକୁ ଚଟାଚଟି କରୁଛି, କୋଳରେ ପୂରାଇ ଶୁଆଉଛି, ଓ ଜଗି ରହୁଛି । ଏଣେ ଡେଭିର ଜିଦ୍ ଲାଗିଛି, ଛୁଆଟି ମିମିଠାରୁ ଛଡ଼େଇ ନେବାକୁ ।

ଡେଭି ଶଙ୍କେଇ ଶଙ୍କେଇ କହିଲା, "ନେବି ନାଇଁ ? ଏଇଟା ତ ମୋ'ର କୁକୁରଛୁଆ ।"

ସିନ୍ଥିଆ ତୀକ୍ଷ୍ଣ ସ୍ୱରରେ କହିଲେ, "ସେ ପରା ବଢ଼ୁରୁଛି, ତା'ର

ବୋଲି । ତୋ'ର ଏତେ ଖେଳଣା ଅଛି । ଏଇଟାକୁ—"

ସୀନ୍ କହିଲେ, "ହଉ ଟିକିଏ ରହ ।" ସେ ପୁଅକୁ ଆଣି କୋଡ଼ରେ ବସାଇଲେ ଓ ଗେଲ କରି କରି ପଚାରିଲେ, "ଆଚ୍ଛା, ଡେଭି, ତୁ, ଏଇ ଖେଳନା କୁକୁରଛୁଆଟାକୁ ନେଇ କ'ଣ କରିବୁ ଭଲା ? ତୁ' ତ ଆଉ ସେଥିକୁ ଧରି ଖେଳୁନାହୁଁ । ଏଇଟା ସାନପିଲାଙ୍କର ଖେଳଣା । ଏଇଟାକୁ ମିମିକୁ ଦେଲେ ହୁଅନ୍ତା ନାଇଁ ?"

ଡେଭି କହିଲା, "ନା । ମୋର ଏଇଟା ଦରକାର ।"

"କାହିଁକି ଦରକାର, ଡେଭି ?"

"ମୁଁ ସେଥିକୁ ପୋଡ଼ି ପାଉଁଶ କରିବି ।"

"କିନ୍ତୁ କାହିଁକି ?"

"ଜାଳି ଦେଲେ ଆଉ ମିମି ସେଥିକୁ ପାଇବ ନାହିଁ ।"

"କାହିଁକି ? ମିମି ସେଥିକୁ ନେଇ ଗେଲ କଲେ, ତୋତେ କାହିଁକି ଏତେ ରାଗ ଲାଗୁଛି ଯେ ?"

ଏଥିକୁ ଡେଭି କିଛି ଉତ୍ତର ଦେଲା ନାହିଁ ; ଖାଲି ବାପାଙ୍କ କାନ୍ଧରେ ମୁଣ୍ଡ ଗୁଞ୍ଜି କୋହରି ହୋଇ କାନ୍ଦିବାକୁ ଲାଗିଲା ।

ସୀନ୍ ଗେଲେଇ ଗେଲେଇ କହିଲେ, "ତୁ କିଛି ଜାଣି ପାରୁନାହୁଁ, ମିମି ବି ଜାଣୁ ନାହିଁ, କନା କୁକୁର ଛୁଆଟାଠାରେ ତା'ର ଏତେ ସ୍ନେହ କାହିଁକି ? ତୁମେ ଦୁହେଁଯାକ କିଛି କାରଣ ନଥାଇ ଏଇଟା ପାଇଁ କଳି ଲଗେଇଚ । ନାଇଁ, ଡେଭି ?"

ଡେଭି ମୁଣ୍ଡ ହଲାଇଲା ।

"ଡେଭି ! ମୁଁ କହିବି, ତୁମେ ଦୁହେଁ କାହିଁକି ଏମିତି ହେଉଚ ?"

ହଠାତ୍ ଏକଥାରେ ଆଗ୍ରହାନ୍ୱିତ ହୋଇ ଡେଭି ମୁଣ୍ଡ ଟେକିଲା ଓ ପଚାରିଲା, "ବାପା ! ତୁମେ କ'ଣ ଜାଣ, ଆମେ ଏମିତି କାହିଁକି ହେଉଚୁ ?"

ସୀନ୍ ସିନ୍ଥିଆ'ଙ୍କ ଆଡ଼କୁ ଚାହିଁ କହିଲେ, "ମୁଁ ଠିକ୍ ଜାଣେ ନାହିଁ, କିନ୍ତୁ ଅନୁମାନ କରି କହିବି ; ଯାହା ବା ଜାଣେ, ଓପରଠାଉରିଆ କରି ଜାଣେ । ଏତିକି ମୁଁ ଜାଣିଛି, ମିମି କୁକୁରଟାଏ ହେଲେ କ'ଣ

ହେଲା, ତା'ର ଅନୁଭବ କରିବାର ଶକ୍ତି ଅଛି । ତୋ' ମା'ଙ୍କର ତୁ ଯିମିତ; ମିମି ଭାବୁଛି ତା'ର ସେମିତି ଗୋଟିଏ ଛୁଆ । ସତ ଛୁଆଟି ପାଇଁ ତା'ର ଯେଉଁ ଆକାଂକ୍ଷା, ତାହା ପୂରଣ ନ ହେବାରୁ, ଏଇ ଉପାୟରେ ଡିଆରି ଛୁଆକୁ ସତ ବୋଲି କଳ୍ପନା କରି ସେ ତା'ର ଆକାଂକ୍ଷା ପୂରଣ କରୁଛି । ମନେ ମନେ ବିଶ୍ୱାସ କରିଦେଇଛି ଯେ ଏଇଟି ଜୀଇଛି ; ଭାବୁଛି ଏଇ ତା'ର ପରିବାର । ତୁ' ଯେଉଁ କଣ୍ଢେଇ ଧରି ଖେଳୁଥିଲୁ ଏ ସେଇ କନାର କୁକୁରଛୁଆ, ସେ କଥା ତା' ମନଜ୍ଞାନକର୍ତ୍ତବ୍ୟରେ ନାଇଁ । ଏକୁଟିଆ ହୋଇଛି ରହିବାରୁ ମିମିର ଅନୁଭୂତି ଓଲଟପାଲଟ ହୋଇ ଯାଇଛି । ତୁ ବି ସେଇପରି ଏକୁଟିଆ ହୋଇଯିବାରୁ, ତୋ'ର ମନ ଗୋଳମାଳିଆ ହୋଇଯାଇଚ । ତୁ ଭାବୁଛୁ, କନା-ଛୁଆଟାକୁ ପାଇ ମିମି ତୋତେ ଆଉ ସୁଖ ପାଉନାହିଁ । ଆଗେ ତୋ ସାଙ୍ଗେ ମିମି ଖେଳୁଥିଲା, ଏବେ ଏଇ କୁକୁରଛୁଆଟା ପାଇଯିବାରୁ ତା'ର ହେପାଜତରେ ଖାଲି ଲଗିଛି । ଏହା ତୁ ସହିପାରୁ ନାହୁଁ ।"

ସିନ୍ଥିଆ ଫିସ୍ ଫିସ୍ କରି ଅଭିଯୋଗ କଲେ, "ଭଗବାନ୍‌ଙ୍କ ଦୋହି, ସୀନ୍ । ଏମିତି ଗୁଡ଼ାଏ କ'ଣ କହୁଛ ?"

ସୀନ୍ କହିଲେ, "ମୋ' ଉପରେ ରାଗିଉ ନାଇଁ ସିନ୍ଥିଆ ! ଜନ୍ତୁଙ୍କର ସ୍ୱାଭାବିକ ବୃତ୍ତି ବିଷୟ ମୁଁ କହୁଛି - କୁକୁର ହେଉ ବା ମଣିଷପିଲା ହେଉ— ସମସ୍ତଙ୍କର ମୌଳିକ ପ୍ରବୃତ୍ତି ଏକ । ଏଇ ପ୍ରବୃତ୍ତି ଜୀବନର ଗଭୀରତମ ତତ୍ତ୍ୱ । ପ୍ରାପ୍ତବୟସ୍କ ପୁରୁଷ ଓ ସ୍ତ୍ରୀ ମଧ୍ୟ – ବାସ୍ତବ ଜୀବନରେ କୌଣସି କଥା ପାଇ ନପାରିଲେ – ସେଇ ଜିନିଷ ବୋଲି କଳ୍ପନା କରି ଆଉ ଗୋଟାଏ କିଛି ଧରି ନିଅନ୍ତି ଓ ତାକୁଇ ଧରି ନିଜର ଅତୃପ୍ତ ଆକାଂକ୍ଷା ପୂରଣ କରନ୍ତି ।"

ଏହା କହୁ କହୁ ସୀନ୍ ଠିଆ ହେଲେ ଓ ତାଙ୍କୁ ଠିଆ ହେବାର ଦେଖି ମିମି ଗାଉଁ ଗାଉଁ ହେଲା । ସେ ଗୋଟାଏ କୋଣରେ କୁକୁରଛୁଆକୁ କୋଡ଼ରେ ଜାକି ଚେକି ମାରିଥିଲା ।

ସୀନ୍ କହିଲେ, "ବୋକୀ କୁକୀ ! ମୋତେ କାହିଁକି ଗାଉଁ ଗାଉଁ ହେଉଚୁ ? ତୋ'ର ସତ ଛୁଆ ନ ହେବା ପର୍ଯ୍ୟନ୍ତ ଏଇ କନା ମେଣ୍ଢାକୁ ଛୁଆ ବୋଲି ଭାବିକରି ନିଶ୍ଚିନ୍ତ ଥା ।"

ପୁଅକୁ ଗୁହିଁ ସୀନ୍ କହିଲେ, "ଆଜି, ପୁଅ ! ଦେଖ ! ତୁ ବଡ଼ ହୋଇ ଗଲୁଣି । ଏଥର ସାଙ୍ଗ ହେବାକୁ ତୋର ମଣିଷପିଲା ଦରକାର, କୁକୁର ସାଙ୍ଗେ ସାଙ୍ଗ ହେଲେ ଆଉ ମନ ବୁଝିବ ନାହିଁ । ତୋ'ର ଭାଇ ଭଉଣୀ ଥିବା ଦରକାର, ସାଙ୍ଗ ହେବାକୁ ।"

"ବାପା ! ତୁମେ ଆଉ ଯିବ ନାହିଁ ।"

ପିଲାଟି ବଡ଼ ବ୍ୟାକୁଳ, ମିନତିଭରା ସ୍ୱରରେ ଏ ଅନୁଯୋଗ କଲା ।

ସୀନ୍ କହିଲେ, "ମୋତେ ଯିବାକୁ ପଡ଼ିବ ରେ ବାପା ! ମୁଁ ପରା ଗୋଟାଏ କାମ ଧରିଛି—ଗୋଟାଏ ଗୁରୁ କାମ ।'

"ଗଲେ କିନ୍ତୁ, ତୁମେ ଫେରି ଆସିବ ।"

ସୀନ୍ ଟିକିଏ ଥା ଥା ମାରି ହୋଇ କହିଲେ, "ତୋ'ବୋଉ ଓ ତୁ ଗୁହିଲେ ଆସିବି ।"

ପିଲାଟି ସିନ୍ଥିଆଙ୍କ ଆଡ଼କୁ ଧାଇଁକରି ବୁଲି ପଡ଼ିଲା—"ମୋର ବାପା ଫେରି ଆସିବା ଦରକାର ।"

ସିନ୍ଥିଆ ଦେଖିଲେ, ବାପ ପୁଅ ଦୁହେଁ ମିଶିଗଲେଣି ତାଙ୍କ ବିରୁଦ୍ଧରେ । ସେ ବେଶ୍ ବୁଝିପାରିଲେ, କୁକୁର, କନା କୁକୁରଛୁଆ ଓ ମଣିଷ ପିଲା— ସୀଙ୍କର ତତ୍ତ୍ୱବୁଝାଇବା ନାଁରେ ସୀନ୍ କଥାଟାକୁ ଆଣି ଏମିତି ଜାଗାରେ ପହଞ୍ଚାଇ ଦେଲେଣି, ଯେଉଁଥିରେ କି ପୁଅ ତାଙ୍କ ଫେରିବାକୁ ଅଳି କରିବା ସ୍ୱାଭାବିକ । ସୀନ୍ ଯେଉଁ ମଣିଷ, ସେ ଆଗରୁ ଏଇ ଉଦ୍ଦେଶ୍ୟ ରଖି ତତ୍ତ୍ୱର ଅବତାରଣା କରୁଥିଲେ ବୋଲି ସିନ୍ଥିଆଙ୍କର ମନେହେଲା । ତାଙ୍କ ଆଗରେ ପରାଜୟ ସ୍ୱୀକାର କରିବେ ନାହିଁ ବୋଲି ଚେଷ୍ଟା କରି ସେ ସୀନ୍‌ଙ୍କ ଆଡ଼କୁ ଗୁହିଁଲେ ।

ସୀନ୍ କହିଲେ, ପ୍ରିୟତମେ ! ଗୃହସ୍ଥାଶ୍ରମର ଏ ଗୋଟିଏ ବିରାଟ ସମସ୍ୟା । ଏହାର ସମ୍ମୁଖୀନ ହେବାକୁ ହେବ । ଦେଖୁଛ, ମିମି ପରି ଜଣେ ଭଦ୍ରମହିଳା ନିଜର ପରିବାର ନଥିବାରୁ, କପରି କାମୁଡ଼ା କୁଣ୍ଡ ହୋଇ-ଯାଇଛି । ବହୁତ ଆଗରୁ ତା'ର ନିଜ ପିଲାକବିଲା ହୁଅନ୍ତେଣି, କିନ୍ତୁ ଆମେ ନିଜ ଭଲମନ୍ଦରେ ଏତେ ବ୍ୟସ୍ତ ଥାଇଁ ଯେ, ତା' କଥାକୁ ଦୃଷ୍ଟି ଦେବାକୁ ବେଳ ମିଳିନାହିଁ । ପ୍ରକୃତ ବିରୁଦ୍ଧରେ କେହି ଲଢ଼ିକରି ଜଣି

ପାରିବ ନାହିଁ । ତୁମେ ନିଜେ, ତୁମ ସଙ୍ଗୀର ନାନା ଦୋଷଗୁଣ ଯୋଗୁଁ, ତାକୁ ବହିଷ୍କାର କରି ଦେଇଛ, ତା'କୁ ଦେଖିଲେ ସ୍ୱଗତରେ ମିଶିଆସିବାକୁ ମନ, ହେଲେ କ'ଣ ହେବ ? ପ୍ରକୃତି ବିରୁଦ୍ଧରେ ଏ ଅଭିଯାନରେ ଜିଣି ପାରିବ ?…''ସୀନ୍ ଲଇଁ ପଡ଼ି ସିନ୍ଥିଆଙ୍କ ଗାଲରେ ଗୋଟିଏ ଚୁମ୍ବନ ଆଙ୍କିଦେଲେ ।

ସିନ୍ଥିଆ ଫୁସ୍ ଫୁସ୍ କରି କହିଲେ, "ଉଃ, ସୀନ୍ ! ମୁଁ ପୂର୍ବପରି ଆଉ ତୁମ ସଙ୍ଗେ ଉଚ୍ଛଳବିକଳ ହୋଇ ପାରିବିନାହିଁ ।"

ସିନ୍ଥିଆ ସୀନ୍‌ଙ୍କ ଆଡ଼ୁ ମୁହଁ ଫେରାଇ ନେଇ ବୁଲି ପଡ଼ିଲେ । ତାଙ୍କ ଆଖିର ମଚ୍ଛୁଆଳ ପ୍ରଲୋଭନ, ତାଙ୍କ ମୁହଁ ଓ ଲୋଭନୀୟ ସ୍ୱରର ଦୂରରେ ଯାଇ ଲୁଚିଯିବାକୁ ତାଙ୍କର ମନ ହେଉଥାଏ ।

ସୀନ୍ ଡାକିଲେ, "ମୋ ଆଡ଼କୁ ଗୁହଁ ତ ଥରେ ।"

ସୀନ୍‌ଙ୍କ ହାତ ତାଙ୍କ ଓଠତଳେ ଯାଇ ପଡ଼ୁଥିବାର ସିନ୍ଥିଆ ଅନୁଭବ କଲେ; ସିନ୍ଥିଆଙ୍କ ମୁହଁକୁ ତାଙ୍କ ଆଡ଼କୁ ବୁଲାଇ ଧରି ସୀନ୍ କହିଲେ, "ସିନ୍ଥିଆ ! ମୋର ହକ୍ ବିବାହିତା ପତ୍ନୀଙ୍କୁ ମୁଁ ଗେଲ କରୁଛି; ଏଥିରେ ବାଧା ଦେବ କିଏ ? ଆଗ କହ ମୋ' ପ୍ରତି ତୁମର ପ୍ରେମ ଅଛି ତ ? କହ—"

ନିଜ ମୁଣ୍ଡକୁ ତାଙ୍କ ହାତରୁ ଖସାଇବାକୁ ଚେଷ୍ଟା କରି ସିନ୍ଥିଆ କହିଲେ, "ଅଛି ତ, କହିବି କ'ଣ ? କିନ୍ତୁ ପ୍ରେମ ଅଛି ବୋଲି ଏମିତି କଣଟେ ହୋଇଗଲା ଯେ ।"

ସିନ୍ଥିଆଙ୍କୁ ଛାଡ଼ି ଦେଇ ସୀନ୍, ନିଜର କାନ୍ଧ ସଳଖ ଠିଆ ହେଲେ, କହିଲେ, "ଏଥିରୁ ଏଇ ହେଲା ଯେ, ମୁଁ ତୁମର ଯୋଗ୍ୟ ହେବାକୁ, ଭଲ ହେବାକୁ ଚେଷ୍ଟା କରିବି । ସିନ୍ଥିଆ, ମୁଁ ଖୁବ୍ ଚେଷ୍ଟା କରିବି, ଯଦିଓ ବେଳେବେଳେ ମୋର ମୂଳ ପ୍ରକୃତି ଆତ୍ମପ୍ରକାଶ କରିବ । ତଥାପି, ସିନ୍ଥିଆ ! ଆମେ ତିନହେଁ ବାପ, ମା ଓ ପୁଅ—ହୁଏତ ଦିନେ ପିଲାଙ୍କ ସଂଖ୍ୟା ବଢ଼ିପାରେ—ଆମେ ସମସ୍ତେ ଏକାଠି ହୋଇ ଠାଏ ରହିବା ଠିକ୍ ହେବ, ମନୁଷ୍ୟ ପ୍ରକୃତିର ଅନୁକୂଳ ହେବ । ତା' ନକରି ଏ ଯେଉଁ କଦର୍ଯ୍ୟ ଜୀବନ—ମୁଁ ଥିବି ଗୋଟାଏ ହୋଟେଲର ପ୍ରକୋଷ୍ଠରେ, ତୁମେ ଥିବ ଏଠି ମୋତେ ଛାଡ଼ି, ଓ ବିଚରା ଡେଭି ଆମ ଦୁହିଙ୍କ ସ୍ନେହରୁ ବଞ୍ଚିତ

ହୋଇ ଗୋଟାଏ କୁଣ୍ଡିର ସ୍ନେହ ପାଇବା ପାଇଁ ତା' ସାଙ୍ଗେ ଲଢ଼ୁଥିବ । ଛିଃ !"

"ଓହୋଃ, ସୀନ୍, ତମ କଥାରେ ମୋର ସବୁ ଆପତ୍ତି ଅଭିଯୋଗ ମିଟି ଯାଉଛି !"

"ମିଟି ଯାଉଛିଟି, ପ୍ରାଣ ମୋର ! ମୋ' ଆଡ଼କୁ ଚାହିଁ ଥରେ ସେଇଆ କହ ।"

ସିନ୍ଥିଆ କହିଲେ, "ଓହୋ, ସୀନ୍ ।" ଆଶ୍ଚର୍ଯ୍ୟରେ ସେ ସୀନ୍‌ଙ୍କ ମୁହଁକୁ ଚାହିଁଲେ । ତତ୍‌କ୍ଷଣାତ୍ କନ୍ତୁ ଫସ୍ କନ ହସି ଦେଇ କହିଲେ, "ଘାଟ ମହତ୍ ପୁରୁଷ ପରି ଠିଆ ହୋଇ, କମିଶ ବୋକାଙ୍କ ପରି ବୁଲୁବୁଲୁ କରି ମୋତେ ଚାହିଁଛ, ନଜେ ଦେଖନ୍ତ କି ଜାଣନ୍ତ ।"

ସୀନ୍ କହିଲେ, "ଭଲ କଥା । ମୋତେ ଚାହିଁଲେ ଯଦି ତୁମକୁ ହସ ମାଡ଼ିବ, ତେବେ ଚିରକାଳ ଏହିପରି ଠିଆ ହୋଇ ରହିବାକୁ ମୁଁ ପ୍ରସ୍ତୁତ—ମହତ୍ ହୁଏଁ ବା ମାତ ହୁଏ ।"

ଡେଭି ଆସି ଦୁହିଙ୍କ ସଙ୍ଗେ ଲାଗିଲା, "ବାପା ! ତୁମେ ପୁଣି ଆସିବଟି ? ମା ! ବାପା ଆସିବେ ଟି ? ସେ ମୋ'ର ଦରକାର ।"

ସିନ୍ଥିଆ କହିଲେ, "ହଁରେ ପୁଅ, ସେ ଆସିବେ । ଘରକୁ ଆସିବାରୁ ଆଜ ତାଙ୍କୁ ଗ୍ରେକହେଲା ପରି ମୋତେ ଲାଗୁନାହିଁ ।"

ସିନ୍ଥିଆ ଅଳ୍ପ ହସି ହସି ସୀନ୍‌ଙ୍କ ଆଡ଼କୁ ଚାହିଁଲା ବେଳକୁ, ତାଙ୍କ ଆଖିରେ ଆଖିଏ ଲେଖାଏଁ ଲୁହ । ସିନ୍ଥିଆ କାତର ହୋଇ କହିଲେ, "ପ୍ରେ କଣ, ସୀନ୍, ଛିଃ । ମୋ ଧନ ପରା, ଏମିତି କଣ—" ନଜର ରୁମାଲ ଖଣ୍ଡେ ବଢ଼େଇ ଦେଇ, "ହେଇଟି—"

ସୀନ୍ ଚୁମା ଚୁମା କହିଲେ, "ମୋତେ ଚୁମା ଦିଅ ।"

ସେ ଅବସ୍ଥାରେ ଚୁମ୍ବନ ଦେବା ମୁସ୍‌କିଲ୍ ବ୍ୟାପାର । ଡେଭି ସୀନ୍‌ଙ୍କର ବାଁ ଗୋଡ଼କୁ ଜାବୁଡ଼ି ଧରି ତାଙ୍କ କୋଳକୁ ଚଢ଼ିବାକୁ ଚେଷ୍ଟା କରୁଥାଏ । ତଥାପି ଦୁହେଁ ବହୁକ୍ଷଣ ଚୁମ୍ବନ ଦେଇ ରହିଲେ । ଶେଷରେ ସୀନ୍ କହିଲେ, "ବେଶ୍ ! ମନ ଉଶ୍ବାସ ହୋଇଗଲା ।" ନଜ ହାତ ଘଡ଼ିକୁ ଚାହିଁ ପୁଣି କହିଲେ, "ଆରେ ବାପ୍‌ରେ ! ସାଙ୍ଗେ ସାଙ୍ଗେ ନଗଲେ ଏଡ଼େ ସୁନ୍ଦର କାମଟି ବାଏଁ ବାଏଁ ଚାଲିଯିବ । ଡେଭି ! ତୋ'ପାଇଁ

ଗୋଟିଏ ଉପହାର ଆଣିଥିଲରେ ପୁଅ ! ଥାଉ, ମୁଁ ଆସେ । କାଲି ସକାଳେ ଦୁହେଁ ସାଙ୍ଗ ହୋଇ ତା'କୁ ଦେଖିବା ।"

ସୀନ୍ ସେଇ ମୁହୂର୍ତ୍ତରେ ଚାଲିଗଲେ ।

ଡେଭି ଆନନ୍ଦ ମନରେ କହି ଲାଗିଲା, "ବାପା, ନିଶ୍ଚୟ ଆସିବେ । ନହେଲେ ତ ସେ ବଦାସ୍ତୁ ବୋଲି କହିଥାନ୍ତେ, ଆଉ କ'ଣ କ'ଣ କହିଥାନ୍ତେ ।"

ଆନନ୍ଦ ଓ ଅଭିମାନର ଅଶ୍ରୁ ସିନ୍ଥିଆ ନିଜ ଆଖିରୁ ପୋଛିଲେ ; କହିଲେ, "ମୁଁ ଜାଣେ ଏଠାକୁ ଆସିବା ଆଗରୁ ବି ସେ ଆଜରାତିରେ ଫେରିବେ ବୋଲି ପାଞ୍ଚ କରି ଆସିଥିଲେ । ତାଙ୍କୁ ଅପାର ହୋଇ କଣ ଅଛି ? ତାଙ୍କ ଭାଗ୍ୟକୁ, ମିମି ଓ ଏଇ ଖଣ୍ଡିଆ କୁକୁରଛୁଆଟା ତାଙ୍କର ସାହା ହୋଇଗଲେ—ଧନ୍ୟ ତାଙ୍କ ଆସ୍ତ୍ରଲ୍ଲାଣ୍ଡୀୟ ଭାଗ୍ୟ ! ଅବଶ୍ୟ ମୋତେ ବଡ଼ ଏକୁଟିଆ ଲାଗୁଥିଲା; ସ୍ୱୀକାର କରିବାକୁ— । ମିମିର ମନ କ'ଣ ହେଉଥିବ ତା' ମଧ୍ୟ ଅଳ୍ପ ବହୁତେ ମୋତେ ଜଣା ପଡ଼ୁଛି । ପୁଣି ଆମ ପୁରୁଣା ସୁଖର ଦିନ ଫେରି ଆସିବ – ଭଲ ଯେତିକ, ମନ୍ଦ ସେତିକି – ହେଉ ପଛେ, ତାହା ଇ ଥିଲା ପ୍ରକୃତ ଜୀବନ – ଏବେ ଯାହା ଭୋଗୁଥିଲି—"

ସିନ୍ଥିଆ ବସି ପଡ଼ି, ଅଜାଡ଼ୁଆ ହୋଇ ଯାଇଥିବା ନିଜ ମୁଣ୍ଡବାଳ ସଜାଡ଼ିଲେ ।

ଡେଭି ତାଙ୍କ କଥା ଶୁଣିବାକୁ ନଥାଏ । ସେ ଦୁଆର ପାଖକୁ ଯାଇ ଗୋଟାଏ କ'ଣ ଧରିଥାଏ । ସେଇ ଛୁଣ୍ଡା କନାର କୁକୁର ଛୁଆ । କିନ୍ତୁ ଏଥର ତାକୁ ସେ ଧରିଥାଏ ବୁଢ଼ା ଓ ତର୍ଜନୀ ଆଙ୍ଗୁଠିରେ ; କହୁଥାଏ, "ଏ ଛୁଣ୍ଡା ମଇଳା ଜନ୍ତଟା ଆଉ ମୋର ଦରକାର ନାହିଁ ।

ଏହା କହି, ପାଖକୁ ଆସି, ଡେଭି କନା କୁକୁରଟା ବୋଉ କୋଡ଼ରେ ଥୋଇ ଦେଲା ।

ଡେଭି କହିଲା, "ବୋଉ ! ନମସ୍କାର ! ଯାଉଛି । କାଲି ସକାଳେ ବାପା ଓ ମୁଁ ସାଙ୍ଗହୋଇ ଆସି ତୋତେ ଭେଟିବୁ ।"

ସିନ୍ଥିଆ ବସିଥାନ୍ତି, ଡେଭି ତାଙ୍କ ପାଖରେ ଠିଆ ହୋଇଥାଏ ଯେ ତା' ମୁହଁ ସ୍ତ୍ରୀଙ୍କ ମୁହଁର ଉପରକୁ ଉଠିଥାଏ । ସିନ୍ଥିଆ ମୁହଁ ଟେକି ତା'କୁ

ଗୁହିଁଲେ, ତା' ଆଖି ଦୁଇଟି କେତେ ଗମ୍ଭୀର ! ସିନ୍ଥିଆ ବଣ୍ଣରଲେ, "ପନ୍ଦର ବର୍ଷ ହେଲେ ଯେମିତି ଦଶିବ, ଆଜ ସେଇପରି ଦଶିବାକୁ ଚେଷ୍ଟା କରୁଛୁ ;" ପଗ୍ଭରଲେ, "ଆରେ, ମୁଁ ଯାଇ ତୋତେ ଶୁଆଇ ଘୋଡ଼େଇ ଦେଇ ଆସିବ ? '

ତେଭ୍ ମୁଣ୍ଡ ହଲେଇ କହିଲା, "ନା, ନା, ଧନ୍ୟବାଦ—ମୁଁ ନିଜେ ସବୁ କର ପାରବ ।"

ତେଭ୍ ବଡ଼ ମଣିଷ ପର ଦୁଆର ଯାଏଁ ଗ୍ଭଲିଗଲା; ପୁଣି ଫେର ତାଙ୍କ ଆଡ଼କୁ ଗ୍ଭହିଁ କହିଲା, "ମା ! ଖ୍ରୀସ୍‌ମାସ୍ ତୁମର ଶୁଭଂକର ହେଉ ।"

ତେଭ୍ ଏକଥା ଏପର ବାଧିବାଧିଭାବେ କହିଲା ଯେ, ତାହା ଶୁଣି ସିନ୍ଥିଆ ପୁଣି ହସି ପକେଇଥାନ୍ତେ, କିନ୍ତୁ ସେତେବେଳକୁ ହସ ପରିବର୍ତ୍ତେ ଲୁହ ଆସି ତାଙ୍କ ଆଖିରେ ପୁଣି ଭର ଯାଇଥିଲା ।

ସିନ୍ଥିଆ ପୁଅକୁ କହିଲେ, "ଆମ ସମସ୍ତଙ୍କର ଖ୍ରୀସ୍‌ମାସ୍ ମଙ୍ଗଳ କରୁ ।"

ତେଭ୍ ମୁଣ୍ଡ ଟେକିକାଶ ଉପର ମହଲାକୁ ଏକୁଟିଆ ଗ୍ଭଲିଲା— ଜୀବନରେ ପ୍ରଥମ କର । ସିନ୍ଥିଆ ସୋଫା ଉପରେ ବସି ରହିଲେ, କୁକୁର ଛୁଆକୁ କୋଡ଼ରେ ଧର । ତେଭ୍ ଉପରଘରର ଝରକା ମେଲାଇବା ଶବ୍ଦକୁ କାନଡେରଥାନ୍ତି । ଏକୁଟିଆ ଝରକା ଫିଟେଇ ପାରବ, ନା ସାହାଯ୍ୟ କରିବାକୁ ଡାକିବ, କାନୋଇଥାନ୍ତି । ନା, ବିନା ସାହାଯ୍ୟରେ ସେ ଝରକା ଫିଟାଇଲା ।

ତା'ପରେ ସିନ୍ଥିଆ ଶୁଣିଲେ ମିମିକୁ, ତା'ର ବକିଲ ଆରମ୍ଭ ହୋଇଥାଏ—କୁଁ କୁଁ ହୋଇ ଗ୍ଭରଆଡ଼କୁ ଶୁଂଘୁଥାଏ—ଖୋଜୁଥାଏ ତା' ଛୁଆକୁ ।

ଖେଳଣାଟା ତା' ଆଡ଼କୁ ଫୋପାଡ଼ ଦେଇ ସିନ୍ଥିଆ କହିଲେ, "ଏଇ, ନେ । ଏଥର ପ୍ରେ ସବୁବେଳ ପାଇଁ ତୋ'ର—ଆଉ କେହି ସ୍ୱାକୁ ଖୋଜିବେ ନାହିଁ କି ତୋ'ଠାରୁ ଛଡ଼ାଇବେ ନାହିଁ ।"

ମିମି ଅତି ଆଦରରେ ଆସ୍ତେ ଆସ୍ତେ କନାମେଣ୍ଢାକ ଦାନ୍ତରେ ଧରିଲା ଓ ତା'କୁ ଧରି ତା' କୁଣକୁ ଗଲା !

ସିନ୍ଥିଆ ତା'କୁ ଶୁଣାଇ କହିଲେ, "ଆହା ବିଚରା, ତୋ'ର ଏତିକିମାତ୍ର ସମ୍ବଳ ଏଇଲାଗେ । ବୋଧହୁଏ ତୋ'ର ଏ ଅଭାବ ପୂରଣ ପାଇଁ ହେନେ ନା ହେନେ ବ୍ୟବସ୍ଥା କରିବାକୁ ପଡ଼ିବ, ମୋତେ ।"

ସତେ ଜବାବ୍‌ ଦେଲା ପରି ମିମି ତୀକ୍ଷ୍ଣ ସ୍ୱରରେ ଟିକିଏ ଭୁକି ଦେଲା ଓ ଛୁଆକୁ କୋଡ଼ରେ ପୂରାଇ, ଡେକ ମାରି ଶୋଇ ପଡ଼ିଲା ।

ସୋଫା ଉପରେ ବସି ସିନ୍ଥିଆ ସିଲେଇ କାମରେ ଲାଗିଲେ । ଏଇ ଯେ ଆନନ୍ଦ ! ସିନ୍ଥିଆଙ୍କର ବର୍ତ୍ତମାନ ଅମ୍ଳାନ ଆନନ୍ଦ । ଗତ କେତେ ହପ୍ତା ହେଲା ତାଙ୍କ ମନରେ ସୁଖ ନଥିଲା । ମନ ଆନମାନ କରିବାକୁ ସେ ମନରେ କ୍ରୋଧକୁ ସ୍ଥାନ ଦେଇଥିଲେ, ଖାଲି ବସିରହିଲେ ମାଡ଼ି ପଡ଼ିବାରୁ ଘୃଣା କରି ଧରିଥିଲେ, କିନ୍ତୁ ମନ ବୁଝିନଥିଲା । ପ୍ରେମର ଆନନ୍ଦ ଅନ୍ୟ କେଉଁଠିରୁ ମିଳିବ କୁଆଡ଼ୁ ? ଖ୍ରୀସ୍‌ମାସ୍‌ ଗଛ ଆଡ଼କୁ ଚାହିଁଲେ, ଆଲୁଅରେ ଜଳୁଛି । ଏତେଗୁଡ଼ାଏ ବିଜୁଳିର ଅପବ୍ୟୟ—ଲିଭେଇ ଦେଲେ ହୁଅନ୍ତା ନାହିଁ ? ଇଲେକ୍‌ଟ୍ରିକ୍‌ ବିଲ୍‌—ନାଃ, ଆଜି ଆଉ ଖର୍ଚ୍ଚକୁ ଚାହିଁବାକୁ ହେବନାହିଁ । ଯେତେ ଖର୍ଚ୍ଚ ହେବ ହେଉ ପଛେ, ଆଜି—ନା, ଆଜିଠାରୁ ସବୁ ଖ୍ରୀସ୍‌ମାସ୍‌ରେ—ସୀନ୍‌ ଫେରିଲାବେଳକୁ ଖ୍ରୀସ୍‌ମାସ ଆଲୋକ ଘରକୁ ଆଲୋକିତ କରୁଥାଉ ।

— — —

# ପ୍ରଥମ ମିଳନର ବେସୁରା ରାଗିଣୀ

ନାଇଗେରା ଜଳପ୍ରପାତର ପାଦଦେଶରେ ଦୁହେଁ ଠିଆ ହୋଇଥାନ୍ତି —ନବବିବାହିତ ପତି ପତ୍ନୀ । ଦୁହେଁଯାକଙ୍କର ପ୍ରଥମ ଯୌବନ— ଯୁବତୀଟିକୁ ବେଶ୍ ମାନୁଥାଏ, ମାଳିରଙ୍ଗର ପୋଷାକ ସାଙ୍ଗକୁ ରକ୍ତାଭ ବ୍ଲାଉସ୍ ଓ ଈଷତ୍ ନାଲିରଙ୍ଗର ଫୁଲ ଖୋସା ହୋଇଥିବା ଟୋପି । ଯୁବକ ପିନ୍ଧିଥାନ୍ତି ଗାଢ଼ ନେଳିରଙ୍ଗ ଗଫ୍ ସରୁ ସୂତାର ପୋଷାକ ; ଦିଶୁଥାନ୍ତି ଖୁବ୍ ସୁନ୍ଦର । ହୋଟେଲ-କୋଠରୀରେ ଥିବା ପୋଷାକ-ଆଲମାରୀରେ ସ୍ୱାମୀ, ତାଙ୍କ ନୂଆ ପୋଷାକକୁ ରାତିରେ ସଯତ୍ନେ ଟାଙ୍ଗି ରଖିବେ, ଏ ବିଷୟରେ ପତ୍ନୀଙ୍କର ଖରି କଡ଼ା ନଜର । ପ୍ରଥମ ଦୁଇ ରାତି ସେ, ସ୍ୱାମୀଙ୍କ ପୋଷାକକୁ ନିଜେ ନେଇ ଟାଙ୍ଗିଥିଲେ । କିନ୍ତୁ ଗତ ରାତିରେ —ତାଙ୍କ ବିବାହର ତୃତୀୟ ରାତି—ସେ ଚେତାଇ ଦେଲେ, ସ୍ୱାମୀ ନିଜ ପୋଷାକକୁ ନିଜେ ନେଇ ସାଇତନ୍ତୁ ।

ସେ କହିଲେ, "ବିଲ୍, ଦେହରୁ ପୋଷାକ କାଢ଼ିଲାବେଳେ ତାକୁ ନେଇ ଆଲମାରୀରେ ଟାଙ୍ଗି ଦେଉଥିବ ।"

ବିଲ୍ ବିସ୍ମିତ ନୟନରେ ପତ୍ନୀଙ୍କ ଆଡ଼କୁ ଚାହିଁ କହିଲେ, "କାହିଁକି ଜେନ ? ପୋଷାକ ଏ ଚଉକି ଉପରେ ପଡ଼ିରହିଲେ ତ କ୍ଷତି କିଛି ନାହିଁ !"

ଜେନ ଗେଲେଇ ହେଲାପରି ମଧୁର ସ୍ୱରରେ, ଅଥଚ ଦୃଢ଼ ଭାବରେ, ତାଙ୍କ ଆଡ଼କୁ ଚାହିଁ ଜବାବ ଦେଲେ, "ଏଡ଼େ ସୁନ୍ଦର ପୋଷାକ-ଆଲମାରୀ ଥାଉ ଥାଉ ତା'ପରି ପୋଷାକ ଏମିତି ପଡ଼ିବ କାହିଁକି ?"

ବିଲ୍ ମାନିଗଲେ, କହିଲେ, "ଆଚ୍ଛା ହଉ, ତମର ପୋଷାକ ପାଖରେ ମୋ ପୋଷାକ ଟାଙ୍ଗି ଦେଉଛି । ହେଇଟି, ଦୁଇଟି ଯାକ କେମିତି ଶୋଭା ଦିଶୁଛନ୍ତି । ଦୁଇଟିଯାକ ପୋଷାକ ତ ଯେମିତିକେ ହେବାର କଥା ; ତାଛଡ଼ା କ'ଣ ?"

ବିଲ୍‌ଙ୍କର ଚୁମା ସେ ଗ୍ରହଣ କଲେ, କିନ୍ତୁ ମନେ ମନେ ବିଚାରିଲେ, ଏଠାରୁ ଫେରି ନିଜ ଘରେ ଥୟ ହୋଇ ରହିବା ପରେ, ସେ ବିଲ୍‌ଙ୍କୁ କହିବେ କଥାକଥାକେ 'ନାଇଁ କ'ଣ' କହିବା ଅଭ୍ୟାସ ଛାଡ଼ିବାକୁ। ସ୍ୱାମୀଙ୍କୁ କୌଣସି ବିଷୟରେ ଲାଗିବାକୁ ତରତର ନହୋଇ ସହି ସମ୍ଭାଳି ଚଳିବାକୁ ତାଙ୍କ ମା' ଆସିବାବେଳେ ସାବଧାନ କରିଥାନ୍ତି ପରା !

ମା' କହିଥାନ୍ତି, "ଜେନ୍, ବିଲ୍‌ଙ୍କର କୌଣସି ଅଭ୍ୟାସ ବଦଳାଇବାକୁ ତରତର ହେବୁ ନାହିଁ। ତୁ ତାଙ୍କୁ ଲାଗୁଛୁ ବୋଲି ସେ ଯଦି ଜାଣିନେବେ, ତେବେ ନିଜ ଢଙ୍ଗ କେବେ ବଦଳାଇବେ ନାହିଁ। ସବୁ ପୁରୁଷଙ୍କର ଏକା ଖୋଇ।"—

ଆଜି ଏଠି, ନାଇଜେରର ଭୀଷଣ ଜଳ ପ୍ରବାହ ତାଙ୍କ ପାଖ ଦେଇ ତଳକୁ ଘୋର ବେଗରେ ବହି ଯାଉଥିବା ବେଳେ, ସେ ତାଙ୍କ ସ୍ୱାମୀଙ୍କ ଆଡ଼କୁ ଚାହିଁଲେ। ତାଙ୍କ ତୁଳନାରେ ସେ କେଡ଼େ ବକଟେ ; ବିଲ୍ ଯେ ଛ'ଫୁଟ ଉଚ୍ଚ ମଣିଷ ; ସେ ତାଙ୍କ କାନ୍ଧ ପର୍ଯ୍ୟନ୍ତ ବି ହୁଅନ୍ତି ନାହିଁ। ସେ ବିଲ୍‌ଙ୍କ ଆଡ଼କୁ ଯେତେବେଳେ ଏମିତି ଚାହାନ୍ତି, ବିଲ୍ ତାଙ୍କର ମନ କଥା ଜାଣି ପାରି, ତାଙ୍କ ଆଡକୁ ଆମୋଦରେ ଚାହିଁ ଟିକିଏ ହସି ଦିଅନ୍ତି। ବିଲ୍‌ଙ୍କର ହସ ବଡ଼ ସୁନ୍ଦର ; ସେଥିରେ ଆବେଗ ଓ ଆନ୍ତରିକତା ପୂରି ରହିଥାଏ। ଆଜକୁ ବର୍ଷକ ତଳେ, 'ଷ୍ଟୁ ବେରି' କୋଳି ପାଚିବା ସମୟରେ, ଗିର୍ଜାରେ ହେଉଥିବା ଭୋଜିରେ ଯେତେବେଳେ ସେ ଦୁହିଙ୍କର ପ୍ରଥମ ସାକ୍ଷାତ ହେଲା, ସେତେବେଳେ ବିଲ୍‌ଙ୍କର ଏଇ ହସ ଓ ଚାହାଣୀ ତାଙ୍କ ମନକୁ ସର୍ବପ୍ରଥମେ ଆକୃଷ୍ଟ କରିଥିଲା। କିନ୍ତୁ ଆଜି ତ କାହିଁ ବିଲ୍ ତାଙ୍କ ଆଡ଼କୁ ସେମିତି ଚାହିଁଲେ ନାହିଁ ! ତାଙ୍କର ଦୃଷ୍ଟି ପ୍ରପାତର ଜଳରାଶି ଉପରେ ଏକାବେଳକେ ଲାଗି ଯାଇଛି। ଭୀଷଣ ଗର୍ଜନ ଭିତରେ ତାଙ୍କୁ ଡାକିଲେ ବି ଶୁଣିବା ସମ୍ଭାବନା ନାହିଁ। ପ୍ରପାତର ଚୋଟ୍‌ରେ ପାଦତଳେ ଭୂଇଁ ଦୁଲୁକୁଥାଏ। ଜେନଙ୍କ ବାଁ ହାତ ତାଙ୍କର ଡାହାଣ ହାତରେ ଛନ୍ଦି ହୋଇଥାଏ। ଜେନ୍, ବିଲ୍‌ଙ୍କ ଡାହାଣ ହାତର ବୁଢ଼ା ଆଙ୍ଗୁଠିକୁ ଟିକିଏ ଚପିଲେ ; ତଥାପି ବିଲ୍ ତାଙ୍କ ଆଡ଼କୁ ଟିକିଏ ମୁହଁ ଫେରାଇଲେ ନାହିଁ। ଜେନ ତାଙ୍କ ଆଡ଼କୁ ଝୁଙ୍କି ପଡ଼ି ତାଙ୍କ ମୁହଁକୁ ଚାହିଁ ରହିଲେ, ତଥାପି ବିଲ୍‌ଙ୍କ ଦୃଷ୍ଟି ତାଙ୍କ ଆଡ଼କୁ ପଡ଼ିଲାନାହିଁ। ବିଲ୍‌ଙ୍କ ମାଳଚକ୍ଷୁ ବିସ୍ଫାରିତ

ହୋଇ ପ୍ରପାତର ଜଳରାଶିକୁ ପିଇ ଯାଉଥାଏ । ବଲ୍ କଣ ପ୍ରପାତର ଭୀଷଣ ଦୃଶ୍ୟ ଦେଖି ଆତଙ୍କିତ ହୋଇଯାଇଛନ୍ତି ? ବଲ୍‌ଙ୍କ ମନରେ ପୁଣି ଆତଙ୍କ ! ପଅରଦିନ, ସେମାନେ ଆଣ୍ଡିରନ୍‌ଡ୍ୟାକ୍‌ସ ପର୍ବତର ତଳକୁ ଗଡ଼ିଆସୁଥାନ୍ତି, ଅଧବାଟରେ ତାଙ୍କ ପୁରୁଣା ଗାଡ଼ିର ବ୍ରେକ୍ ଖରାପ ହୋଇଗଲା ; ସେତେବେଳେ ତ ସେ କଣ୍ଟିନ୍‌ମାର୍ ବିବ୍ରତ ବା ଆତଙ୍କିତ ହୋଇ ନଥିଲେ; ଆଜି କୂଳରେ ଠିଆ ହୋଇ ଜଳସ୍ରୋତଟା ଦେଖି ଆତଙ୍କିତ ହେବେ ! ଅସଂଭବ ।

ବିନା ବ୍ରେକ୍‌ରେ ପର୍ବତରୁ ଗଡ଼ି ଆସିଲା ବେଳେ ସେ ଚିତ୍କାର କରି କହିଥିଲେ, "ଟାଣ କରି ଧରି ଥା'ନ୍ତୁ ଝୋକି ! ଭଲ ଗଡ଼ଗଡ଼ାଟେ ଖାଇଲା ପରି ଲାଗୁଛି ।"

ସେ ଜକଟ ମକଟ କରି ତାଙ୍କୁ ଧରିଥାନ୍ତି ; ବଲ୍ ନାରାପଦରେ ଗାଡ଼ିକୁ ଆଣି ତଳେ ପହଞ୍ଚାଇଲେ ; ପର୍ବତ ତଳେ ଆସି ପହଞ୍ଚିବାରେ ଏତିକମାତ୍ର କହିଲେ, "ଘରର ଦାମ ବାବଦକୁ କମ୍ପାନୀଙ୍କୁ ଦାଖଲ ନକରି ନୂଆ ଗାଡ଼ିଟାଏ କିଣିଥିଲେ ବୋଧହୁଏ ଭଲ ହୋଇଥାନ୍ତା ।"

ବୁଢ଼ା ଆଙ୍ଗୁଠି ଚାପିବାରେ ବଲ୍ ନ ରୁହିଁବାରୁ ସେ ତାଙ୍କ କୋଟ୍‌ର ହାତକୁ ଜୋର୍‌ସେ ଭିଡ଼ିଲେ , ବଲ୍ ବିସ୍ମିତ ହୋଇ ତାଙ୍କ ଆଡ଼କୁ ରୁହିଁଲେ । ଜେନ ଚେଞ୍ଜ ଯାଇ ସଡ଼କ ଆଡ଼କୁ ହାତ ଦେଖାଇଲେ । ବଲ୍ କିଛି ଜାଣି ନପାରି ଚକିତ ହୋଇ ରୁହିଁବାରେ, ଜେନ ମୁହଁ ବଙ୍କେଇ କହିଲେ, "ମୁଁ ଯାଉଛି ।"

କହିବା ମାତ୍ରେ ଜେନ ଚାଲିଲେ ; ବନ୍ଧ ପାର ହୋଇ ସଡ଼କରେ ଯାଇ ପହଞ୍ଚିଲେ, ସଡ଼କ-କର ରେଲିଂକୁ ଧରି ଠିଆ ହୋଇଥିବା ମଣିଷଙ୍କ ଭିତରେ । ସେତେବେଳଯାଏଁ ସେ ବଲ୍‌ଙ୍କ ଆଡ଼କୁ ଥରେ ବି ଫେରି ରୁହିଁ ନଥିଲେ । ସଡ଼କରେ ପହଞ୍ଚି ଫେରି ରୁହିଁଲା ବେଳକୁ ସେ ଦେଖିଲେ, ବଲ୍ ନଦୀକୂଳର ପଥର ଡେଇଁ ଡେଇଁ ତାଙ୍କ ଆଡ଼କୁ ଆସୁଛନ୍ତି ।

ଅଣନିଶ୍ୱାସୀ ହୋଇ ଜେନଙ୍କ ପାଖରେ ପହଞ୍ଚି ବଲ୍ ପଚାରିଲେ, "ତମର ହୋଇଚି କ'ଣ ?"

ଜେନ କହିଲେ, "କାଇଁ, କିଛି ନାଇଁତ ! ମୋତେ ଏ ଦୃଶ୍ୟ ସୁଖ ଲାଗୁ ନାହିଁ ।"

"ନାଇଜେରା ଜଳ ପ୍ରପାତ ! ସେ ପୁଣି ତୁମକୁ ଖରାପ ଲାଗୁଛି !"

"ଏତିକ ଗୁଡ଼େ ପାଣି—"

"କିନ୍ତୁ, ପ୍ରିୟେ ! ଏ ଯେ ବିରାଟ୍ ଓ ମହାନ୍ ; ଭୀଷଣ କିନ୍ତୁ ସୁନ୍ଦର !"

"ମୋତେ ତ ସୁନ୍ଦର ଦିଶୁନାହିଁ—"

"କିନ୍ତୁ ପ୍ରିୟେ ! ମୋତେ—"

"ତମର ଯେବେ ମନ, ତୁମେ ଥାଅ । ମୁଁ ହୋଟେଲକୁ ଫେରି ଯାଉଛି ।" ଜେନଙ୍କୁ କାନ୍ଦ ମାଡ଼ୁଥାଏ ; କାନ୍ଦ ମାଡ଼ିବାର ଦେଖି ସେ ନିଜେ ଆଶ୍ଚର୍ଯ୍ୟ ହେଉଥାନ୍ତି । ଏଡ଼େ ବଡ଼ ପ୍ରପାତଟା ଦେଖି ଖରାପ ଲାଗୁଛି ବୋଲି ହଠାତ୍ କାନ୍ଦ ମାଡ଼ୁଛି କାହିଁକି ? ପ୍ରଚଣ୍ଡ ବେଗରେ ଏତେ ଗୁଡ଼ାଏ ଜଳର ଗତି, ଏଡ଼େ ଭୟାନକ ଶବ୍ଦ—ଏଇଥିରେ ତାଙ୍କ ମନ ଏକାବେଳକେ ଚହଲି ଯାଇଥାଏ ।

ସେ ପୁଣି ହୋଟେଲ୍ ଆଡ଼କୁ ମୁହଁ ବୁଲାଇଲେ ; ମନ ଥୟ ହେଉ ନଥାଏ—ଏତିକିବେଳେ ତାଙ୍କର ଦୃଷ୍ଟି ପଡ଼ିଲା, ଜଣେ ଅଧା-ବୟସୀ ମହିଳାଙ୍କ ଉପରେ । ସେ ପିନ୍ଧିଥାନ୍ତି ସାଧା ସୁନ୍ଦର ଧଳା ପୋଷାକଟିଏ ; ଟିକ୍ ହସୁନଥାନ୍ତି, କିନ୍ତୁ ମୁହଁଟି ହସହସ ଦିଶୁଥାଏ ; ତାଙ୍କ ଧୂଆଁଳିଆ ଆଖି ଦୁଇଟିରେ ଅନୁକଂପା ଫୁଟି ଦିଶୁଥାଏ ଓ ତାଙ୍କର ଅଧର ଦୁଇଟିର କୋଣଗୁଡ଼ିକ ମନ୍ଦମନ୍ଦ କମ୍ପୁଥାଏ ।

ମହିଳାଟି କହିଲେ, "ଏହି ପ୍ରପାତଟା ମଣିଷର ମନକୁ ବିହ୍ୱଳିତ କରିପକାଏ । ମୋ'ର ମନେ ପଡ଼ୁଛି, ବହୁବର୍ଷ ପୂର୍ବେ ମୋ' ବିବାହର ମଧୁଚନ୍ଦ୍ରରେ ମୁଁ ଯେତେବେଳେ ଏଠାକୁ ଆସିଥିଲି, ସେତେବେଳେ ମୁଁ ବି ଏହିପରି ବିହ୍ୱଳିତ ହୋଇଯାଇଥିଲି ।"

ଜେନ ପଚାରିଲେ, "ଏବେ କ'ଣ ସେ ଭାବ ଗଲାଣି ? ଏବେ କ'ଣ ଆପଣ ଏ ପ୍ରପାତକୁ ସୁଖ ପାଉଛନ୍ତି ?"

ମହିଳା ସ୍ୱୀକାର କଲେ, "ନା, କିନ୍ତୁ ଆଉ ପୂର୍ବପରି ଡର ମାଡ଼ୁନାହିଁ । ସତ୍ୟ କଥା ହୋଇ ଆସିଲାବେଳେ ମୋତେ ବଡ଼ ଡର ଲାଗୁଥିଲା ସତେ ।"

—ଜେନ କହିଲେ, "ମୋତେ ବି ବୋଧହୁଏ, ଡର ଲାଗୁଛି ।"

ଜେନ ଏହା କହି ହୋଟେଲକୁ ଗଲେ । ତାଙ୍କର ଧାରଣା ଥାଏ, ବିଲ୍ ତାଙ୍କ ପଛେ ପଛେ ଆସୁଛନ୍ତି । ଅଧବାଟରେ ପଛକୁ ଫେରି ଯେତେବେଳେ ସେ ଦେଖିଲେ ଯେ, ବିଲ୍ ପଛରେ ନାହାନ୍ତି,ତାଙ୍କୁ କେମିତି କେମିତି ଲାଗିଲା । ତଥାପି ସେ ହୋଟେଲ ଆଡ଼େ ଗ୍ଭଲିଲେ, ଓ ହୋଟେଲ ବାରଣ୍ଡାରେ ପଡ଼ିଥିବା ଗୋଟିଏ ଦୋହଲ ଚୌକିରେ ବିଶ୍ରାମ କରିବାକୁ ଟିକଏ ବସିଲେ । ରାସ୍ତା ଆଡ଼କୁ ଗ୍ଭହିଁଲେ, ବିଲ୍ ଦିଶୁନଥାନ୍ତି । ସେ ତାହା ହେଲେ ତାଙ୍କ ପଛରେ ଆସି ନାହାନ୍ତି ! ବର୍ତ୍ତମାନ ଜେନ କରନ୍ତି କ'ଣ ? ତାଙ୍କର ମନର ଭାବ ବୁଝି ବିଲ୍ ଯଦି ତାଙ୍କ ପାଖକୁ ନ ଆସିଲେ, ସେ କେବେ ଫେରିବେ କାହିଁକି, ତାଙ୍କୁ ଖୋଜିବାକୁ ? ଜେନ ଚଉକିରୁ ଉଠିଲେ ; ନିଜର କ୍ଷୁଦ୍ର ଶରୀରକୁ ଖୁବ୍ ସଳଖି ହୋଟେଲ ବାରଣ୍ଡାରେ ଗ୍ଭଲିଲେ ସିଡ଼ିପାଖକୁ ଓ ସିଡ଼ିରେ ଉପର ମହଲାକୁ ଉଠି ତାଙ୍କ କୋଠରି ଆଡ଼କୁ ଗଲେ । ହୋଟେଲ ବାରଣ୍ଡାଟା ଏଡ଼େ ପ୍ରଶସ୍ତ ଓ ଲମ୍ବା, କିନ୍ତୁ ଜଣେ ବି ମଣିଷ ନଥାନ୍ତି । ବ୍ୟସ୍ତ ନହୋଇ ଜେନ ଦୃଢ଼ ପଦକ୍ଷେପରେ ଅଗ୍ରସର ହେଲେ ; ଦରି ବିଛା ନହୋଇଥିବା ଟାଇଲ୍-ବାରଣ୍ଡାରେ ତାଙ୍କ ଜୋତା ଠକ୍ଠକ୍ ଶବ୍ଦ କରୁଥାଏ । ତାଙ୍କ କୋଠରି ଦୁଆର ମୁହଁରେ ଠିଆ ହୋଇ ସେ ବ୍ୟାଗ୍‌ରୁ ଗ୍ଭବି ବାହାର କଲେ । ଜେନ ଇତିମଧ୍ୟରେ ଜାଣି ସାରିଥାନ୍ତି ଯେ, ବିଲ୍ ପକେଟରେ ଯାହା ରଖନ୍ତି ତାହା ହଜାଇ ଦିଅନ୍ତି ; ତେଣୁ ଦୁହେଁ ମସୁଧା କରି ସ୍ଥିର କରିଥାନ୍ତି, ଘରର ଗ୍ଭବି ରହିବ ଜେନଙ୍କ ପାଖେ । ସେ ଦୁଆର ଫିଟାଇ ଭିତରେ ପଶିଲେ ଓ ଭିତରପଟୁ ଦୁଆର କଳ ଗ୍ଭବି ଲଗାଇଦେଲେ । ଏ କୋଠରିଟି ବେଶ୍ ଆରାମଦାୟକ ; ଜେନଙ୍କର ଅଧିକ ଖୁସୀ ହେବାର କାରଣ, ଏହାର ଝରକାଗୁଡ଼ିକ ଜଳପ୍ରପାତର ବିପରୀତ ଦିଗକୁ ମେଲାଛି । ସେହି କାରଣରୁ ଏ କୋଠରିର ଭଡ଼ା ବି ଶସ୍ତା । ବିଲ୍ କିନ୍ତୁ ଗ୍ଭହୁଥିଲେ, ଜଳପ୍ରପାତଆଡ଼କୁ ଝରକା ଥିବା ଗୋଟିଏ କୋଠରି ନେଇଥାନ୍ତେ ।

ଜେନ ସେଥିରେ ପ୍ରତିବାଦ କରିବାରୁ ବିଲ୍ ଅଭିଯୋଗ କରିଥିଲେ, "ଛିଃ, ପ୍ରିୟେ, ଆମ ବିବାହର ମଧୁରାତରେ ମୋ ଇଚ୍ଛାର ଏପରି ବିରୋଧ କରୁଛ !"

ଜେନ ଜବାବ ଦେଇଥିଲେ, "ବଲ୍, ମୋତେ ଏ ପ୍ରପାତର ଗର୍ଜନ ସୁଖ ଲାଗୁନାହିଁ । ଏ ଗର୍ଜନ ଶୁଣିଲେ ରାତରେ ମୋତେ ନିଦ ହେବ ନାହିଁ ।"

ବଲ୍ ତାଙ୍କ କଥା ଶୁଣି ହସିଦେଲେ ; ବଡ଼ ହସକୁରା ମଣିଷ ସେ ; କଥାକଥାକେ ହସ । ହସି ହସି ପଚାରିଥିଲେ, "ବରଂ ଆଜି ରାତି ତମାମ ତୁମେ ଶୋଇବ ?"

ସରଳ ଭାବରେ ଜେନି ଜବାବ୍ ଦେଇ ପକାଇଲେ, "ଶୋଇବ ନାଇ କାହିଁକି ?"—ଏକଥା ଶୁଣି ବଲ୍‌ଙ୍କ ନୀଳଚକ୍ଷୁରେ ଯେଉଁ ଦୁଷ୍ଟାମି ଫୁଟି ଉଠିଲା ତାହା ଦେଖି ଜେନଙ୍କ ଗଣ୍ଡଦେଶ ଲାଜରେ ରଙ୍ଗ ହୋଇଗଲା । ତା'ପରେ ସେ ବଲ୍‌ଙ୍କ ଆଡ଼କୁ ନିଜର କହୁଣୀ ଦେଖାଇ, ବଥା ଉଠୁଁ ରାଜ ଯୁଦ୍ଧ କରିବାର ଅଭିନୟ କରିଥିଲେ । ବଲ୍ ଏତେ ବଡ଼, ସେ ତାଙ୍କ ଆଗରେ ଏତେ ଛୋଟ ! ସବୁଥର ପରି ଏଥର ବି କୃତ୍ରିମ ଯୁଦ୍ଧର ଅଭିନୟ ଶେଷରେ ବଲ୍ ତାଙ୍କୁ କୋଳରେ ଜାକି ଦେଲେ ଓ ଉଭୟେ ଉଭୟଙ୍କ ଅଧରରେ ଆଙ୍କିଦେଲେ ଚୁମ୍ବନ । ଆଗରୁ ଏ ଭଳି ଚୁମ୍ବନ ସେ ଦୁହେଁ ଆଉ କେବେ ଦେଇନଥିଲେ । ଏ ଚୁମ୍ବନ ବିବାହ ପରର ପ୍ରଥମ ଚୁମ୍ବନ । ଏଥିରେ ଆଉ ସଙ୍କୋଚର ଅବକାଶ ନଥିଲା । ଏହାପରେ ବଲ୍ ଆରାମ ଚଉକିରେ ବସିଥିଲେ, ଜେନିଙ୍କୁ କୋଳରେ ଧରି । କଥା ପଦେ ନାହିଁ ଏଇପରି କେତେବେଳ ବସିବା ପରେ ଜେନି ନିଜ ଗଣ୍ଡ ଓଦା ଲାଗିବାର ଅନୁଭବ କରି ବିସ୍ମୟରେ ଉଠିପଡ଼ି ଚାହିଁଲେ—ବଲ୍‌ଙ୍କ ଆଖି ଦୁଇଟିରେ ଲୁହ ଭରି ଯାଇଛି ।

ଜେନ ପଚାରିଲେ, "ବଲ୍, ଏ କ'ଣ ?"

ବଲ୍ ପୁଣି ହସିବାକୁ ଚେଷ୍ଟା କରି କହିଲେ, "ମୁଁ ଗୋଟାଏ ନିପଟ ବୋକା । ବର୍ତ୍ତମାନ ମୁଁ ପୂର୍ଣ୍ଣ ଆନନ୍ଦ ଅନୁଭବ କରୁଛି । ଜେନ ! ଏଥର ଏଣିକି ମୁଁ ତୁମର ଉପଯୁକ୍ତ ସ୍ୱାମୀ ହେବାକୁ ଚେଷ୍ଟା କରିବି ।"

ଜେନ ପ୍ରତିବାଦ କରିଥିଲେ, "ଉପଯୁକ୍ତ ତ ହେଇଚ, ଆଉ ହେବ କ'ଣ ?" ତା'ପରେ ସେ ତାଙ୍କର କ୍ଷୁଦ୍ର ଜରିକାମକରା ରୁମାଲଟି, ଯେଉଁ ନୀଳ ପୋଷାକ ପିନ୍ଧି ବାପଘରୁ ଆସିଥିଲେ ତା'ର ପୁକେଟରୁ

ବାହାରକରି, ବିଲ୍‌ଙ୍କ ଆଖିର ଲୁହ ପୋଛି ପକାଇଥିଲେ ଓ ପ୍ରେମାର୍ଦ୍ର ସ୍ୱରରେ ତାଙ୍କୁ ଭର୍ତ୍ସନା କରି କହିଥିଲେ, "ବିଲ୍, ଏମିତି ପିଲାଙ୍କ ପରି କ'ଣ ହେଉଛ ମ ? ସଂସାରରେ ତୁମଠାରୁ ବଳି ଯୋଗ୍ୟ ସ୍ୱାମୀ ଆଉ କିଏ ଅଛି ଯେ, ମନଦୁଃଖ କରୁଛ ! ଆମେ ବର୍ତ୍ତମାନ ନିର୍ମଳ ସୁଖ ଭୋଗ କରୁଛେ ଓ ଚିରକାଳ ଏଇମିତି ଭୋଗ କରୁଥିବା ।"

ବିଲ୍ ଉତ୍ତର ଦେଇଥିଲେ,"ପ୍ରିୟତମେ, ଯେତେ ଶୋଇବାକୁ ମନ, ତୁମେ ଶୁଅ, ମୁଁ ଆଦୌ ବାଧା ଦେବି ନାହିଁ । ମୁଁ ଖାଲି ଗେଲରେ ସେମିତି ରହିଥିଲି ସିନା । ତୁମର ଯାହା ଇଚ୍ଛା, ସେଥିରେ ମୁଁ ଟିକିଏ ବି ଆପତ୍ତି କରିବି ନାହିଁ ।"

କ'ଣ ବିଗୃହି ବିଲ୍ ଏପରି କହିଲେ ସେତେବେଳେ ଜେନ ଠିକଣା କରିପାରି ନଥିଲେ । ପୂର୍ବଗତ ବେଳ ଯାଇଛି; ବର୍ତ୍ତମାନ ସେ ଦୁହେଁ ବିବାହିତ ଦମ୍ପତି, ନିଭୃତରେ ଏକାନ୍ତ ଜୀବନ ଆରମ୍ଭ କରିଛନ୍ତି— ଏତେବେଳେ ସେମାନଙ୍କ କଥାବାର୍ତ୍ତାର ପ୍ରତ୍ୟେକ କଥାରେ ଗୋଟାଏ ଗୂଢ଼ ଅର୍ଥ ରହିଗଲା ପରି ଲାଗୁଛି । ଆଜି ଯେଉଁ ଏକାନ୍ତ ଜୀବନ ସମ୍ଭବ ହୋଇଛି, ତାହା ପାଇବା ପାଇଁ ସେ ଦୁହେଁ କେତେ ଚେଷ୍ଟା ନକରି-ଛନ୍ତି ? ପ୍ରେମ ସ୍ରୋତରେ ଦୁହେଁ ପରସ୍ପରର ନିକଟକୁ ଆସିବା ପାଇଁ କେତେ ଉଦ୍ୟମ ନ କରିଛନ୍ତି ? ଉଦ୍ୟମ ସାର୍ଥକ ହେଲା ପରେ, ତାଙ୍କ ଦୁହିଁଙ୍କ ଭିତରେ ସମସ୍ତ ବ୍ୟବଧାନ ଦୂର ହେଲା ପରେ, ସ୍ପେ କ ବିଡ଼ମ୍ବନା ! ଏତେବେଳେ ପରସ୍ପର ସଙ୍ଗେ କିମିତି ଚଳିବାକୁ ହେବ ଜାଣି ହେଉନାହିଁ କାହିଁକି ? ଏହିପରି ଚିନ୍ତା କରି ଜେନ ବିଲ୍‌ଙ୍କ ପାଖରୁ ଉଠିଯାଇ ଝରକା ପାଖକୁ ଯାଇଥିଲେ ଓ ଝରକାବାଟେ ବାହାରର ଦୃଶ୍ୟ ଉପରେ ଆଖି ଖେଳାଇଥିଲେ । ମିଳନ ମୁହୂର୍ତ୍ତରେ ବେସୁର ରାଗିଣୀ ଏଇପରି ଆରମ୍ଭ ହୋଇଥିଲା । ଯାହା ହେଉ, ତହିଁ ଆରଦିନ ସକାଳକୁ ମନ ସଫା ହୋଇ ଯାଇଥିଲା ଓ ଜେନ ପରିଷ୍କାର ଅନୁଭବ କରିଥିଲେ ଯେ, ବୈବାହିକ ଜୀବନକୁ ଉପଭୋଗ କରିବାକୁ ସେ ନିଶ୍ଚୟ ସମର୍ଥ ହେବେ । ହୁଏତ ଏହି ଅପରିଚିତ ହୋଟେଲରେ ସେ ସାମର୍ଥ୍ୟ ସମ୍ପୂର୍ଣ୍ଣ-ରୂପେ ଆସିବା ସମ୍ଭବ ନ ହୋଇପାରେ ।

ଏ ଘଟଣାର ତିନବର୍ଷ ପରେ ଆଜ, ହୋଟେଲର ସେଇ ପ୍ରକୋଷ୍ଠରେ, ଜଳ ପ୍ରପାତଠାରୁ ଆସି ଏକୁଟିଆରେ ବସି ଜେନ ଭାବୁଥାନ୍ତି, ନବାଗତ ପତ୍ନୀର ଦଶା କ'ଣ ସତେ ଏଇଆ ! ସେ ମୁଣ୍ଡରୁ ଟୋପିଟି କାଢ଼ି ନିଜର ସ୍ନେହ କୁଞ୍ଚୁ କୁଞ୍ଚିଆ ବାଳଗୁଡ଼ିକ ପଛକୁ କୁଣ୍ଡାଇ ଦେଲେ । ସେ ଖେତା ଗୋରାରଙ୍ଗର ନୁହଁ, ଈଷତ୍ ରଙ୍ଗ ଲଗା ଗୋରା—ତାଙ୍କ ଆଖି ଦୁଇଟି ବାଦାମି ରଙ୍ଗର, ବାଳ କଅଁଳ, ଚମଡ଼ାର ରଙ୍ଗ ଟଟକା ଦୁଧ ସର ପରି ! ନେଳୀ ପୋଷାକଟା ତାଙ୍କୁ ମାନିବ କି ନାହିଁ ବୋଲି ସନ୍ଦେହ ଥିଲା । କିନ୍ତୁ ଗାଢ଼ ନେଳୀ ନ ହୋଇଥିବାରୁ ବେଶ୍ ମାନୁଛି , ତା' ସାଙ୍ଗକୁ ରଙ୍ଗଣୀ ଫୁଲ ରଙ୍ଗର ବ୍ଲାଉଜଟି ବେଶ୍ ଘଟଣା ଦିଶୁଛି । ନିଜର ଆକର୍ଷଣ ବିଷୟରେ ସଂଶୟ ତାଙ୍କର ଦୂର ହେଲା । ସେ ଭାବିଲେ, ବିଲ୍ ତାଙ୍କର ବିଚ୍ଛେଦ ସହି ନପାରି ମିନିଟିଏ ଦୁଇ ମିନଟ୍ ଭିତରେ ନିଶ୍ଚୟ ଆସି ପାଖରେ ପହଞ୍ଚିବେ । ଜେନି ହାତ ଘଣ୍ଟାକୁ ଚାହିଁଲେ , ଦି'ପହର ଖାଇବା ବେଳ ଆସନ୍ନ ହୋଇ ନାହିଁ, ଭଲ ହୋଇଛି । ତାଙ୍କର ଆଦୌ ଭୋକ ନଥାଏ , ଏ ହୋଟେଲଟାରେ ଗୁଡ଼ାଏ ଖାଇବାକୁ ପଡ଼ୁଛି ।

ବିଲ୍‌ଙ୍କର ସବୁବେଳେ ଏକ କୈଫିୟତ୍, "ହକ୍ ପଇସା ଦେଇ କିଣିଛେଁ ପରା, ଧନ !" କାଲି ପର୍ଯ୍ୟନ୍ତ ସେ ବଳେଇ ବଳେଇ ଖାଉଥିଲେ, କାଲି କିନ୍ତୁ ଖଣ୍ଡା ମାରିଲା । ସେ ଶୁଣାଇଦେଲେ, "ହାଁ, ମୁଁ ଏତେ ଗିଳି ପାରିବି ନାହିଁ , ଜାଣିଥାଅ ।"

ବିଦାୟ ଦେଲା ବେଳେ ତାଙ୍କ ମା' ତାଙ୍କୁ ସତର୍କ କରି ଦେଇଥାନ୍ତି, "ଜେନ, ଘର ଛାଡ଼ି ବରଘରକୁ ଯାଉଛୁ, ତୋ' ଖଡ଼ଖଡ଼ା ପ୍ରକୃତିକୁ ସମ୍ଭାଳି ଚଳିବୁଟି । ମୋ'ର ଏଠି ତ ତୁ ଥିଲୁ ଗୋଟିଏ ବୋଲି ଝିଅ, ଗେଲବସର କରିଥିଲି । ବାହାରେ ଏମିତି ପ୍ରକୃତି ଦେଖାଇଲେ ଲୋକେ କହିବେ ମୋ'ର ଯୋଗୁଁ ତୋ'ର ପ୍ରକୃତି ଖରାପ ହୋଇଛି ।"

ଜେନି ଏଇଭଳି ଭାବୁଚି ଭାବୁଚି ଆରାମ ଚୌକିରେ ବସିପଡ଼ିଲେ ଓ ଗୋଟିଏ ପତ୍ରିକାର ପୃଷ୍ଠା ଲେଉଟାଇବାକୁ ଲାଗିଲେ । ତାଙ୍କ ପାଇଁ ପତ୍ରିକା, ଫୁଲ ଓ ମିଠେଇ ଆଣିବା ବିଷୟରେ ବିଲ୍‌ଙ୍କର ଆଦୌ ହେଳା ନାହିଁ । ଆପତ୍ତି କଲେ କହନ୍ତି, "ମୋ ପ୍ରେମିକାଠାରେ ମୋର୍ ପସ୍ ପ୍ରେମ ନିବେଦନ ।"

ଜେନି ପୁଣି ଘଡ଼ିକୁ ଚାହିଁଲେ । ମୋଟେ ପାଞ୍ଚ ମିନିଟ୍ ଯାଇଥିଲେ ବି ବହୁତ ବେଳ ଗଲାପରି ଲାଗୁଥାଏ । ଏତେବେଳଯାଏଁ ବିଲ୍ ନ ଆସୁଛନ୍ତି କାହିଁକି ? ଆଉ ଥରେ ଘଣ୍ଟାକୁ ଚାହିଁବା ପୂର୍ବରୁ ସେ ପତ୍ରିକାରୁ ଗୋଟାଏ ଗପ ପୂରା ପଢ଼ିବେ ବୋଲି ସଂକଳ୍ପ କରି ଆରମ୍ଭ କଲେ । ଖୁବ୍ ମନ ଦେଇ ପଢ଼ୁଥାନ୍ତି, କିନ୍ତୁ କାନ ଡେରିଥାନ୍ତି ବିଲ୍‌ଙ୍କ ପଦଶବ୍ଦକୁ । ଗପ ସରିଲା, ସେ ପୁଣି ଘଡ଼ିକୁ ଚାହିଁଲେ, ଆଉରି ଆଠ ମିନିଟ୍ ଗଲଣି ! ନାଃ, ଏଥର ମଧ୍ୟାହ୍ନ ଭୋଜନ ପାଇଁ ପ୍ରସ୍ତୁତ ହେବାକୁ ହେବ । ହାତ ମୁହଁ ଧୋଇବେ, ମୁହଁରେ ପୁଣି ଟିକିଏ ଟିକିଏ ପାଉଡ଼ର୍ ମାଖିବେ, ଓଠରେ ରଙ୍ଗ ଲଗେଇବେ ଓ ମୁଣ୍ଡରେ ଟୋପି ଦେଇ ପ୍ରସ୍ତୁତ ହୋଇ ରହିବେ । ତା'ପରେ ? ସେତେବେଳକୁ ଯଦି ବିଲ୍ ଆସି ନପହଞ୍ଚନ୍ତି; ତେବେ ସେ ଏକୁଟିଆ ସିଧାସଳଖ ଖାଇବା ଘରକୁ ଯିବେ ।

ସଜବାଜ ସାରି କଅଁଳ ବାଳ ଉପରେ ଟୋପି ଥୋଇ ସାରିଲା ବେଳକୁ ସାଢ଼େ ବାର । ଜେନିଙ୍କ ତୁଣ୍ଡରୁ ବାହାରି ପଡ଼ିଲା ଉଚ୍ଚ ସ୍ୱରରେ, "ଧେତ୍, ବିଲ୍, ତୁମର ପ୍ରକୃତ ଘରି ଖରାପ " ବିଲ୍ ଏତେବେଳଯାଏଁ ଆସି ନଥାନ୍ତି ।

ବିଲ୍‌ଙ୍କର ପ୍ରକୃତି ଖରାପ ବୋଲି କହି ଦେଲେ ସିନା, କଥାଟା ନିଜର ବି ବିଶ୍ୱାସକୁ ପାଇଲା ନାହିଁ । ବିଲ୍‌ଙ୍କର ପ୍ରକୃତି ଖରାପ, ନା, କଦାପି ନୁହଁ । ନିଶ୍ଚୟ କ'ଣ ଅସୁବିଧା ହୋଇଛି । ଗୋଟାଏ ଦୁର୍ଘଟଣା ଘଟିଛି ! ସେ କ'ଣ ତେବେ ଜଳପ୍ରପାତର ପାଖକୁ ପୁଣିଥରେ ଗଲେ ? ତେବେ କ'ଣ ସେ ଦୈବାତ୍ ପାଣିକି ଖସି ପଡ଼ିଲେ ଓ କାହାରି ଦୃଷ୍ଟି ତାଙ୍କ ଉପରେ ପଡ଼ିଲା ନାହିଁ ? ଜଳର ସୋଡ଼ ଅତି ଭୀଷଣ ; ଭଲ ପହଁରିବା-ବାଲା ମଧ୍ୟ ସେ ସ୍ରୋତରେ ସମ୍ଭାଳି ପଡ଼ିବା ଦୁଷ୍କର । ପୁଣି ବିଲ୍ ଯେ ପିନ୍ଧିଥିଲେ ତାଙ୍କ ନୂଆ ଗାଢ଼ ନେଳିରଙ୍ଗର ପୋଷାକ । ଡବଲ ବ୍ରେଷ୍ଟ କୋଟ ପିନ୍ଧି ପହଁରିବା ତ ଅସମ୍ଭବ ହୋଇଥିବ !

ଜେନି ଘୋର ଆତଙ୍କରେ ତଳ ମହଲାକୁ ଧାଇଁଗଲେ ।

ହୋଟେଲ୍‌ର ବାହାରପଟେ ସେଇ ଦୟାର୍ଦ୍ର ମୁହାଁ ମହିଳାଟି ଖାଲି ବସିଥାନ୍ତି । ବାହାରକୁ ବାହାରିବା ବେଳେ ତାଙ୍କର ଉପରେ ଦୃଷ୍ଟି ପଡ଼ିଯିବାରୁ ଜେନି ତାଙ୍କରି ପାଖରେ ଅଟକି ଗଲେ । ମହିଳାଟିର ମୁହଁରେ ବୁଦ୍ଧି ଓ ବଳିଷ୍ଠର ଫୁଟି ବିଶୁଥାଏ ।

ଜେନି ପଚାରିଲେ, "ଆଚ୍ଛା, ବାଲ୍କୁ—ମାନେ, ମୋ'ର ସ୍ୱାମୀଙ୍କୁ ଆପଣ ଦେଖିଛନ୍ତି କି ?

ମହିଳା ଟିକିଏ ହସି ହସି ଉତ୍ତର ଦେଲେ, "ହେଇଟି ପରା ସେ କଥାବାର୍ତ୍ତା ହେଉଛନ୍ତି ।"

ସତେ ତ, ହେଇଟି ସେଠି, ଟେବୁଲ୍ ଉପରେ ଭରା ଦେଇ ବାଲ୍ କଥାବାର୍ତ୍ତା ହେଉଛନ୍ତି । ତାଙ୍କ ସଙ୍ଗେ ଗପୁଥାନ୍ତି ଜଣେ ମୋଟାସୋଟା ଅଧାବୟସିଆ ମଣିଷ—ପିନ୍ଧିଥାନ୍ତି ବହୁରଙ୍ଗୀ ପଶମ ପୋଷାକ । ଜେନି, ଭଦ୍ରମହିଳାଙ୍କ ପାଖରେ ପଡ଼ିଥିବା ଗୋଟିଏ ଚଉକିରେ ଲଥ୍‌କିନି ବସି ପଡ଼ିଲେ । ସେତେବେଳକୁ ସେ ଅଣନିଶ୍ୱାସୀ ହୋଇଥାନ୍ତି । ଚଉକିରେ ବସି ସେ କହି ପକାଇଲେ, "ଓହୋ ! କେଡ଼େ ଆତଙ୍କ ମୋତେ ଘୋଟି ନଥିଲା ସତେ ! ମୁଁ ଭାବୁଥିଲି, କ'ଣ ଗୋଟାଏ ଦୁର୍ଘଟଣା ଘଟିଲା ପରା !"

ମହିଳା ହସି ହସି କହିଲେ, "ନୂଆ ବାହା ହୋଇଛ, ନା ?"

ଜେନି କହିଲେ, "ହଁ ଯେ ! ମୋ ଢଙ୍ଗରୁ କ'ଣ ଏକଥା ଜାଣିପାରିଲେ ?

ମହିଳା ସେମିତି ହସି ହସି କହିଲେ, ଆମ ବିବାହ-ବାର୍ଷିକୀ ଉପଲକ୍ଷେ ମୋ ସ୍ୱାମୀ ଫି ବର୍ଷ ମୋତେ ଏଠାକୁ ଆଣନ୍ତି । ଏଇ ଖରା-ଦିନକୁ ଆମ ବିବାହ ହେବାର ପଚିଶି ବର୍ଷ ପୂର୍ଣ୍ଣ ହେଲା । ଏ ପର୍ଯ୍ୟନ୍ତ ମୁଁ ତାଙ୍କୁ ଥରେ ବି କହିନାହିଁ ।"

ଜେନି ପଚାରିଲେ, "କ'ଣ କହି ନାହାନ୍ତି ?"

"ଏଇ କଥାଟା—ମୋ'ର ଏଭଳି ବଡ଼ ଜଳପ୍ରପାତକୁ ଭାରି ଡର—ଥିଲା, ଅଛି ଓ ଥିବ ।"

ଜେନି କହିଲେ, "ମୋ'ର ବି ସେଇଆ ।" ଏତକ କହି ତାଙ୍କର ଆଧୁନିକତା ଓ ତାଜାରକ୍ତର ପ୍ରମାଣ ଦେବାକୁ ସେ ଯୋଗ କଲେ, "କିନ୍ତୁ ଆପଣ ଯେମିତି ନିଜର ଅଶ୍ରଦ୍ଧା ସତ୍ତ୍ୱେ ବର୍ଷକୁ ବର୍ଷ ଆସୁଛନ୍ତି ମୁଁ ସେପରି କରି ପାରିବି ନାହିଁ । ଆଉ ଥରେ ବି ଏଠାକୁ ଆସିବାକୁ ମୋର ଇଚ୍ଛା—"

ତାଙ୍କ ତୁଣ୍ଡରେ କଥା ସରିବା ପୂର୍ବରୁ ତାଙ୍କ ଉପରେ ବିଲ୍‌ଙ୍କର ନଜର ପଡ଼ିଲା । ସେ ଦୌଡ଼ିଲା ପରି ଆସି ତାଙ୍କ ପାଖରେ ପହଞ୍ଚିଲେ । ତାଙ୍କ ମୁହଁରେ ନିର୍ମଳ, ନିଷ୍କପଟ ଆନନ୍ଦ ।

ପାଟି କରି ବିଲ୍ କହିବାକୁ ଲାଗିଲେ, "ତୁମେ ଥିଲ କେଉଁଠି ? ତୁମକୁ ମୁଁ ଚାରିଆଡ଼େ କେତେ ଖୋଜିଲିଣି । ହେଇଟି ମୁଁ ଯାହାଙ୍କ ସଙ୍ଗେ କଥାବାର୍ତ୍ତା କରୁଥିଲି, ସେ ହେଉଛନ୍ତି ମିଷ୍ଟର୍ ଏଲମ୍ୟାନ୍ । ସେ ବି ଜଣେ ଇଞ୍ଜିନିଅର୍ । ଏ ପ୍ରପାତ ଉପରେ ବନ୍ଧ କରି ଯଦି ବିଜୁଳିଶକ୍ତି ଉତ୍ପାଦନରେ ଏ ପାଣିକୁ ଲଗାଯାଏ, ତେବେ କେତେ ବିଜୁଳିଶକ୍ତି ଉତ୍ପନ୍ନ ହୋଇ ପାରିବ ସେ କଥା ସେ ମୋତେ ବୁଝାଉଥିଲେ ।"

ଗମ୍ଭୀର ଅଥଚ ପ୍ରଫୁଲ୍ଲ ସ୍ୱରରେ ମିଷ୍ଟର୍ ଏଲମ୍ୟାନ୍ କହିଲେ, "ଭଗବାନ୍ ତା' କରାଇ ନ ଦିଅନ୍ତୁ । ନୈସର୍ଗିକ ସୌନ୍ଦର୍ଯ୍ୟର ଅନୁପମ ସ୍ଥାନ, କେତେ ମଧୁଚନ୍ଦ୍ରର ସ୍ମୃତିରେ ପବିତ୍ର ହୋଇଛି ।

ଜେନ ନମ୍ରଭାବରେ ଟିକିଏ ହସିଲେ, "ଆପଣଙ୍କର ସବୁ କୁଶଳ ତ, ମିଷ୍ଟର୍ ଏଲମ୍ୟାନ୍ ? ମୁଁ ଆପଣଙ୍କ ପତ୍ନୀଙ୍କ ସଙ୍ଗେ ଆଳାପ କରୁଥିଲି । ଜେନ ନିଜ ହାତ ବଢ଼ାଇ ଦେଲେ ; କିନ୍ତୁ ପ୍ରକାଣ୍ଡ ସ୍ନେହମୟ ମୁଠା ଭିତରେ ନିଜର ହାତ ଗ୍ରସ୍ତ ହୋଇଯିବା ପରି ଲାଗିବାରୁ ଆସ୍ତେ ଆସ୍ତେ ତା'କୁ ଟାଣି ଆଣିଲେ । ତା'ପରେ ସେ ବିଲ୍‌ଙ୍କୁ କହିଲେ, "ଆସ, ବିଲ୍, ମୋତେ କିନ୍ତୁ ଭାରି ଭୋକ ହେଲାଣି ।" ସ୍ୱରରେ ସରସତା ଓ କୌତୁକ ଥିଲେ ବି କଥାର ଭିତରେ ଭିତରେ ତୀକ୍ଷ୍ଣ ଆକ୍ଷେପ ଥାଏ ।

ବିଲ୍ ଦୋଷ କରିଥିଲା ପରି କହିଲେ, "ଆଃ, ବଡ଼ ଦୁଃଖର କଥା, ଖାଇବା ବେଳ ହୋଇଗଲାଣି ବୋଲି ମୋର ଏକବାରେ ମନେ ନାହିଁ ।"

ମିସେସ୍ ଏଲମ୍ୟାନ୍‌ଙ୍କୁ ଅଭିବାଦନ ଜଣାଇ ଜେନ ଟିକିଏ ମୁଣ୍ଡ ହଲାଇଲେ ଓ ଉଠିପଡ଼ି ବିଲ୍‌ଙ୍କ ପଛେ ପଛେ ଖାଇବା ଘର ଆଡ଼େ ଚାଲିଲେ । ତାଙ୍କ ମୁଣ୍ଡ ଉଦ୍ଧତଭାବେ ଉପରକୁ ଟେକା ହୋଇଥାଏ ଓ ଖୁଅା ଦୁଇଟା ସିଧା ରହି ଗୁଡି ବାହାରକୁ ବାହାରି ପଡ଼ୁଥାଏ । ମିସେସ୍ ଏଲମ୍ୟାନ୍ ବିସ୍ମିତ ହୋଇ ତାଙ୍କ ଆଡ଼କୁ ଚାହିଁଥିବାର ଲକ୍ଷ୍ୟ କଲେ ସୁଦ୍ଧା, ଜେନ୍ ନିରବ ହେଉନଥାନ୍ତି ।

ଖାଇବା ଘରେ ପହଞ୍ଚି ବିଲ୍ କହିଲେ, "ଦେଖୁଛି, ମଣି, ଆମ ଟେବୁଲ୍‌ । ହୋଟେଲ୍ ବାଲା ଆମ ପାଇଁ ଯାକୁ ସଜାଡ଼ି ରଖିଛନ୍ତି । ବୋଧହୁଏ ଆମେ ମଧୁରାତ୍ରରେ ଆସିଛେଁ ବୋଲି ତାଙ୍କୁ ଜଣା ।"

ବିଲ୍‌ଙ୍କର ଅମାୟିକତା ଜେନିଙ୍କୁ ଅସହ୍ୟ ହେଉଥାଏ । ବାହା ହେବାର ମୋଟେ ହୋଇଚି ଗୁଡ଼ିଏ ଦିନ ; ଅଥଚ, ଯାଙ୍କୁ ଜଣାପଡ଼ୁନାହିଁ ଯେ, ପତ୍ନୀକୁ ଏକୁଟିଆ ଛାଡ଼ି ସେ ଏତେବେଳ ନିଜ ଖୁସିରେ ବୁଲିଲେ ! ଏକୁଟିଆ ରହି ସେ ଯେ ଆତଙ୍କିତ ହୋଇଗଲେ ସେ କଥାକୁ ସ୍ୱାମୀଙ୍କର ଖିଆଲ ନାହିଁ ! ଜେନି ଗୁମ୍ ମାରି ନିର୍ମମ ଭାବେ ବସିରହିଲେ, ମୁହଁରେ ହସର ସତ୍ତା ବି ନାହିଁ । ବିବାହ ମାନେ ତେବେ ଏଇଆ ! ଆଜି କେବେ ହେଲେ ଦିନେ ଯେ ସେ ଏଭଳି ଜାଗାକୁ ଆସିବାକୁ ରାଜି ହେବେ ସେ ଆଶା ବିଲ୍ ତାଙ୍କ ମନରୁ ଏକାବେଳକେ ଦୂର କରିଦେବା ଦରକାର ।

ବିଲ୍ ଖାଦ୍ୟସାମଗ୍ରୀର ତାଲିକା ଧରି ପଚାରିଲେ, "ତୁମର ଏଇଲେ କ'ଣ ଖାଇବାକୁ ମନ ?" ଖାଦ୍ୟ ତାଲିକାଟା ଆଖି ଆଗରେ ଧରିଥିବାରୁ ଜେନିଙ୍କ ମୁହଁ ବିଲ୍‌କୁ ଦିଶୁନଥାଏ ।

ଜେନି ଉତ୍ତର ଦେଲେ, "ବେଶ୍, ଗୋଟିଏ ପ୍ଲେଟ୍ କଞ୍ଚା ଶାକ ସବ୍‌ଜିର ଚଟଣି (ସାଲଡ଼୍) ଓ କପେ ଚାହା ଯେ, ସେଥିରେ ଚିନି ବା ଦୁଧ ନପଡ଼ି ଫାଳେ ମାତ୍ର ଲେମ୍ବୁ ଚପୁଡ଼ା ହେବ । ମୋର ଆଉ କିଛି ଦରକାର ନାହିଁ ।"

ବିଲ୍ ପ୍ରତିବାଦ କଲେ, "ସେ କ'ଣ ମ, ଧନ ! ଯା ତ ଶୋଇବା ଘରେ ବସି ମଗାଇ ନେଲେ ହୁଅନ୍ତା !" ଏହା କହି ବିଲ୍, ଜେନିଙ୍କ ଆଡ଼କୁ ମୁହଁ ଟେକି ଚାହିଁଲେ; ମୁହଁର ଚେହେରା ଦେଖି ପଚାରିଲେ, "ତୁମର ସେ ହୋଇଚି କ'ଣ ?"

କଥାଟାକୁ ଉଡ଼ାଇ ଦେଲା ପରି ଜେନି କହିଲେ, "କାହିଁ, କିଛି ନାହିଁ ତ ! ବୋଧହୁଏ, ମୋତେ ଟିକିଏ ଖରାପ ଲାଗୁଛି । ମୁଁ ଯେ ତୁମକୁ ଯୁଗେ ହେଲା ଅପେକ୍ଷା କରି ଏଣେ ଡେଣେ ହେଉଚି !"

ବିଲ୍ ଖାଦ୍ୟ ତାଲିକାଟା ହାତରୁ ଛାଡିଦେଲେ ; ତାହା ଉଡ଼ି ଯାଇ ତଳେ ପଡ଼ିଲା ।

ଅସ୍ପଷ୍ଟ ସ୍ୱରରେ ସେ ଜେନଙ୍କ କଥାର ଖାଳ ଧରିଲା ପରି କହିଲେ, "ଖରାପ ଲାଗୁଛି ! ବେଶ୍, ଏଇ ଦିନ କେତୋଟାରେ ମନ ବିରକ୍ତ ହୋଇଗଲାଣି ତେବେ ?"

ଜେନି କହିଲେ, "ବୋଧହୁଏ ସେଇଆ ।" ବିଲ୍ କ'ଣ ପଚାରୁଛନ୍ତି ଓ ସେ ତା'ର କ'ଣ ଉତ୍ତର ଦେଉଛନ୍ତି ସେଥିକୁ ଜେନିଙ୍କର ଖାତିର ନଥାଏ ।

ବିଲ୍ ଆଶ୍ଚର୍ଯ୍ୟ ହୋଇ ଜେନିଙ୍କ ଆଡ଼କୁ ଚାହିଁ ପଚାରିଲେ, "ଜେନି ! ମୋ'ର ତାହାହେଲେ କ'ଣ ଅପରାଧ ହୋଇଛି ?"

ଜେନ କାନ୍ଧ ନଚାଇ ଉତ୍ତର ଦେଲେ, "ମୁଁ ତ କିଛି ଦୋଷ ଦେଉନାହିଁ, ବିଲ୍ !"

ବିଲ୍ କହିଲେ, "ହୁଁ ! ମାନେ, ଆମର ମନ ଫାଟିବାରେ ତୁମର କିଛି ଯାଏ ନାହିଁ କି ଆସେ ନାହିଁ । ଆଚ୍ଛା, ଶୁଣ, ତୁମେ ଖାଇବ ନା ନାହିଁ ?"

"ମୁଁ ପରା କହିଲି, ମୁଁ ଗୋଟିଏ ପ୍ଲେଟ୍ ସାଲାଡ଼୍ ଖାଇବି ।"

ବିଲ୍ ରାଗରେ ଜର୍ଜର ହୋଇ ଜେନିଙ୍କ ଆଡ଼କୁ ଥରେ ଚାହିଁଲେ, ତା'ପରେ ଖାଦ୍ୟ ତାଲିକାଟା ଚକ୍ଷୁ ଘୋଡାଇ ଆଣି ତାକୁ ଚାହିଁ ତୁନି ହୋଇ ବସିଲେ । ହୋଟେଲ୍ ପରିବେଶିକା ଆସି ଠିଆ ହେବାରେ ସେ ସଂକ୍ଷେପରେ ଅର୍ଡର ଦେଇଦେଲେ, "କଞ୍ଚା ଶାକସବ୍‌ଜିର ସାଲାଡ଼୍ ଦୁଇ ପ୍ଲେଟ୍ ଓ ଲେମ୍ବୁ ଦେଇ ଦୁଇ କପ୍ ଚା ।"

ପରିବେଷିକା ଘାବରେଇ ଗଲା, "ମାତ୍ର ଏତିକି ?"

ବିଲ୍ ଜବାବ୍ ଦେଲେ, "ହଁ, ଏତିକି ମାତ୍ର ।" ପରିବେଷିକା ଅର୍ଡର୍ ତାମିଲ୍ କରିବାକୁ ଚାଲିଗଲା ।

ପତି ପତ୍ନୀ ଦୁହିଁଙ୍କ ଭିତରୁ କେହି ପଦେ ବି କଥା କହୁ ନଥାନ୍ତି । ଗୋଟିଏ ଗୋଟିଏ କାଠ ଗିନାରେ ସାଲାଡ଼୍ ଆସିଲା—ଯେଝାର ସେ ଖାଇବାକୁ ଲାଗିଲେ । ଜେନି ନିଜ ପାଇଁ ଚା' କପ୍‌ରେ ଢାଳିଲେ, ବିଲ ଢାଳିଲେ ତାଙ୍କ ନିଜ ପାଇଁ, ପ୍ରତ୍ୟେକେ ନିଜ ନିଜ ପାଇଁ ଖଣ୍ଡିଏ ଖଣ୍ଡିଏ ରୋଟିରେ ମାଖନ ମାଖିଲେ । ଜେନି ବେଶ୍ ଆଗ୍ରହର ସହିତ ଆସ୍ତେ ଆସ୍ତେ ତାଙ୍କ ଖାଇବା ଖାଉଥାନ୍ତି – ସାଲାଡ଼୍‌ରୁ ଟିକିଏ ଦାନ୍ତରେ

ଛୁଣ୍ଡାଉଥାନ୍ତି, ଗ୍ଲାସ୍‌ରୁ ଟିକିଏ ପିଉଥାନ୍ତି ଓ ରୋଟିର କଡ଼ରୁ ଟିକିଏ ଖାଉଥାନ୍ତି—ଏ ସବୁ ଭିତରେ ଖୁବ୍ ସାବଧାନ ଥାନ୍ତି—ଖୁବ୍ ସାବଧାନ—ଯେପରି ବିଲ୍‌ଙ୍କ ଉପରେ ଆଖି ନପଡ଼ିବ । ସେ ମନେ ମନେ ଭାବୁଥାନ୍ତି, ଏଇ ତେବେ ଦାମ୍ପତ୍ୟ ଜୀବନର ମଧୁରାତ୍ରି !

ଶେଷରେ ସେ ପାଟି ଫିଟାଇ କହି ପକାଇଲେ, "ବେଶ୍ ମଉଜ ତ !"

ବିଲ୍ ପଚାରିଲେ, "ଏଥିରେ ପୁଣି ମଉଜ ଆବିଷ୍କାର କଲ କାହୁଁ ?"

ଜେନି କହିଲେ, "ଆମର ଏହି ମଧୁରାତ୍ରିରୁ ।"

ବିଲ୍ କହିଲେ, "ମୋ'ଠାରୁ ତ କୌଣସି ମଉଜ ବା ଆମୋଦ ପାଇବାର ଅବସ୍ଥାରେ ନାହିଁ ; ଯାହା ହେଉ, ମୁଁ ଖୁସୀ ଯେ କୌଣସି ନା କୌଣସି ସୂତ୍ରରୁ ତୁମକୁ ମଉଜ ମିଳୁଛି ।"

ଜେନି ପ୍ରତିବାଦ କଲେ, କିନ୍ତୁ ତୁମଠାରୁ ତ ବେଶ୍ ଆମୋଦ; ଖୁବ୍ ଆମୋଦ ମିଳୁଛି । ମୁଁ ବୁଝିବାକୁ ଆରମ୍ଭ କରୁଛି ଯେ—।" ଏତିକି କହି ଜେନି ହଠାତ୍ ଚୁପ୍ ହୋଇଗଲେ ।

ବିଲ୍ ପଚାରିଲେ, "ଯେ କ'ଣ ?"

ଜେନି କହିଲେ, "ନାଇଁ, କିଛି ନାଇଁ ।"

ବିଲ୍ ଖାଇବା କଣ୍ଟା ଟେବୁଲ୍ ଉପରେ ଥୋଇଦେଲେ, "ଜାଣ, କହିରଖୁଛି, "ତୁମେ ଯଦି 'ନାଇଁ, କିଛି ନାଇଁ' ବୋଲି ଆଉ କହିବ ତେବେ ମୁଁ—।"

ଜେନି ସତେ ଚହଲି ଗଲା ପରି କିଛି ଅଭିନୟ କରି ପଚାରିଲେ, "ତେବେ ତୁମେ କଣ କରିବକି ?"

ବିଲ୍ ସାଲାଡ୍ ପ୍ଲେଟ୍‌ଟାକୁ ଆଗରୁ ଆଡ଼େଇ ଦେଲେ, କହିଲେ, ବୋଧହୁଏ ତୁମେ ଜାଣ, ମୋତେ ଏ କଞ୍ଚା ଶାଗସବ୍‌ଜି ଖରାପ ଲାଗେ ।"

ଜେନି ପ୍ରତ୍ୟୁତ୍ତର ଦେଲେ, "ଅସୁଆଦ ଲାଗିଲେ କ'ଣ ହେଲା, ଦେହକୁ ହିତ କରିବ ।"

"ହେଇଥି ଦେଖ, ମୁଁ ଯାହା ଆଉ ଖାଇବି ନାଇଁ ।"

"ଖାଇବ ନାହିଁ ?"

ପରିବେଷିକାକୁ ପାଖକୁ ଡାକି ବିଲ୍ ସ୍ପଷ୍ଟ ଭାବେ ବରାଦ କଲେ, "ମୋ' ପାଇଁ ଆଣ ଗୋଟାଏ ବଡ଼ ମାଂସ କଟଲେଟ୍ ଓ ତା'ସଙ୍ଗେ ଛତୁଭଜା ଓ ପତଳା ଆଳୁ ଭଜା । ହାଁ, ପୁଡ଼ିଂକୁ ଖାଇବା ପରେ ଶେଷରେ ଦରକାର ଆପେଲ୍‌ର ଖିରସା ।

ତର ତର ହୋଇ ଯାଉ ଯାଉ ପରିବେଷିକା କହିଲା, "ଆଜ୍ଞା, ଧନ୍ୟବାଦ ।"

ଜେନ ଉଦାସୀନ ଭାବେ ହସି ହସି ପଚାରିଲେ, "ଏଭଳି ବଢ଼ିଆ ଖାଦ୍ୟର ଦାମ୍ ଦେଇ ପାରିବ ତ !"

ବିଲ୍ ଉତ୍ତର ଦେଲେ, "ମୋ'ର ଯଥାସର୍ବସ୍ୱ ଯିବ ପଛେ ମୁଁ ଏହା ଖାଇବି ।"

ମାଂସ ଆସିଲା, କାମ୍ଚ ବାହାରୁଥାଏ ଓ ତା'ସଙ୍ଗେ ଲୋଭନୀୟ ବାସ୍ନା । ସେତେବେଳକୁ ଜେନଙ୍କ ସାଲଡ୍ ସରିଥାଏ । ତାଙ୍କର ମଧ୍ୟ ପୁଡ଼ିଂକୁ ଖାଇବାକୁ ଭାରି ମନ ହେଲା, କିନ୍ତୁ ବିଲ୍‌ଙ୍କ ପାଖେ ହାର ମାନିବାକୁ ସେ ଚାହିଁଲେ ନାହିଁ—ନିଜ ଖାଇବା ଇଚ୍ଛାକୁ ଦାବି ଦେଇ ସେ ବ୍ୟାଗ୍ ଓ ହାତ ମୋଜା ଧରି ଉଠିବାର ଉପକ୍ରମ କରୁ କରୁ କହିଲେ, "ତୁମେ ଏତକ ଯାକ ଶେଷ କରିବା ପର୍ଯ୍ୟନ୍ତ ମୁଁ ଏଠି ବସି ପାରିବି ନାହିଁ ।" ସେ ଉଠିଲେ ଓ ଖୁବ୍ ଯତ୍ନର ସହିତ ବସିଥିବା ଚଉକିକୁ ଟେବୁଲ ତଳକୁ ଠେଲି ଦେଲେ । ଗଲାବେଳେ କହିଲେ, "ବିଦାୟ, ବିଲ୍ !"

ବିଲ୍ ନିର୍ବୋଧଙ୍କ ପରି ଉତ୍ତର ଦେଲେ, "ବିଦାୟ ।"

ଜେନି କହିଲେ, "ବିଦାୟ ମାନେ, ମୁଁ ଯାଉଛି ହୋଟେଲ୍‌ର ଦାଣ୍ଡଘରକୁ, ଖାଇ ସାରି ମୋତେ ସେଇଠାରେ ଖୋଜିବ ।"

ଶୀଘ୍ର କିନ୍ତୁ ମର୍ଯ୍ୟାଦା ରଖି, ଜେନି ଭୋଜନାଳୟରୁ ବାହାରି ଆସିଲେ ।

ଦାଣ୍ଡ ଘରେ ମିସେସ୍ ଏଲମ୍ୟାନ୍ ସେ ପର୍ଯ୍ୟନ୍ତ ବି ବସି ତାଙ୍କ ସ୍ୱାମୀଙ୍କୁ ଅପେକ୍ଷା କରିଥାନ୍ତି । ଜେନି ତାଙ୍କର ପାଖେ ଠିଆ ହେଲେ ।

"ଆପଣ କ'ଣ ଏପର୍ଯ୍ୟନ୍ତ ଖାଇ ନାହାନ୍ତି ?"

ମିସେସ୍ ଏଲମ୍ୟାନ୍ କହିଲେ, "ମୋ ସ୍ୱାମୀ ପରା ଜଳବିଦ୍ୟୁତ ବିଷୟରେ ଗପି ଲାଗିଛନ୍ତି—ଏଥର ହୋଟେଲର ମେନେଜର୍‌ଙ୍କ ସାଙ୍ଗେ । ଏ ଜଳପ୍ରପାତଟା ସବୁଥର ଯାଙ୍କୁ କମିତି ଗୋଟାଏ ମନ୍ତ୍ରମୁଗ୍ଧ କରି ଦେଉଛି । ସେ ଜାଣୁଛନ୍ତି, ଏ ପ୍ରପାତରୁ ବିଜୁଳିଶକ୍ତି ଉତ୍ପାଦନ କରିବାକୁ ଦିଆଯିବ ନାହିଁ । ଯାଙ୍କ ନିଜର ବି ଇଚ୍ଛା ନୁହେଁ ଏଥିରୁ ବିଦ୍ୟୁତଶକ୍ତି ଉତ୍ପାଦନ ହେଉ ବୋଲି । ପ୍ରପାତର ସୌନ୍ଦର୍ଯ୍ୟ ଅକ୍ଷୁଣ୍ଣ ରଖିବାକୁ ଯାଙ୍କର ଇଚ୍ଛା । କିନ୍ତୁ ଏତିକି ଜାଣିପାରୁନାହାନ୍ତି ଯେ, ଯାଙ୍କ ଦୃଷ୍ଟିରେ, ଜଳପ୍ରପାତର ଦୃଶ୍ୟରେ ସୌନ୍ଦର୍ଯ୍ୟ ନାହିଁ—ସେ ସୌନ୍ଦର୍ଯ୍ୟବୋଧ ଯାଙ୍କର ନାହିଁ । ଯାଙ୍କୁ ଜଳପ୍ରପାତଟା ସୁନ୍ଦର ଦିଶିବାର ଏକମାତ୍ର କାରଣ, ଏଥିରେ ପ୍ରଚୁର ବିଜୁଳିଶକ୍ତିର ଉତ୍ସ ଅଛି । ସେଇ ଶକ୍ତିର କଳ୍ପନାରେ ଇଏ ବିଭୋର ।"

ଜେନି ମିସେସ୍ ଏଲମ୍ୟାନ୍‌ଙ୍କ ପାଖ ଚଉକିରେ ବସି ପଡ଼ିଲେ ; ଧୀରେ ଧୀରେ ମନକୁ ମନ କହିଲା ପରି ପଚାରିଲେ, "ଏଇ ପୁରୁଷଜାତି ସବୁବେଳେ ଶକ୍ତି, କ୍ଷମତା, ପ୍ରଭାବ ପାଇଁ ଏତେ ଲାଳାୟିତ କାହିଁକି ? ଏ ଲାଳସାର ଅନ୍ତ ମୁଁ ପାଉନାହିଁ ।"

ମିସେସ୍ ଏଲମ୍ୟାନ୍ ଧୀର ଭାବରେ ଟିକିଏ ହସି କହିଲେ, "ଆଲୋ ମା ! ସ୍ୱାମୀଙ୍କ ମନ କାହିଁକି କୁଆଡ଼େ ଗତି କରୁଛି ସେ କଥା ଜାଣିବାର ଲାଳସା ତୁ ଆଗ ଛାଡ଼୍ । ତାଙ୍କ ଗତିବିଧି ଲକ୍ଷ୍ୟ କରୁଥା, ପୂର୍ଣ୍ଣପ୍ରାଣରେ ତାଙ୍କୁ ପ୍ରେମ କରୁଥା, କିନ୍ତୁ ତାଙ୍କ କାର୍ଯ୍ୟର କାରଣ ଅନୁସଂଧାନ କରିବାକୁ ବସ ନା । ଏସବୁ କାରଣ ଖୋଜି ପାଇବାର କ୍ଷମତା ଆମ ନାରୀଙ୍କର ନାହିଁ । ସ୍ୱାମୀଙ୍କର ପ୍ରକୃତି ଏପରି କାହିଁକି ହୋଇଛି, ସେ ଯା କରୁଛନ୍ତି କାହିଁକି, ତା'କରୁଛନ୍ତି କାହିଁକି, ଏ ପ୍ରଶ୍ନର ଉତ୍ତର ଖୋଜିବା ଯାହା—ପୃଥିବୀ କାହିଁକି ବିଶ୍ୱବ୍ରହ୍ମାଣ୍ଡରେ ଘୂରୁଛି, ସୂର୍ଯ୍ୟ କାହିଁକି ଆକାଶରେ ଜଳୁଛି, ଚନ୍ଦ୍ର କାହିଁକି ରାତିରେ ସୁନା ପରି ଝଟକୁଛି ? —ଏ ପ୍ରଶ୍ନ ସବୁର ଉତ୍ତର ଖୋଜିବା ବି ସେଇଆ । ସବୁ କଥାରେ ଯଦି 'କାହିଁକି' ବୋଲି ପ୍ରଶ୍ନ ପଚାରି ବସିବ, ତେବେ ଉତ୍ତର ଦେବ କିଏ ? ନିଜେ ଯାହା ହାତ ଧରିଧାଇଁ, ତା'କୁ ପ୍ରେମ କରିବା—ବେଶ୍ ଏତିକିରେ ଆମ କାମ ଶେଷ ।"

ମହିଳାଟି ଏତକ କହି ଚୁପ୍ ହେଲେ ; କ୍ଷୁଦ୍ର ହୀରା-ଖଚିତ ସୁନାର ପ୍ରସାଧନ ବ୍ୟାଗ୍ଟି ଫିଟାଇଲେ ଓ ଚନ୍ଦ୍ରର ଦର୍ପଣରେ ନିଜର ବାର୍ଦ୍ଧକ୍ୟ-ଛାପିତ ଅଥଚ ସୁନ୍ଦର ମୁହଁରେ ଟିକିଏ ଆଖି ବୁଲାଇ ନେଲେ ; ନାକ ଅଗରେ ଟିକିଏ ପାଉଡର୍ ମାଖି ଦେଇ ବ୍ୟାଗ୍ଟି ବନ୍ଦକରି ଆଡ଼େଇ ଥୋଇଦେଲେ । ତା'ପରେ ନିଜର ସହଜାତ କ୍ଷୀଣ ହସର ରେଖା ଅଧରରେ ଫୁଟାଇ ଜେନିଙ୍କ ହାତରେ ତାଙ୍କର ଗୋଟିଏ ହାତ ଥୋଇଲେ ।

ସେ କହିଲେ, "ମା ! ମୁଁ ତୋ' ସ୍ଥାନରେ ଥିଲେ, ବଲ୍ଙ୍କୁ ଧରି ସାଙ୍ଗେ ସାଙ୍ଗେ ଆପଣା ଘରକୁ ଫେରିଯା'ନ୍ତି । ଏହି ଜଳପ୍ରପାତର ସ୍ରୋତ ଓ ଗର୍ଜନରେ ମଣିଷକୁ ଅଭିଭୂତ କରିବାର ଶକ୍ତି ଅଛି । ଜାଣଚ, ପ୍ରପାତର ପାଣି ଯେତେବେଳେ ଧୀର ଅଥଚ ପ୍ରବଳ ବେଗରେ ପ୍ରପାତର ଧାରରୁ ଖସି ଗଭୀର ଗହ୍ୱରରେ ପଡ଼େ ସେତେବେଳେ, ପେଟ ଭିତର କ'ଣ ହୋଇଯାଏ ?"

ଜେନି ଧୀରେ ଧୀରେ କହିଲେ, "ହଁ, ମୁଁ ତା' ଅନୁଭବ କରିଛି । ସେ ଦୃଶ୍ୟ ଦେଖିଲା ବେଳେ ମୋ ମୁଣ୍ଡ ଘୂରିଗଲା—ପୁଣି ଚାହିଁଲି । ଶେଷରେ ଆଉ ସହି ହେଲା ନାହିଁ ।"

ମିସେସ୍ ଏଲମ୍ୟାନ୍ ନିଜର ଅନୁଭୂତି ବର୍ଣ୍ଣନା କଲେ, "ମୁଁ ଜାଣେ ଲୋ ଝିଅ—ଏ ପ୍ରପାତ ମଣିଷକୁ ଆକର୍ଷଣ କରେ । ପ୍ରଥମେ ଯେତେବେଳେ ମୁଁ ଏହାକୁ ଦେଖିଲି, ମୋ' ମନରେ ଗୋଟାଏ ନିର୍ବୋଧ, ଅନ୍ଧ ଆକାଂକ୍ଷା ଜାଗି ଉଠିଲା, ନିଜକୁ ନେଇ ଏହା ସାଙ୍ଗେ ମିଶାଇ ଦେବାକୁ । ବବ୍—ମୋ ସ୍ୱାମୀ—ମୋତେ ଧରି କରି ରଖିଲେ । ସେତକ—ସେଇ ଦିନଠାରୁ ମୁଁ ସେ ପ୍ରପାତ ପାଖକୁ ଆଉ କେବେ ଯାଇନାହିଁ । କିନ୍ତୁ ମୋ ସ୍ୱାମୀ ! ବର୍ଷକୁ ବର୍ଷ ସେ ସେଇ ସ୍ଥାନକୁ ଯାଉଛନ୍ତି, ଚାହିଁ ଚାହିଁ ଖାଲି କଳନା କରୁଛନ୍ତି, ପ୍ରପାତଟାକୁ ବନ୍ଧେଇଲେ କେତେ ବିଜୁଳିଶକ୍ତି ମିଳନ୍ତା । ତାଙ୍କର ଆକର୍ଷଣ ସେତିକି । ପ୍ରପାତର ମୋ ଉପରେ ଏପରି ପ୍ରଭାବ ପଡ଼ିଲା କାହିଁକି ? ଆଉ ତାଙ୍କ ଉପରେ ସେ ପ୍ରଭାବ ନପଡ଼ି ଅନ୍ୟ ପ୍ରଭାବ ପଡ଼ିଲା କାହିଁକି ? ଏ ଯେଉଁ କାହିଁକି, ଏହାର ଉତ୍ତର ଦେବ କିଏ ?"

ମିସେସ୍ ଏଲମ୍ୟାନ୍ ଧୀରେ ଧୀରେ ଜେନିଙ୍କର ହାତକୁ ଆଉଁସି, କହିଲେ, "ମା, ମୋର ପରାମର୍ଶ, ଏ ସ୍ଥାନ ଛାଡ଼ି ଆପଣା ଘରକୁ

ଫେରଯାଅ । ତୁମ ବିବାହର ମଧୁରାତ୍ରି ମଧ୍ୟ ସାଙ୍ଗରେ ନେଇଯାଅ, ଆପଣାର କ୍ଷୁଦ୍ର ଘରେ, ନିଜ ସ୍ୱାମୀଙ୍କ ସଙ୍ଗେ ନିଭୃତରେ ତାହାର ସମାପନ କରିବ । କିନ୍ତୁ, ବର୍ଷକ ପରେ ଯଦି ତୁମ ସ୍ୱାମୀ ମନ କରିବେ, ଏଠାକୁ ଆସି ଏହି ପ୍ରପାତକୁ ଚାହିଁ ବିବାସ୍ୱପ୍ନ ଦେଖିବାକୁ, ତେବେ ତାଙ୍କ ସଙ୍ଗେ ନିଶ୍ଚୟ ଆସିବ, ନ ଆସିବାର କରିବ ନାହିଁ ।"

ପୌଢ଼ା ମହିଳା ଆପଣାର ଆଶୀର୍ବାଦସୂଚକ ପାପୁଲି, ସସ୍ନେହରେ ଜେନିଙ୍କ କପୋଳରେ ବୁଲାଇ, ହୋଟେଲ୍‌ର ଦାଣ୍ଡଘର ପାର ହୋଇ ମେନେଜରଙ୍କ ଟେବୁଲ୍ ପାଖକୁ ଗଲେ । ମିଷ୍ଟର୍ ଏଲମ୍ୟାନ୍ ଟେବୁଲ୍ ଉପରେ ଭରାଦେଇ ମେନେଜରଙ୍କ ସଙ୍ଗେ ଗପ ଲଗାଇଥାନ୍ତି । ବୁଢ଼ା ଆଙ୍ଗୁଠି ଓ ବଣି ଆଙ୍ଗୁଠିରେ ତଳ ଓଠକୁ ଚିପିଧରି ସେ ଆପଣା ମନକୁ ମନ କହିଲାପରି ବୁଝାଉଥାନ୍ତି, "ପ୍ରପାତର ସୌନ୍ଦର୍ଯ୍ୟକୁ ବଜାୟ ରଖି, ବିଜୁଳି ଉତ୍ପାଦନ କରିବାର ଗୋଟାଏ ବାଟ କରାଯାଇ ପାରେ । ପ୍ରପାତର ଉପର ଅଂଶଟା ପ୍ରପାତର ସୌନ୍ଦର୍ଯ୍ୟ ପାଇଁ ରଖି, ତଳ ଅଂଶଟାକୁ ବିଜୁଳି ଉତ୍ପାଦନ ପାଇଁ ରଖିଲେ ଚଳିବ । ପ୍ରପାତରେ ଯେତେ ପାଣି ଯାଉଛି ସେଥିରୁ ଅଧେ ଅଟକାଇ ବିଜୁଳି ଉତ୍ପାଦନରେ ଖଟାଇଲେ, ଦେଶର ସର୍ବବୃହତ୍ ଜଳବିଦ୍ୟୁତ୍ ଶିଳ୍ପ ଗଢ଼ି ଉଠିବା ସମ୍ଭବ ହେବ ।"

ମେନେଜର୍‌ଙ୍କୁ ମିଷ୍ଟର୍ ଏଲମ୍ୟାନ୍‌ଙ୍କ କଥା ଶୁଣି ଲାଗି ଯାଇଥାଏ । ସେ ହାଇ ମାରି କହିଲେ, "ଦେଖୁଛି, କେହି ନା କେହି ସବୁବେଳେ ଏଇ ବିଦ୍ୟୁତ୍ ଉତ୍ପାଦନ ବିଷୟରେ ଘାରି ହେଉଛନ୍ତି ।"

ମିସେସ୍ ଏଲମ୍ୟାନ୍ ମିଷ୍ଟର୍‌ଙ୍କ ବାହାରେ ନିଜ ହାତ ଛୁଆଁଇ କହିଲେ, "ବବ୍, ମୋତେ ଭୋକ ହେଲାଣି ।"

ମିଷ୍ଟର୍ ଏଲମ୍ୟାନ୍ ଚମକି ପଡ଼ି କହିଲେ, "ଆରେ, ମୋତେ ବି ତ ଭୋକ ହେଉଛି ।"

ଜେନ ଏ ଦୁହିଁଙ୍କ ଆଡ଼େ ଚାହିଁଥାନ୍ତି ; ଦୁହେଁ ଭୋଜନାଳୟ ଆଡ଼େ ଗଲେ । ମିସେସ୍ ଏଲମ୍ୟାନ୍‌ଙ୍କ ହାତ ମିଷ୍ଟର୍ ଏଲମ୍ୟାନଙ୍କ ବାହାରେ ଥାଏ । ଦିଶୁଥାଏ, ମିସେସ୍ ଏଲମ୍ୟାନ୍ ସତେ ଯେମିତି ସ୍ୱାମୀଙ୍କର ଆଶ୍ରା ଧରି ଚାଲିଛନ୍ତି ; ବାସ୍ତବରେ କିନ୍ତୁ ସେ ଥାନ୍ତି ସ୍ୱାମୀଙ୍କର ପଥ ପ୍ରଦର୍ଶକ । ଜେନ ଭାବିଲେ, ବାସ୍ତବିକ୍ ମିସେସ୍ ଏଲମ୍ୟାନ୍ ହେଉଛନ୍ତି ସୁଚତୁରା ପତ୍ନୀ ।

ଜେନ ଚଉକିରେ ପଛକୁ ଆଉଜି ବସିଲେ ; ଆଖି ଦୁଇଟି ମୁଜି ମନକୁ ମନ ହସିଲେ । ବିଲ୍ ଖାଇ ସାରି ତାଙ୍କ ପାଖକୁ ଆସିବାର ସେ ଜାଣିଲେ ; ମିସେସ୍ ଏଲମ୍ୟାନ୍ ଯେଉଁ ଚଉକିରେ ବସିଥିଲେ, ବିଲ୍ ଆସି ସେଇ ଚଉକିରେ ବସିବାର ଜାଣି ମଧ୍ୟ ସେ କିଛି କହୁ ନଥାନ୍ତି ।

ବିଲ୍ କହିଲେ, "କ୍ଳାନ୍ତ ଲାଗୁଛି କି, ପ୍ରିୟେ ?"

ଜେନ ଆଖି ଖୋଲି କହିଲେ, "ନା, ତୁମକୁ ଅପେକ୍ଷା କରି ବସିଛି ପରା !"

ବିଲ୍ ତାଙ୍କ ଆଡ଼କୁ ଟିକିଏ ଝୁଙ୍କି ପଡ଼ି କହିଲେ, "ଜେନ ! ଆମର କ'ଣ ପାଇଁ କଳକଳଆ ଲାଗିଥିଲା କି ?"

ଜେନ କହିଲେ, "କେଜାଣି ?—ହଁ, ହଁ, ମନେ ପଡ଼ିଲା—ବିଲ୍, ଚାଲ ଆମେ ଆମ ଘରକୁ ଫେରିଯିବା ।"

ବିଲ୍ ବିସ୍ମିତ ହୋଇ କହିଲେ, "ଆମ ମଧୁରାତ୍ରିର ମାସକ ପୂରିବା ପୂର୍ବରୁ !"

ଜେନ କହିଲେ, "ହଁ, ଚାଲ ଆମେ ଦୁହେଁ ଆମ ନିଜ ଛୋଟିଆ ଘରକୁ ଫେରିଯିବା; ଯାଇ, ଦାଣ୍ଡଦୁଆର ଭିତରୁ କିଳିଦେଇ ନିର୍ଜନରେ ସେଇଠାରେ ମଧୁରାତ୍ରି କଟାଇବା—ତୁମେ ଓ ମୁଁ । ତୁମକୁ ଧରି ସାଙ୍ଗେ ସାଙ୍ଗେ ଘରକୁ ଫେରିବାକୁ ମୁଁ ଚାହେଁ ।"

"ଲୋକେ କ'ଣ କହିବେ ?"

"ସେ କଥାକୁ କାନ ଦେବା କି ଦରକାର ? ଆମ ଘର ଭିତରେ ଆମେ ଥାଇ ବୈଠକଘରର କାନ୍ଥ ଗୁଡ଼ିକ ରଙ୍ଗେଇ ଦେବା—ହଳଦୀ ବସନ୍ତର ହଳଦିଆ ରଙ୍ଗରେ । ଦୁଆରେ ଧଳା ପରଦା ଲଗେଇ ଦେବା । କେଡ଼େ ସୁନ୍ଦର ନ ଦିଶିବ ? ମାନସଚକ୍ଷୁରେ ସେ ଦୃଶ୍ୟ ମୋତେ ଦିଶିଯାଉଛି ।"

"ଏଇଥିରେ ତୃପ୍ତି ଆସିବ ବୋଲି ଠିକ୍ ବିଶ୍ୱାସ କରୁଛ ?"

"ହଁ, ଠିକ୍ ବିଶ୍ୱାସ କରୁଛି । ସତେ, ଖୁବ୍ ତୃପ୍ତି ଆସିବ—ତୁମକୁ ଓ ମୋତେ । ଯାହା କରିବା ଆମେ ଦୁହେଁ କରିବା । ଆଉ କେହି ନଥିବେ ।"

ଜେନଙ୍କର ହାତ ଦୁଇଟି ଯୁଗ୍ମ ହୋଇ ତାଙ୍କ କୋଳ ଉପରେ ଥାଏ । ତା'ରି ଉପରେ ବିଲ୍ ନିଜ ହାତକୁ ନେଇ ଥୋଇ କହିଲେ,

"ପ୍ରାଣାଧିକେ ! ମୋ'ଠାରେ ତୁମର ପ୍ରେମ ଯଦି ଅକ୍ଷୁଣ୍ଣ ଥିବ ତେବେ ସବୁ କଥାକୁ—"

ଜେନ ଅନୁଭବ କଲେ, ତାଙ୍କ ବିଲ୍ ପୁଣି ତାଙ୍କରି ପାଖକୁ ଫେରି ଆସିଛନ୍ତି ; କହିଲେ, "ବିଲ୍, ତୁମକୁ ଛାଡ଼ି ମୁଁ ଯେ ରହି ନପାରେ ।"

ବିଲ୍ କହିଲେ, "ସେତିକ ଜାଣିଲେ ମୁଁ ସବୁ ପାଇଲି ।"

ଦୁଇ ଦିନ ପରେ—ନିଜ ଘରେ ଯେଉଁ ମୁହୂର୍ତ୍ତରେ ଯେତେବେଳେ ଜେନ ପଶିଲେ ସେତେବେଳେ ସେ ହୃଦୟଙ୍ଗମ କଲେ, ବିପଦ ଦୂର ହୋଇଛି । ବିଲ୍ ଏଥର ତାଙ୍କର ନିଜସ୍ୱ ; ଜଳପ୍ରପାତର ଆଉ ଶକ୍ତି ନାହିଁ ତାଙ୍କୁ ଟାଣି ନେବାକୁ । କେଡ଼େ ସୁନ୍ଦର ଏ ଘରଟି—ଖୁବ୍ ଗ୍ରେଟ, ଭବିଷ୍ୟତରେ ଗୃହଏ ପୁଅଝିଅ ହେଲେ, ଅବଶ୍ୟ ଅଣ୍ଟିବ ନାହିଁ—କିନ୍ତୁ ବର୍ତ୍ତମାନ, ତାଙ୍କ ଦୁହିଁଙ୍କ ପାଇଁ ଏଇ ଘର ଯଥେଷ୍ଟ । ଓହୋ, ମଧୁଯାମିନୀର ଇତି ହୋଇଯିବାରୁ ତାଙ୍କୁ ଆଜ କେଡ଼େ ଆନନ୍ଦ ଲାଗୁଛି—ଅକୃତ୍ରିମ ଆନନ୍ଦ ।

— — —

## ସେନାପତି ଓ ସଚିବ

ତିକ୍ତଖସ୍ଥ ପର୍ବତର ଗୋଟିଏ ମୋଡ଼ ଉପରେ ଠିଆ ହୋଇ ସେନାପତି ତାଙ୍କ ବାହିନୀକୁ ଚାହିଁଥାନ୍ତି । ସୈନ୍ୟମାନେ, ଜଣକ ପଛେ ଜଣେ ଧାଡ଼ି ଧରି, ଗୋଟିଏ ସରୁ ଲମ୍ବ ଲାଇନ୍‌ରେ ସଂକୀର୍ଣ୍ଣ କଂକରିଳ ପାର୍ବତ୍ୟ ରାସ୍ତାରେ ପର୍ବତ ଉପରକୁ ଚଢ଼ୁଥାନ୍ତି ; ମୁହଁରେ ପିଟିହେଉଥିବା ଘୋର ଶୀତ ପବନର ଚୋଟରେ ପ୍ରତ୍ୟେକଙ୍କ ମୁହଁ ଟଳକୁ ହୋଇ-ଯାଇଥାଏ । ଧାଡ଼ିରେ ଥାନ୍ତି ମୋଟ ହଜାରେ ସୈନ୍ୟ, ପ୍ରତ୍ୟେକଙ୍କ ହାତରେ ଖଣ୍ଡେ ଖଣ୍ଡେ ଅସ୍ତ୍ର । ସେନାପତିଙ୍କର ଦୃଢ଼ ବିଶ୍ୱାସ, ତାଙ୍କର ଏଇ ବାହିନୀ ଅପରାଜେୟ, ସଂସାରରେ ଯୁଦ୍ଧ ପରି ସେନା ଆଉ ନାହାନ୍ତି । ଦୁର୍ଗମ ଗିରିପଥରେ ସେମାନଙ୍କୁ ଉତ୍ସାହିତ କରିବାକୁ ସେନାପତି ଉଚ୍ଚସ୍ୱରରେ ନିର୍ଦ୍ଦେଶ ଦେଲେ—

"ଆଜ ରାତିରେ ଏଇଠାରେ ଛାଉଣୀ ପକାଇବା !"

ତାଙ୍କ ନିର୍ଦ୍ଦେଶକୁ ସେନାବାହିନୀ ସ୍ୱାଗତ କଲେ ; ସବୁବେଳେ କରନ୍ତି । ପ୍ରତ୍ୟେକ ସୈନ୍ୟ ମୁହଁ ଟେକି ତାଙ୍କ ଆଡ଼କୁ ଚାହିଁଲେ ଓ ଟିକିଏ ଟିକିଏ ହସିଲେ । ଆତ୍ମସନ୍ତୋଷର ଉଷ୍ମ ସ୍ପର୍ଶ ସେନାପତିଙ୍କ ହୃଦୟ୍ତରେ ଲାଗିଲା । ସୈନ୍ୟମାନେ ତାଙ୍କୁ ଭଲ କରି ଦେଖି ପାରିବେ ବୋଲି ସେ ଗୋଟିଏ ବଡ଼ ଶିଳାଖଣ୍ଡ ଉପରକୁ କୁଦି ପଡ଼ି ତା'ରି ଉପରେ ଠିଆ ହେଲେ – ହାତ ଦୁଇଟା ଛାତି ଉପରେ ଛନ୍ଦି ହୋଇଥାଏ, ଗୋଡ଼ ଯୋଡ଼ିକ ଫରକଟି ହୋଇଥାଏ, ତିବ୍ବତୀୟ ପ୍ରଖର ସୂର୍ଯ୍ୟକିରଣ ସମଗ୍ର ଶରୀରକୁ ଉଜ୍ଜ୍ୱଳ କରୁଥାଏ । ତାଙ୍କର ପୃଷ୍ଠଦେଶରେ ଥାଏ ବରଫାବୃତ ପର୍ବତ-ମାଳାର ଉନ୍ନତ ଶୃଙ୍ଗାବଳୀ । ମହତ୍ତ୍ୱର ଗାମ୍ଭୀର୍ଯ୍ୟରେ ତାଙ୍କର ମୁଖମଣ୍ଡଳ ଉଦ୍ଭାସିତ ହୋଇଥାଏ , ମନର ଆନନ୍ଦରେ ଫୁଟି ଉଠୁଥିବା ମୃଦୁହାସ୍ୟକୁ ସେ ଚେଷ୍ଟା କରି ଚାପି ରଖୁଥାନ୍ତି । ଲୋକନାୟକ ମୁହଁରେ, ବିଶେଷ କରି

ଲୁଣ୍ଠିପ୍ତ ସେନାବାହିନୀର ସେନାପତିଙ୍କ ମୁହଁରେ ହାସ୍ୟ ଶୋଭା ପାଉନାହିଁ। ସାମାନ୍ୟ ନୁହେ ଏ କାହାଣୀ—ଏହାର ସୈନ୍ୟମାନେ ତାଙ୍କ ନିଜ ଅସ୍ତ୍ରଗୁରୁ କଣାସର୍ପାସୁରଙ୍କ ଶୃଙ୍ଖଳିତ ହିଣ୍ଟିପ୍ତ ଯୁଦ୍ଧ କ୍ଷେତ୍ରର ସେନାରେ ଯୁଦ୍ଧ କରିଥିଲେ। ତାଙ୍କର ନମସ୍ୟ ଅସ୍ତ୍ରଗୁରୁ—ଯୁଦ୍ଧରେ ଗୋଟିଏ ଆଖି ଫୁଟି ଯାଇଥିବାରୁ ସୈନ୍ୟମାନେ ତାଙ୍କୁ ଶ୍ରଦ୍ଧାରେ ନାମ ଦେଇଥାନ୍ତି, 'କଣା-ସର୍ପାସୁର।'

ଆଜି ଯେ ତାଙ୍କୁ ଏ ଅଭିଯାନର ନେତାଭାବେ ନିଯୁକ୍ତ କରି ଏଠାକୁ ପଠା ହୋଇଛି, ତାହା ତାଙ୍କର ବହୁ ବର୍ଷର ବିଶ୍ୱସ୍ତ ଓ କଠୋର କାର୍ଯ୍ୟର ପୁରସ୍କାର ବୋଲି ସେନାପତି ମନେ କରୁଥାନ୍ତି। ଆଜିକୁ ୧୫ବର୍ଷ ପୂର୍ବର କଥା ; ସେତେବେଳେ ତାଙ୍କୁ ସତର ବର୍ଷମାତ୍ର। କମ୍ୟୁନିଷ୍ଟ ସେନାର କେତେଜଣ ସେନାପତି ତାଙ୍କ ଗାଁରେ ଯାଇ ପହଞ୍ଚିଲେ, କମ୍ୟୁନିଷ୍ଟ ସେନା ପାଇଁ ସୈନ୍ୟ ସଂଗ୍ରହ କରିବାକୁ। ତାଙ୍କୁ ଓ ତାଙ୍କ ବନ୍ଧୁ ଜାଓ-ଲିଙ୍କୁ ସେଇଥର ଏମାନେ ଧରି ସେନାଭୁକ୍ତ କରିଥିଲେ। ତାଙ୍କ ଦୁହିଙ୍କ ବ୍ୟତୀତ ଆଉ ୨୩ ଜଣ ମଧ୍ୟ ଧରା ହୋଇଥିଲେ—ଯୁଆଙ୍କ ଭିତରୁ କେତେଜଣ ତାଙ୍କର ପରି ଟୋକା, ଆଉ କେତେଜଣ ବୟସରେ ଟିକିଏ ବଡ଼। ଯୁଆଙ୍କର ଭିତରେ ଜଣେ ଥିଲା, ଯ୍ୱାଙ୍ଗ୍-ଫୁ-ଫିଙ୍ଗ୍ ରୋଗଣା ଓ ଦୁର୍ବଳିଆ ଟୋକାଟିଏ। ତା' ଶୀର୍ଣ୍ଣକାୟ ଯୋଗୁଁ ସେନାପତିମାନେ ତା'କୁ ନେବାକୁ ନାହିଁ କରି ଦେବାରୁ ସେ ସେମାନଙ୍କଠାରେ ଅଳିକଲା, ଯିବାକୁ।

"ଏ ଗାଁରେ ଏକୁଟିଆ ମୁଁ ଲେଖି ପଢ଼ି ଜାଣେ। ମୁଁ ମାର୍କସ୍ ଓ ଲେନିନ୍‌ଙ୍କ ବହି ପଢ଼ିଛି ; ଆମ ବିଖ୍ୟାତ ନେତା ମାଓଙ୍କ ଲେଖା ସବୁ ବି ପଢ଼ିଛି। ଅନୁଗ୍ରହ କରି ମୋତେ ନିଅନ୍ତୁ, ମୁଁ ଆମ କମ୍ୟୁନିଷ୍ଟ ରାଷ୍ଟ୍ରର ବେଶ୍ କାମରେ ଆସିବି।"

କମ୍ୟୁନିଷ୍ଟ ଦଳ ଓ କମ୍ୟୁନିଷ୍ଟ ସେନା ଉଭୟ ପାଇଁ ନୂଆ ଲୋକ ଖୋଜିବା ତ ଥିଲା ଏହି ସାମରିକ ଅଫିସର୍‌ଙ୍କ କାମ। ସେମାନେ ଯ୍ୱାଙ୍ଗ୍-ଫୁ-ଫିଙ୍ଗ୍‌ଙ୍କ ଆବେଦନ, ବିଚାରକୁ ନେଇ, ତାଙ୍କୁ କେତେଗୁଡ଼ିଏ ପ୍ରଶ୍ନ ପଚାରିଲେ। ତା'ଙ୍କ ଉତ୍ତରଗୁଡ଼ିକ ସନ୍ତୋଷଜନକ ହେବାରୁ ଅନ୍ୟ ସମସ୍ତଙ୍କ ସଙ୍ଗେ ସେ ବି ବାଛିହେଲେ। କର୍ତ୍ତାମାନେ ଯ୍ୱାଙ୍କୁ ନେଇ ଗୋଟିଏ ରାଜନୈତିକ ବିଦ୍ୟାଳୟରେ ଭର୍ତ୍ତିକଲେ ; ଉଦ୍ଦେଶ୍ୟ, ସେଥିରୁ ଉତ୍ତୀର୍ଣ୍ଣ

ହେଲେ ସେ ହେବେ ଶାସନ ବିଭାଗର ଅଧିକାରୀ, ସଚିବ । ସ୍ଥାଙ୍ଗ୍-ଫୁଙ୍କର ବିଚକ୍ଷଣ ବୁଦ୍ଧି ; ଖୁବ୍ ଶୀଘ୍ର ସେ ବିଦ୍ୟାଳୟର ପାଠ ଶେଷ କରିଦେଲେ । ସେ ଘୋର ଚରଣ-ଚୁଟିଆ ଲୋକ—ନିଜର ଉପରସ୍ଥ ଲୋକଙ୍କ ପ୍ରତି ଖୁବ୍ ଶିଷ୍ଟ ଓ ବାଧ୍ୟ, କିନ୍ତୁ ନିଜର ନିମ୍ନସ୍ଥ ଲୋକଙ୍କ ପ୍ରତି ଅତି ଅସହିଷ୍ଣୁ ଓ ନିର୍ମମ । ସେ ତାଙ୍କଠାରୁ ଅତି ନିକୃଷ୍ଟ ବୋଲି ବିଚାରନ୍ତି, ତାଙ୍କ ଗାଁର ସେଇ ପିଲାମାନଙ୍କୁ, ଯେଉଁମାନେ ତାଙ୍କର ସଙ୍ଗେ ବଡ଼ ହୋଇ ଅଣା ହୋଇଥିଲେ — ବିଶେଷ କରି ନିକୃଷ୍ଟ ବୋଲି ବିଚାରନ୍ତି ସ୍ଥାଙ୍କୁ, ଯେ ଆଜି ଉତ୍ତପ୍ତ ବାହିନୀର ସେନାପତି । ଏହି ସେନାପତି ପିଲାଦିନେ ଥିଲେ, ତାଙ୍କ ଗାଁର ସବୁଠାରୁ ସୁଶ୍ରୀ ଓ ବଳବାନ୍ ଯୁବକ ; ଦୌଡ଼ାଦୌଡ଼ିରେ ସେ ସମସ୍ତଙ୍କୁ ଟପିଯା'ନ୍ତି । ଆଜି ଯେ ସଚିବ ହୋଇଛନ୍ତି ତାଙ୍କ ବାପମା', ସେତେବେଳେ ଏଇ ସେନାପତିଙ୍କୁ ଗୁହାଁ କହନ୍ତି, "ଭଗବାନ୍ ଆମକୁ ହେଲେ ଏଇମିତି ପୁଅଟିଏ ଦେଇଥାନ୍ତେ, ଏ ରୋଗଣା ପିଲାଟାର ବଦଳି ।" ଆଜଯାଏଁ ସଚିବ, ନିଜ ବାପ ମାଙ୍କର, ତାଙ୍କ ବିଷୟରେ ଏଇ ମନ୍ତବ୍ୟ ପାସୋରିନାହାନ୍ତି, କି ସେନାପତିଙ୍କୁ, ତାଙ୍କ ସୁନ୍ଦର ଚେହେରା ଓ ସୁସ୍ଥ-ସବଳ ଶରୀର ପାଇଁ କ୍ଷମା ଦେଇନାହାନ୍ତି ।

ସଚିବ ନିଜ ବନ୍ଧୁମାନଙ୍କ ଆଗରେ ଏବେ ବି କହନ୍ତି, "ଏଇ ଲୋକଟାକୁ ମୁଁ ତା' ଜନ୍ମରୁ ଜାଣେ—ଭଲ ବଳଦଟାଏ, ଅତି ବୋକା । ତା' ଉପରେ ନଜର ରଖିବାକୁ ହେବ । ଆମେ ତା'କୁ ଏତେ ଶିକ୍ଷା ଦେଲା ପରେ ବି, ସେ ଦୟାର୍ଦ୍ର ଓ ଭାବପ୍ରବଣ ହୋଇ ରହିଛି ବୋଲି ମୋର ଆଶଂକା ।"

ପ୍ରକୃତରେ ସେନାପତିଙ୍କ ହୃଦୟଟି କୋମଳ ଓ ସେ ସ୍ୱତଃ ସମସ୍ତଙ୍କୁ ଶ୍ରଦ୍ଧା କରନ୍ତି । ଯେଉଁଦିନ ସେନାବିଭାଗ ଅଫିସର୍‌ମାନେ ତାଙ୍କୁ ଗାଁରୁ ଧରି ଆଣିଥିଲେ ସେଦିନ ମା'ଙ୍କୁ ଛାଡ଼ି ଆସିବାବେଳେ ସେ ବୋବାଳି ଛାଡ଼ିଥିଲେ । କିନ୍ତୁ ପ୍ରଥମେ ହୋଇଥିବା ଭୟ ଛାଡ଼ିଯିବାରେ, ନୂତନ ଜୀବନକୁ ସେ ଆନନ୍ଦରେ ଗ୍ରହଣ କରିଗଲେ । ଅବଶ୍ୟ, ତାଙ୍କ ପିଲାଦିନ ସାଙ୍ଗ କାଓ ଲି ପାଖରେ ଥିବାରୁ ଗାଁର ମାୟା ଛାଡ଼ିବା ସହଜ ହୋଇଥିଲା । କିନ୍ତୁ ଗାଁ କଥା ଦୂର ପାସୋରି ପାରିନଥାନ୍ତି । କାଓ-ଲି ଓ ସେ ଏକାନ୍ତରେ ଗାଁ କଥା, ବାପ ମା'ଙ୍କ କଥା କଥାବାର୍ତ୍ତା ହୁଅନ୍ତି । ଏଭଳି ସ୍ନେହମମତାର ସ୍ମୃତିକୁ

ଝୁରି ହେଲେ ନିଜ କର୍ତ୍ତବ୍ୟରେ ମନ ଲାଗିବ ନାହିଁ ବୋଲି, ଛାଉଣୀରେ ଏ ସବୁ କଥା ପକାଇବା ମନା । କାଓ-ଲି ଓ ସେ ଖୁବ୍ ଗୁପ୍ତରେ ଦୁଃଖ ସୁଖ ହୁଅନ୍ତି ।

ସେନାପତିଙ୍କ ପ୍ରତି ଛାଉଣୀରେ କର୍ତ୍ତୃପକ୍ଷ କୌଣସି ଦୁର୍ବ୍ୟବହାର କରି ନଥିଲେ ; ତାଙ୍କ ମନ ନିର୍ମଳ ଥିବାରୁ ସେ ନୂଆ ଜୀବନକୁ ସରଳଭାବେ ଗ୍ରହଣ କରି ନେଲେ । ଶତ୍ରୁ ସଙ୍ଗେ ଲଢ଼େଇ—ଥରକୁ ଥର ଆକ୍ରମଣ କରି ନିଜପଦରେ ବାହୁଡ଼ି ଯିବାରେ ତାଙ୍କ ମନ ଉତ୍ଫୁଲ୍ଲ ଥାଏ । ବର୍ଷେ ଖଣ୍ଡେ ସେନାରେ ରହିଯିବା ପରେ ବାପମା'ଙ୍କ କଥା ମନରୁ ପାସୋରି ହୋଇଗଲା ଓ ସୈନ୍ୟସାଥିମାନେ ତାଙ୍କ ହୃଦୟରେ ସ୍ଥାନ ପାଇଗଲେ । କାଓ-ଲି ତ ମୂଳରୁ ଭାଇପରି ନିଜର ହୋଇ ପାଖେପାଖେ ରହି ଆସିଛନ୍ତି—ଆଜି କାଓ-ଲି ତାଙ୍କର ବିଶ୍ୱସ୍ତ ସହକାରୀ ।

ସେନାପତିଙ୍କର ବଳୁଆ ଦେହ ଯୋଗୁଁ ତାଙ୍କୁ ସାମରିକ ଶିକ୍ଷା-ଳୟକୁ ପଠାହୋଇଥିଲା—ମନର ଉତ୍ସାହ ଓ ତେଜ ଯୋଗୁଁ ସେ ସୈନ୍ୟ ବିଭାଗରେ ଖୁବ୍ ଶୀଘ୍ର ଉପରକୁ ଉଠିଲେ । ତାଙ୍କ ଉତ୍ସାହର ପ୍ରଶଂସା କରି, କର୍ତ୍ତୃପକ୍ଷ ତାଙ୍କୁ ଜଣାଇ ଦେଇଥିଲେ ଯେ, ସୈନ୍ୟ ବିଭାଗରେ ତାଙ୍କ ଉନ୍ନତି ବିଷୟ ତାଙ୍କ ପରିବାରକୁ ଜଣାଇ ଦିଆ ହୋଇଛି ଓ ତାଙ୍କ ଯୋଗୁଁ ତାଙ୍କ ପରିବାରକୁ କେତେକ ସ୍ୱତନ୍ତ୍ର ସୁଖସୁବିଧା ଦିଆହୋଇଛି । ବର୍ଷକୁ ଥରେ, ନୂଆ ବର୍ଷ ଆରମ୍ଭରେ ସେ ଘରକୁ ଖଣ୍ଡିଏ ଖଣ୍ଡିଏ ଚିଠି ଦିଅନ୍ତି, ଓ ପ୍ରତିବର୍ଷ ଉତ୍ତର ଖଣ୍ଡିଏ ଆସେ—ପରିବାରର ଲୋକେ ସୁଖ ଓ ସନ୍ତୋଷରେ ଅଛନ୍ତି ବୋଲି ସେଥିରେ ଲେଖା ଥାଏ ; ନୂଆ କମ୍ୟୁନିଷ୍ଟ ଶାସନକୁ ତାରିଫ୍ କରି ବି ଲେଖିଥାନ୍ତି । ସେନାପତି, ଏହିପରି ତାଙ୍କ ପରିବାରର ହିତ କରୁଛନ୍ତି ବୋଲି ଆତ୍ମତୁଷ୍ଟି ଅନୁଭବ କରୁଥାନ୍ତି । ପରିବାର ସଙ୍ଗେ ସମ୍ପର୍କ ରଖିବାର କୌଣସି ପ୍ରୟୋଜନ ତାଙ୍କର ନଥିଲା, ତଥାପି ନିଜ ଲୋକେ ତ, ପୂରା ପାସୋରି ହେଉଛି କେତେକେ ?

ଆଜି ଡକଚି ରାସ୍ତା କଡ଼ର ପଥର ଉପରେ ଠିଆ ହୋଇ ସେ ସେଇ ଘର କଥା ଭାବୁଥାନ୍ତି । ଭାବୁଥାନ୍ତି, ଏ ଅଭିଯାନଟି ସରିବାମାତ୍ରେ ଏ ବିଷୟରେ ଘରକୁ ଚିଠି ଦେବେ , ଏଥର ଆଉ ଚିଠି ଦେବାକୁ ନୂଆବର୍ଷ ଆସିବାପାଇଁ ଅପେକ୍ଷା କରିବେ ନାହିଁ । ଅଭିଯାନରେ ଯେ ସେ ନିଶ୍ଚୟ

ସଫଳ ହେବେ, ସେଥିରେ ତାଙ୍କର ଆଦୌ ସନ୍ଦେହ ନଥାଏ । ତାଙ୍କର ପୂର୍ଣ୍ଣ ବିଶ୍ୱାସ ଥାଏ, ଏଥର ଯଶ ଅର୍ଜିଲେ ତାଙ୍କ ଆତ୍ମୀୟ ସ୍ୱଜନ କାହିଁକି ତାଙ୍କ ଗାଁଯାକ ସମସ୍ତେ ତାଙ୍କ ସମ୍ମାନରେ ସମ୍ମାନିତ ହେବେ ।

ଏ ଅଭିଯାନ ପାଇଁ ତାଙ୍କୁ ତାଙ୍କର ସେନାନାୟକ ଯେଉଁ ନିର୍ଦ୍ଦେଶ ଦେଇଥିଲେ ତାହା ମୂଳରୁ ଶେଷଯାଏଁ ତାଙ୍କର ପରିଷ୍କାର ମନେ ପଡ଼ିଗଲା । ସେ ନିର୍ଦ୍ଦେଶ ଦେଇଛନ୍ତି—"ତୁମେ ଯିବ, ପଶ୍ଚିମରେ ପ୍ରଥମେ ପଡ଼ିବ ଯେଉଁ ସୈନ୍ୟ ଘାଟି ସେଇଠିକୁ । ତାଙ୍କୁ ରସଦ ଦେବ, ରୌପ୍ୟକ ବି ଦେବ । ସେଠାରେ ଯାଇ ପହଞ୍ଚିବାକୁ ଲାଗିବ ଛ' ଦିନ ।" ତା'ପରେ ସେନାନାୟକ, ବୁଲି ପଡ଼ିଥିଲେ ତାଙ୍କ ପଛ ଆଡ଼ କାନ୍ଥରେ ଟଙ୍ଗା ହୋଇଥିବା, ଭିତ୍ତିଚର ଗୋଟିଏ ବଡ଼ ମାନଚିତ୍ର ଆଡ଼କୁ, ଓ ପୁଣି କହିଲେ, "ହେଇଟି, ତୁମେ ଯିବ ଏଇ ଜାଗାକୁ"—ମାନଚିତ୍ରର ଗୋଟିଏ ଜାଗାରେ ସେ ଆଙ୍ଗୁଠି ମାରିଲେ, "ତୁମ ଜିମାରେ ରୁପାଖାଡ଼ିର ଯେଉଁ ବାକ୍‌ସଟି ଦିଆହେଉଛି, ଏଥିପାଇଁ ତୁମେ ନିଜେ ପୁରାପୁରି ଦାୟୀ । ସେ ଘାଟିର ସୈନ୍ୟଙ୍କୁ ଦରମା ଦେବା, ରସଦ କିଣିବା ଓ ସେ ଜାଗାର କୁଲିଙ୍କୁ ମଜୁରି ଦେବାରେ ଏ ରୁପା ଲାଗିବ—"

ସେନାନାୟକ ଏଇଠାରେ ଅଟକି ଯାଇ ପଛ ଆଡ଼କୁ ବୁଲିଁ, ପୁଣି କହିଲେ, "ହଁ, ହଁ— ଏ ସଚିବ ମଧ୍ୟ ତୁମ ସାଙ୍ଗେ ଯିବେ । ସେ ସାଙ୍ଗରେ ଥିବା ହେତୁ, ତୁମେ ସାମରିକ କାର୍ଯ୍ୟରେ ପୁରା ମନ ଦେବାକୁ ସମର୍ଥ ହେବ ।"

ସେନାନାୟକ ପଛ ଆଡ଼େ ଠିଆ ହୋଇଥାନ୍ତି, ସଚିବ, ୟାଙ୍ଗ୍-ଫୁ-ପିଙ୍ଗ୍ । ଏତେବେଳକୁ ସେ ଦିଶୁଥାନ୍ତି ସାବନା, ଅତି ପତଳା, ଖଙ୍କାପୁ—ପିନ୍ଧିଥାନ୍ତି ମଇଳା ଧଳା ପୋଷାକ । ଏ ରୂପରେ ମଧ୍ୟ ସେନାପତି ତାଙ୍କୁ ବେଶ୍ ଚିହ୍ନି ପାରିଲେ । ପ୍ୟୁ ପିଲା ଦିନର ସେଇ ଉଦ୍ଧତ ଶତ୍ରୁ—ୟାଙ୍କର ପିଲା ଦିନର ଘୃଣାପୂର୍ଣ୍ଣ ଦୃଷ୍ଟି ଓ ଦୃପ୍ତ ମୁଖଭଙ୍ଗୀ ମନେ ପଡ଼ିଗଲା । ଏବେ ବି ସେ ମୁହଁ ଓ ବୃହାଣି ସେଇମିତି ଅଛି । ଏବେ ସଚିବ ହୋଇଥିବା ଏଇ ଲୋକ ଉପରେ ସେନାପତିଙ୍କ ଦୃଷ୍ଟି ପଡ଼ନ୍ତେ, ଗାଁରେ ପ୍ୟୁ ଯେପରି ଅଟ୍ଟହସା ଓ ବିଦ୍ରୂପ କରି ତାଙ୍କୁ ତଡ଼ାଉଥିଲେ ସେ ସବୁ ମନେ ପଡ଼ିଗଲା ।

ସେତେବେଳେ ପ୍ୟୁ କହୁଥିଲେ, "ଉଠ୍‌ବେ, ବଳଦ, ମୋ ଆଗରୁ ଉଠ୍ ! ଜାଣୁ, ମୁଁ ପାଠ ପଢ଼ିଛି, ଆଉ ତୁ—"

ପୁଣି ଥରେ—"କଇଁଛ ଡମ୍ବ କାହାଁକା—ଭୁ' ବାପର ପିଲ ନୋହୁ—"

ଆଉ ଥରେ—"ବେଧୁଆ ! ମୂର୍ଖ ! ଲେଖାପଢ଼ା ତୋ ଦେହାନ୍ତ ହେବ ନାହିଁ—ତୋ' ମୋଟା ମସ୍ତିଷ୍କରେ ପାଠ ପଶିବ କୁଆଡ଼ୁ ?"

ଏଇ କଥା ସବୁ ମନେ ପକାଇ ସେନାପତି ସେନାନାୟକଙ୍କୁ କହିଲେ, "ସେ ସଚିବ ମହାଶୟ ପାର୍ବତ୍ୟ ରାସ୍ତାରେ ଯାଇ ପାରିବେଟି ? ବାଟରେ ଭଲ ଖାଇବାକୁ ମିଳିବ ନାହିଁ , ଥଣ୍ଡା ପବନ ତ ସ୍ୱାଙ୍କ କଳିଜା ଥରାଇ ଦେବ !"

ସେନାନାୟକ ଉତ୍ତର ଦେଲେ, "ସେ ଆମର ସବୁଠାରୁ ଭଲ, ଗୁଣିକ ସଚିବ । ତାଙ୍କୁ ବାଟରେ ଗୋଟିଏ ଘୋଡ଼ା ଦେବ ଚଢ଼ିକରି ଯିବାକୁ ; ପର୍ବତର ଯେଉଁ ପଟେ ପବନ ହେଉନଥିବ ସେଇପଟେ ସ୍ୱାଙ୍କ ତମ୍ବୁ ପକାଇବ ।······ବର୍ବର ଗିରିଜାତିଙ୍କ ସଙ୍ଗେ ମୁକାବିଲା କରିବାରେ ସ୍ୱାଙ୍କର ସାହାଯ୍ୟ ତୁମର ଖୁବ୍ ଦରକାର ହେବ । ଗିରିଜାତି ଭାଷା ତୁମକୁ ଜଣାନାହିଁ, କିନ୍ତୁ ସେ ଜାଣନ୍ତି ।"

ସେନାପତି ଓ ସଚିବ ବହୁ ସମୟ ପରସ୍ପରକୁ ଚକଆଁଚକେଇ ହୋଇ ରହିଲେ । ଶେଷରେ ସେନାପତି ତାଙ୍କ ଆଡ଼ୁ ମୁହଁ ବୁଲାଇ ଦେଲେ ।

ସେ ସେନାନାୟକଙ୍କୁ ପଚାରିଲେ, "ରାସ୍ତାରେ କ ପ୍ରକାର ବିପଦର ସମ୍ମୁଖୀନ ହେବାର ସମ୍ଭାବନା ?"

ସେନାନାୟକ ସେ ଆଶଂକାକୁ ବେଖାତିର କରି କହିଥିଲେ, "ବିପଦ୍‌ର କୌଣସି ସମ୍ଭାବନା ନାହିଁ । ଖୁବ୍ ହେଲେ କେତୋଟା ଗିରିଜାତି ବାଟମାରଣା ହାବୁଡ଼େ ପଡ଼ିପାରନ୍ତି । ସେମାନେ ତୁମର କରିବେ କ'ଣ ? ଧନୁଶର ସେମାନଙ୍କର ଏକମାତ୍ର ଅସ୍ତ୍ର ।"

କିନ୍ତୁ ସେନାପତି ଯେତେବେଳେ ଆସି ଅଭିଯାନ ପାଇଁ ପ୍ରସ୍ତୁତ ହେଉଥିବା ତାଙ୍କ ସୈନ୍ୟମାନଙ୍କୁ ଏକଥା କହିଲେ, ସେତେବେଳେ ସେମାନେ ବାଟର ବିପଦ୍‌କୁ ସେନାନାୟକଙ୍କ ପରି ବେଖାତିର କଲେ ନାହିଁ । ସେନାପତି ଦେଖି ଆଶ୍ଚର୍ଯ୍ୟ ହେଲେ ଯେ, ତାଙ୍କ ସୈନ୍ୟମାନେ, ଯାହାଙ୍କର "ସ୍ୱାଙ୍ଗସି ଅବବାହିକାର ନିର୍ଭୀକ ପର୍ଯ୍ୟଟକ" ବୋଲି ନାମ

ଅଛି, ସେମାନେ ଭିଏତ୍ନାମ୍ର ପର୍ବତଗୁମ୍ଫା କଥା ଶୁଣି ଡରିଗଲେ ; ସୈନ୍ୟଙ୍କ ଭିତରେ ଉପୁରେ ଫୁସ୍ଫାସ୍ ହେବାର ବି ଶୁଣାଗଲା—

"ଜଙ୍ଗଲ ଭିତରେ କେତେ ବାଟମାରଣା ଛପି ରହିଥିବେ କିଏ କହିବ ?"

"ସେମାନଙ୍କ ପାଖେ ବନ୍ଧୁକ ନଥିବ ବୋଲି କିଏ କହିବ ?"

ଏଭଳି ଆଶଂକା ଶୁଣି ସଚିବ ଅଗ୍ନିଶର୍ମା ହୋଇଯାଇଥିଲେ । "ଆମର ମହାନ୍ ନେତା ମାଓଙ୍କୁ ବିଶ୍ୱାସ କର ନା ନାହିଁ ? ଭିଏତ୍ନାମ୍ର ଲୋକେ ହଜାର ହଜାର ବର୍ଷ ହେଲା ପରାଧୀନ ହୋଇଥିଲେ ; ଏବେ ପୁଞ୍ଜିବାଦୀ ପାଶ୍ଚାତ୍ୟ ଶ୍ୱାପଦଙ୍କ କବଳରୁ ଆମେ ଏମାନଙ୍କୁ ମୁକ୍ତ କରିଥାଇଁ । ଏଭଳି ଲୋକେ ଆମକୁ ଘୃଣା କରିବେ ? ଓଲଟି ସେମାନେ ଆମକୁ ସ୍ୱାଗତ କରିବାକୁ ତିଆର । ଆମ ମହାନ୍ ନେତା ମାଓଙ୍କ ଇଙ୍ଗିତରେ ସେମାନେ ଯଥାର୍ଥ ସମାଜବାଦୀ ହେବାକୁ ଦିବାରାତ୍ର ଉଦ୍ୟମ କରୁଛନ୍ତି ।"

ସଚିବଙ୍କ କଥାରେ ପାଟି ଫିଟାଇବା ମନା, ତେଣୁ ସୈନ୍ୟମାନେ ଏକଥା ଶୁଣି ଚୁପ୍ ରହିଲେ । କିନ୍ତୁ ସେନାପତି ଚୁପ୍ ହୋଇ ରହି ପାରିଲେ ନାହିଁ—

"ମୋର ସୈନ୍ୟମାନେ ନିଜ କର୍ତ୍ତବ୍ୟ ବେଶ୍ ଭଲ ଜାଣନ୍ତି । କୌଣସି ବିଷୟରେ ତାଙ୍କର ସଂଶୟ ରହିଲେ, ମୁଁ ତାହା ଦୂର କରି ପାରିବି ।"

ସଚିବ ଏକଥାର ଉତ୍ତର ଦେଲେ, କଥାରେ ନୁହେଁ କାର୍ଯ୍ୟରେ - ସେ ଥୁକିନି ତଳେ ଛେପ ଲେଣ୍ଡେ ପକାଇ ଦେଲେ ଓ ଗୋଡ଼ରେ ତାକୁ ଭୂଇଁରେ ଘଷି ଦେଲେ । ସେନାପତିଙ୍କ ପାସୋର ହୋଇ ଯାଇଥିବା ପିଲାଦିନ କଥା ମନେ ପଡ଼ିଗଲା । ଗାଁ ପିଲାମାନେ ପୂଜାଙ୍କ ଦୁର୍ବଳିଆ ରୋଗା ଦେହକୁ ଟାପରା କଲେ, ଏଇ ସଚିବ ଏଇପରି ଛେପ ପକାଇ, ଛେପକୁ ଗୋଡ଼ରେ ଦଳି, ଜବାବ୍ ଦିଅନ୍ତି—ମୁଁ ତୁମ ଉପରେ ଛେପ ପକାଉଛି ଓ ତୁମକୁ ଦଳି ଦେଉଛି—ଛେପପକା ଓ ଛେପ ଲେସିବାର ଏଇ ଅର୍ଥ ।

ସଚିବ ସେନାପତିଙ୍କ କଥାକୁ ପ୍ରାସଙ୍ଗରେ ନପକାଇ ପୁଣି କହିଚାଲିଥିଲେ, "ପାଶ୍ଚାତ୍ୟ ଲୋକେ ଭିଏତ୍ନାମୀଙ୍କୁ ଲାଞ୍ଚ ଦେଇ ଆପଣାର

କରିବାକୁ ଚେଷ୍ଟା କରୁଛନ୍ତି, କିନ୍ତୁ କେତେଜଣ ବୋକା ଲୋକଙ୍କ ବ୍ୟତୀତ ଆଉ କେହି ଏମାନଙ୍କ ଲାଞ୍ଚ ଗ୍ରହଣ କରୁନାହାନ୍ତି । ପୁଣି, ତିବ୍ବତୀୟ-ମାନଙ୍କର ରାଗ ଯେ, ପାଶ୍ଚାତ୍ୟ ଲୋକେ ତାଙ୍କ ନେତା ଦଲେଇ ଲାମାଙ୍କୁ ହରଣଚାଳ କରି ଭାରତରେ ନେଇ ବନ୍ଦୀକରି ରଖିଛନ୍ତି । ପାଶ୍ଚାତ୍ୟମାନଙ୍କ କବଳରୁ ରକ୍ଷା ପାଇ ସ୍ୱାଧୀନ ହେବେ, ତିବ୍ବତବାସୀଙ୍କର ଏହାହିଁ ଆକାଂକ୍ଷା । ଏ ଆକାଂକ୍ଷା ପୂରଣ ହେବା ଉଦ୍ଦେଶ୍ୟରେ ସେମାନେ ସମସ୍ତେ ଆମକୁ ଚାହିଁ ରହିଛନ୍ତି ।"

ସଚିବଙ୍କର ଏହି ପ୍ରୋତ୍ସାହନ ସତ୍ତ୍ୱେ ସୈନ୍ୟମାନେ ଉଦ୍‌ବିଗ୍ନ ଥାନ୍ତି । ପିଲାମାନେ ବାପ ପାଖରେ ଆପତ୍ତି କଲାପରି, ସଚିବ ନଥିଲାବେଳେ ସେମାନେ ସେନାପତିଙ୍କ ଆଗେ ସେମାନଙ୍କ ଉଦ୍‌ବେଗ ପ୍ରକାଶ କରନ୍ତି—ବାଟରେ ଯେଉଁ ତିବ୍ବତୀୟ ଲୋକ ଦେଖାଯାଉଛନ୍ତି ସେମାନେ ବଡ଼ ବଡ଼ ମଣିଷ, ଖୁବ୍ ବଳୁଆ ପରି ଦିଶୁଛନ୍ତି ଓ ମଣିଷ ପରି କଷ୍ଟେମଷ୍ଟେ ନୁହେଁ, ମାଙ୍କଡ଼ମାନଙ୍କ ପରି ଅବଲୀଳାକ୍ରମେ ପର୍ବତ ଉପରକୁ ଚଢ଼ି ଯାଉଛନ୍ତି । ପର୍ବତ ମଝିର ସଂକୀର୍ଣ୍ଣ ରାସ୍ତାରେ କଷ୍ଟେମଷ୍ଟେ ଅଗ୍ରସର ହେବାବେଳେ, ସୈନ୍ୟମାନେ ତିବ୍ବତୀୟଙ୍କ ଭୟରେ ଉଚ୍ଚ ପର୍ବତ ଉପରେ ସନ୍ଦେହ ଆଖି ବୁଲାଇବାର ଦେଖି ସେନାପତି ସେମାନଙ୍କୁ ପରିହାସ କରୁଥାନ୍ତି, ଭର୍ତ୍ସନା ମଧ୍ୟ କରୁଥାନ୍ତି । ହୁଏତ ଯୋଡ଼ାଏ ପୁଞ୍ଜାଏ ବିରୋଧୀ ଲୋକ, ପର୍ବତ ଖୋଲରେ ଲୁଚି ରହି-ଛନ୍ତି—ତାଙ୍କୁ ଏମିତି ଭୟ କ'ଣ କରୁଛ ? ଅଧିକନ୍ତୁ, ଆମକୁ ନିରାପଦ ବାଟ ଦେଖାଇ ନେଇ ଯିବାକୁ ଆମ ସାଙ୍ଗେ ଦୁଇ ଜଣ ତିବ୍ବତୀୟ ଲୋକ ଅଛନ୍ତି—ନିର୍ଭୟରେ ଆଗେଇ ଚାଲ ।

ସୈନ୍ୟମାନଙ୍କୁ ଏପରି ବୋଧ ଦେଉଥିଲେ ହେଁ, ଏହି ତିବ୍ବତୀୟ ପଥପ୍ରଦର୍ଶକଙ୍କ ଯୋଗୁଁ ସେନାପତିଙ୍କ ମନରେ ବହୁତ ଦୁଶ୍ଚିନ୍ତା ହେଉ-ଥାଏ—ଠିକ୍ କାହିଁକି, ସେ ନିଜେ ଜାଣିପାରୁନଥାନ୍ତି । ତିବ୍ବତ ସୀମାରେ ପ୍ରବେଶ କଲାବେଳେ, ସୀମାନ୍ତ ଘାଟିର ଚୀନା ଅଫିସର ତାଙ୍କୁ ସତର୍କ କରି କହିଥିଲେ—ତିବ୍ବତୀୟ ଲୋକ ଗୁଡ଼ାଙ୍କୁ ଟିକିଏ ସାବଧାନ ଥିବ । ସେ ଟୋକାଏ ପର୍ବତ ମଝି ଉପତ୍ୟକାରେ ଲୁଚି କରି ରହନ୍ତି । ପାଉଁଶିଆ ପଥର ସଙ୍ଗେ ତାଙ୍କ ଦେହର ରଙ୍ଗ ମିଶି ଯିବାରୁ ତାଙ୍କୁ ବାରିବା କଷ୍ଟ ହୁଏ । ତିବ୍ବତୀୟଙ୍କୁ ଯେଉଁଠି ଦେଖିବ, ଦେଖିଲା ମାତ୍ରେ ଲୁଟିଦେବ । ସେ

ଗୁଡ଼ାକ ଘର ଦ୍ୱାଲକ, ଦୟା ମାୟା ତାଙ୍କର ନାହିଁ । ତେଣୁ ତାଙ୍କଠାରେ ଦୟାମାୟା ରଖିବ ନାହିଁ ।”

ସେନାପତି ଏଥିକୁ ଜବାବ୍ ଦେଇଥିଲେ, “ଲୁଚି ଛପି କପରି ଆକ୍ରମଣ କରାଯାଏ, ଓ ସେଭଳି ଆକ୍ରମଣର କପରି ପ୍ରତିରୋଧ କରିବାକୁ ହୁଏ—ତାହାର ସୂକ୍ଷ୍ମ ସବୁ ଆମକୁ ଜଣା । ଆମ ମହାନ୍ ନେତା ମାଓ ଯୁଦ୍ଧ ବେଳେ ଯେଉଁ କୌଶଳ ସବୁ କରିଥିଲେ ତାହା ମୁଁ ତାଙ୍କ ନିଜ ମୁହଁରୁ ଶୁଣିଛି ।”

ନିଜ ସୈନ୍ୟମାନଙ୍କ ଆଗେ ଆଗେ ଚାଲି ଚାଲି ଅଗ୍ରସର ହେଲା ବେଳେ ସେ ପ୍ରତି ପଦରେ ଖୁବ୍ ସତର୍କ ରହୁଥାନ୍ତି । ମାଲବାହୀ ଘୋଡ଼ା ଗୋଟାଏ ନିଜ ଚଢ଼ିବାକୁ ରଖିବାର ଅଧିକାର ତାଙ୍କର ଥିଲା, କିନ୍ତୁ ସେ, ସେ ସୁବିଧା ଗ୍ରହଣ କରି ନାହାନ୍ତି । ତାଙ୍କର ତାଙ୍କ ସୈନ୍ୟମାନଙ୍କ ପ୍ରତି ଯେଉଁ ବାତ୍ସଲ୍ୟ—ଶ୍ରଦ୍ଧା ଓ ପ୍ରେମ ବୋଲି ତାଙ୍କ ଜୀବନରେ ସେତିକି । କୌଣସି ନାରୀ ପ୍ରତି ପ୍ରେମ ତାଙ୍କ ଜୀବନରେ କେବେହେଁ ଅନୁଭୂତ ହୋଇ ନାହିଁ । ସେଥିପାଇଁ ବେଳ ବି ମିଳିନାହିଁ । କଦବା କମିତ, କାମ ପ୍ରବୃତ୍ତି ଜାଗ୍ରତ ହେଲେ ଲଢ଼େଇ ଶେଷରେ, ସେ ହାବଭ ଝିଅଟିକା ମାଇକିନିଆଟେ ଧରି ପକାନ୍ତି । ସେଭଳି ସ୍ତ୍ରୀ ଲୋକକୁ ଚିହ୍ନିବା ବା ଜାଣିବା ପ୍ରୟୋଜନ ହୁଏ ନାହିଁ । ନିଜେ କାମ ପ୍ରବୃତ୍ତି ଚରିତାର୍ଥ କରିବାକୁ ସେ ତା’ ଉପରେ ବଳ ପ୍ରୟୋଗ କରି, ଗ୍ରହଣ କରନ୍ତି—ପ୍ରେମର ପ୍ରଶ୍ନ ନଥାଏ । ଯୁଦ୍ଧର କ୍ଲାନ୍ତିରେ କାମ ପ୍ରବୃତ୍ତି ବିଶେଷଭାବେ କମି ଗଲିଣି, ଏବେ କେତେ ମାସ ହେଲା ସେ କୌଣସି ମାଇକିନିଆର ପ୍ରୟୋଜନ ଅନୁଭବ ବି କରି ନାହାନ୍ତି । ଏବେ ତାଙ୍କ ଶ୍ରଦ୍ଧାଳୁ ପ୍ରକୃତିର ସମସ୍ତ ସୁପ୍ତ ଅନୁରାଗ, ତାଙ୍କ ଅଧୀନସ୍ଥ ସୈନ୍ୟମାନଙ୍କଠାରେହିଁ ଆବଦ୍ଧ ହୋଇ ରହିଛି । ସେମାନଙ୍କୁ ସେ ନିଜର ପୁଅ ପରି ସ୍ନେହ କରନ୍ତି । ସେମାନେ ସବୁବେଳେ ମନ ଖୁସିରେ ରହନ୍ତୁ, ଏହାହିଁ ତାଙ୍କର ଏକାନ୍ତ କାମନା । ଭବିଷ୍ୟତ ପାଇଁ ସେମାନଙ୍କ ମନରେ ଆଶା ଜାଗ୍ରତ କରି ସେମାନଙ୍କୁ ଉତ୍ଫୁଲ୍ଲ ରଖିବା ବ୍ୟତୀତ ଅନ୍ୟ ପନ୍ଥା ବର୍ତ୍ତମାନ ପରିସ୍ଥିତିରେ ନଥାଏ ।

ପାର୍ବତ୍ୟ ରାସ୍ତାରେ ଅଗ୍ରସର ହେଲାବେଳେ ସେମାନଙ୍କୁ ସେ ଆଶା ଦେଉଥାନ୍ତି, ମନକୁ ପ୍ରଫୁଲ୍ଲ କରି । ନିକଟରେ ଭଲ ଖାଇବାକୁ ମିଳିବ,

ଶୋଇବାକୁ ଖୁବ୍ ସମୟ ମିଳିବ । ମୋର ସାନ ଭାଇ ମାନେ ! ଖୁସୀ ହୁଅ । କାଲି ଆମେ ଗିରି ସଂକଟରେ ପହଞ୍ଚିଯିବା ! ଦେଖିଛି, ଆଗରେ ଆମର ପଥପ୍ରଦର୍ଶକମାନେ ନିଆଁ ଜାଳିଲେଣି ।”

କହିଲେ ସିନା, ନିଜ କଥାରେ ନିଜେ ସେନାପତିଙ୍କର୍ ଉତ୍ସାହ ଆସୁନଥାଏ । ପଥ ପ୍ରଦର୍ଶକଦୁଇଜଣଙ୍କର ତାଙ୍କ ଲୋକଙ୍କ ପ୍ରତି ଓ ତାଙ୍କ ନିଜ ପ୍ରତି ବି ଖାତିର ନଥାଏ । ସେ ଦୁହେଁ ମିଳି ଗାଈ ଗୋବରର ଘସିରେ ଠାଏ ନିଆଁ କରିଥିଲେ, ନିଆଁ ଉପରେ ପଥରରେ ଗୋଟିଏ ଅଣ୍ଡିଆ କରି ଗ୍ଲେଟ ତମ୍ବା କେଟଲିରେ ଚା’ ବସାଇଥିଲେ । କେତେ ମିନିଟ୍‌ରେ ଚା’ ହୋଇଯିବ, ତିବ୍ବତୀୟମାନେ ଖାଉଥିବା ବହଳ ଚା’ ସାଙ୍ଗରେ ଆଣିଥିବା ପୋଟଳି ଲହୁଣୀ ଟିକିଏ ପକାଇ ସେ ଦୁହେଁ ଚା’ ଖାଇଦେବେ—ଅନ୍ୟ କାହାକୁ ସେଥିରୁ ଟିକିଏ ନଦେଇ । ଏ ଚା’ ଏତେ ଗନ୍ଧ ଯେ ଖାଇ ହୁଅନ୍ତା ନାହିଁ, ତଥାପି ଲୋଭ ଯୋଗୁଁ ସେନାପତିଙ୍କ ପାଟିରୁ ଏଇ ଚା’ ପାଇଁ ନାଳ ବୋହିଲା । ସେ ସକାଳୁ ଏତେବେଳ ଯାଏଁ କିଛି ଖାଇ ନଥାନ୍ତି—ତାଙ୍କ ସୈନ୍ୟମାନଙ୍କର ବି ସେଇ ଅବସ୍ଥା ।

ବିଦାୟ ଦେଲା ବେଳେ ସେନା-ନାୟକ ଆଶ୍ୱାସନା ଦେଇଥିଲେ, “ବାଟରେ ଯେଉଁ ଗାଁ ଗଣ୍ଡା ପଡ଼ିବ ସେଠାରୁ ତୁମେ ଜବରଦସ୍ତି ରସଦ ସଂଗ୍ରହ କରିବ ।”

ସେନାପତି ଜବାବ୍ ଦେଇଥିଲେ; “ହଁ, କମ୍ରେଡ୍, ସେ ବିଷୟରେ କିଛି ଅସୁବିଧା ହେବନାହିଁ ।” ଯେତେବେଳେ ଜଣା ନଥିଲା, ବର୍ତ୍ତମାନ ଦେଖୁଛନ୍ତି, ତିବ୍ବତର ଏ ପର୍ବତମାଳା ଭିତରେ ଜନବସତି ଯେ ଏକା· ବେଳକେ ନାହିଁ—ନାହିଁ ଗାଁ ଗଣ୍ଡା, ନାହିଁ ସହର ଫହର·; ଅଛି ଖାଲି ବୃକ୍ଷଲତାଶୂନ୍ୟ ଉଚ୍ଚ ଗିରି ଶିଖର, ମେଘ ପର୍ଯ୍ୟନ୍ତ ବରଫାବୃତ ମୁଣ୍ଡ ଟେକି ।

ପଥପ୍ରଦର୍ଶକମାନଙ୍କ ଉପରେ ସେନାପତି ଗର୍ଜନ କଲେ, “ଆବେ ତିବ୍ବତୀୟ କୁତା ଦୁହେଁ, ତମର କ’ଣ ସବୁବେଳେ ପେଟ ପୋଡ଼ି ଯାଉଛି ? କେଉଁଠେ ବିକଳିଆ ତୁମେ ଯୋଡ଼ାକ !”

ପଥ ପ୍ରଦର୍ଶକ ଦୁହେଁ ଏଥିକୁ ପଦେ ବି ଜବାବ୍ ଦେଲେନାହିଁ । ହୁଏତ ସେମାନଙ୍କୁ ଚୀନାଭାଷା ବୁଝା ପଡ଼ୁ ନଥିଲା । ତାଙ୍କ ସାବନା

ମୁହଁ ଥଣ୍ଡା ପବନ ବାଜି ଈଷତ୍ ନାଳିଆ ଦିଶୁଥାଏ, ଝିଙ୍ଗିବଟାସର ଚୋପାରେ ମୁହଁ ଗମ୍ଭୀର, ଚମଡ଼ା କୁଞ୍ଚିତ ହୋଇଯାଇଥାଏ । ସେନାପତିଙ୍କ ଗାଳି ଶୁଣି ସେ ମୁହଁରେ କୌଣସି ବିକାର ହେଲନାହିଁ । ସେ ଦୁହେଁ, ଦୁଇଟି ଲମ୍ବା ଗିନାରେ ଚା' ଅଜାଡ଼ି, ଚା'କୁ ଗରମ ରଖିବା ପାଇଁ ଦୁଇ ହାତର ଆଞ୍ଜୁଳିରେ ଗିନାଟିମାନଙ୍କୁ ଆବୋରି ଧରି ସଡ଼ ସଡ଼ କରି ଚା' ସୋଡ଼ିକିବାରେ ଲାଗିଲେ । ସେନାପତିଙ୍କ ପେଟ ଭୋକରେ ମୋଡ଼ି ହେଲା ପରି ଲାଗିଲା, ସେ ତିବ୍ବତୀୟଙ୍କ ଆଡ଼ୁ ମୁହଁ ଆଡ଼େଇଦେଲେ ।

ସେନାପତି ସେଇ ପଥରଖଣ୍ଡ ଉପରେ ଠିଆ ହୋଇ ନିଜ ସୈନ୍ୟ-ମାନଙ୍କ ଦୁର୍ଗତି ଚିନ୍ତା କରୁଥାନ୍ତି । ଆହା ବିଚରେ ! ସେନାପତି ଦେଖୁଥାନ୍ତି, ସେମାନେ ସଂକୀର୍ଣ୍ଣ ପାର୍ବତ୍ୟ ରାସ୍ତାରେ କଷ୍ଟେମଷ୍ଟେ ଉପରକୁ ଉଠୁଥାନ୍ତି । ପ୍ରତ୍ୟେକଙ୍କ ପିଠିରେ ବଡ଼ ଭାରି ଗଣ୍ଠିଲି ଗୋଟିଏ ଗୋଟିଏ । ସୈନ୍ୟମାନେ ପାଖକୁ ଆସିବାରେ ସେ ଲକ୍ଷ୍ୟକଲେ, ପ୍ରତ୍ୟେକଙ୍କ ମୁହଁ ଘୋର କ୍ଳାନ୍ତିରେ ବିକୃତ ହୋଇଯାଇଥାଏ । ସେନାପତିଙ୍କ ହୃଦୟ ଅନୁକଂପାରେ ଦ୍ରବିଗଲା । ସୈନ୍ୟମାନଙ୍କର ଗଣ୍ଠିଲିଗୁଡ଼ିକ ଯେ ଏଡ଼େ ଗରୁ ହୋଇଛି, ତାହା ଏକରକମ, ତାଙ୍କ ନିଜ ଦୋଷରୁ । ସୀମାନ୍ତ ଘାଟିରେ ସେ, ମାଲ ବୋହିବା ପାଇଁ ଘୋଡ଼ା ଓ ମାଲଗାଈ ଖୋଜିଥିଲେ । ପ୍ରଥମେ ଘୋଡ଼ା ଆଦୌ ମିଳିଲେ ନାହିଁ, ଅତି ଅଳ୍ପ କେତୋଟି ମାଲ ଗାଈ ମିଳିଲେ । ଘୋଡ଼ା ପାଇଁ ପଚାରିବାରେ ତିବ୍ବତୀୟମାନେ ବୋକାଙ୍କ ପରି ତାଙ୍କ ଆଡ଼କୁ ବୁଲୁ ବୁଲୁ କରି ଚାହିଁଲେ ମାତ୍ର ।

ବଡ଼ ପାଟିରେ ସେ ଚିତ୍କାର କଲେ, "ସେ ଲକ୍ଷ୍ମୀଛଡ଼ା ରାଜ୍ୟ-ଯାକରେ କ'ଣ ଆଦୌ ଘୋଡ଼ା ନାହାନ୍ତି ?"

କେହି କିଛି ଜବାବ ଦେଲେନାହିଁ । କିନ୍ତୁ ସଚିବ ମହାଶୟ, ସେନାପତି ରାଜ୍ୟକୁ ଲକ୍ଷ୍ମୀଛଡ଼ା କହିବାକୁ ଶୁଣି, ସେ କଥାଟା ତାଙ୍କ ଗ୍ରେଟିଆ ନୋଟ୍ ବହିରେ ଟିପି ରଖିଲେ । ସେଦିନ ରାତିରେ ସେ ସେନାପତିଙ୍କୁ ଦୋଷିଲେ ।

"ଜନ ସାଧାରଣଙ୍କୁ କଟୁଭାଷା କହିବା, ଅଭିଶାପ ଦେବା ମନା ଅଛି । ଆମ ନେତା ମାର୍ଶଙ୍କର ନିଷେଧ ଅଛି, ପୁରୁଣାକାଳିଆ ରାଜୁଡ଼ା ଅମଳର ଢଙ୍ଗରେ ଗାଳିଗୁଲଜ କରିବନାହିଁ । ଆମ ଅଧୀନସ୍ଥ ଦେଶର

ଜନତାଙ୍କୁ ବନ୍ଧୁପରି, ସାନ ଭାଇପରି ବ୍ୟବହାର କରିବା ଆମର କର୍ତ୍ତବ୍ୟ ।"

ସଚିବଙ୍କୁ ଚେତିବାକୁ ସେନାପତିଙ୍କର ସାହସ ହେଲନାହିଁ । ସେ ରାଗରେ ଗରଗର ହୋଇ, ମାଟି ଉଖାରି ପକାଉଥିବା ଗୋଟାଏ କୁରୁଣ୍ଡିଆ ମୁରୁଗିକୁ ଗୋଇଠାଏ ମାରି ତା'ର ଉପରେ ରାଗ ଶୁଝେଇଲେ । ଵିଚରା ମୁରୁଗି କେଁ କେଁ କରି ପଳେଇଲା । ସେନାପତି ସୈନ୍ୟମାନଙ୍କୁ ପାଟି କରି ଶୁଣାଇଦେଲେ—

"ଆମର ଘୋଡ଼ା ଦରକାର ନାହିଁ, ଆମେ କେହି ନବାବଜାଦା ନୁହଁ । ଆମ ଜନିଷପତ୍ର ଆମେ ନିଜେ ବୋହିନେବା ।"

ଯାହାହେଉ, ତତ୍ପରଦିନ ଯାତ୍ରା ଆରମ୍ଭ କରିବା ପୂର୍ବରୁ ଘୋଡ଼ା କେତୋଟା ମିଳିଲେ । ସେମାନଙ୍କର ଉପରେ ଗୁଡ଼ାଏ ଜନିଷପତ୍ର ଲଦି ଆଗରେ ଛୁଟାଇଦେଇ, ଆଉ ଯାହା ବଳିଲା ସେତକ ସୈନ୍ୟମାନଙ୍କ ଭିତରେ ସେ ବାଣ୍ଟିଦେଲେ । ପ୍ରତ୍ୟେକ ସୈନ୍ୟ ଭାଗରେ ଗୋଟିଏ ଗୋଟିଏ ଗଣ୍ଠିଲି ପଡ଼ିଲା ।

ସୀମାନ୍ତ ଘାଟିରୁ ଯାତ୍ରା କରିବା ପାଇଁ ସବୁ ଠିକ୍‌ଠାକ୍ ହେଲା । ଶେଷମୁହୂର୍ତ୍ତରେ ଘାଟିର ଦାୟିତ୍ୱରେ ଥିବା ଚୀନା ଅଫିସର, ପୁଣି ଥରେ ତାଙ୍କ କ୍ଷୁଦ୍ର ଅସଜ୍ଜିତ ପ୍ରକୋଷ୍ଠ ଭିତରକୁ ସେନାପତିଙ୍କୁ ଡାକିନେଲେ ଓ ଏକାନ୍ତରେ ତାଙ୍କ ଆଗେ ମାନଚିତ୍ରମାନ ଗୋଟିଏ କାଠ ମେଜ ଉପରେ ମେଲାଇ, ଦେଖାଇଲେ ।

ମାନଚିତ୍ରରେ ଚିହ୍ନିତ ହୋଇଥିବା ଗୋଟିଏ ଅଙ୍କାବଙ୍କା ନାଲିଗାର ଉପରେ ନିଜର ମଇଳା ଲମ୍ବା ଆଙ୍ଗୁଠିକୁ ଚଳାଇ, ସେ ସେନାପତିଙ୍କୁ କହୁଥିଲେ, "ହେଉଛି, ଏଇ ତମର ଗନ୍ତବ୍ୟ ପଥ । ଏହି ବିରାଟ ପର୍ବତମାଳା ଭିତରେ ଏଇ ଗୋଟିକ ବ୍ୟତୀତ ଅନ୍ୟ ରାସ୍ତା ନାହିଁ । ତେଣୁ ଏ ବାଟ ଯେପରି ଭୁଲ ନହୁଏ ସେଥିକୁ ସାବଧାନ ଥିବ ।"

ସେ ଦିନଠାରୁ ପାଞ୍ଚଦିନ ଏଇ ରାସ୍ତାଧରି ଅଗ୍ରସର ହେବା ପରେ ଆଜ ସେନାପତି ପ୍ରଥମଥର ପାଇଁ ଉଦ୍‌ବିଗ୍ନ ହେଉଥାନ୍ତି । ଆଜ ଯେତେ ପ୍ରୋତ୍ସାହିତ କଲେ ବି, ସୈନ୍ୟମାନଙ୍କୁ ସେ ଉତ୍ସାହିତ କରି ପାରୁନଥାନ୍ତି । ସୈନ୍ୟମାନେ ଦୁଇଟି ତିନୋଟି ହୋଇ ତାଙ୍କ ପାଖକୁ ଆସି, ପିଠିରୁ

ଗଣ୍ଡିଲ ଫିଟାଇଲେ; ଗଣ୍ଡିଲଗୁଡ଼ିକ ପିଠିରୁ ତଳକୁ ଖସି ପଡ଼ିଲା । ତା'ପରେ ସେମାନେ ନିଶ୍ଚେଷ୍ଟ ହୋଇ ଭୂଇଁରେ ପଡ଼ିଗଲେ, କେହି କେହି ବା ବିଶ୍ରାମ କରିବାକୁ ପଥର ଖଣ୍ଡମାନଙ୍କ ଉପରେ ଲମ୍ବିଗଲେ । ସଁ ସଁ ହୋଇ ପାଟିବାଟେ, ଉଚ୍ଚପର୍ବତର ଅଳ୍ପଅମ୍ଳଜାନଥିବା ଲଘୁ ପବନ ଶୋଷୁଥାନ୍ତି । କିନ୍ତୁ ସମସ୍ତ ଏହିପରି ପଡ଼ିରହିବା ପରେ ଥଣ୍ଡାପବନ ଦେହକୁ କାଟିଲା । ତେଣୁ ସେମାନେ ପୁଣି ଉଠି, ରାତିର ଶୀତପବନରୁ ଓ ଶତ୍ରୁମାନଙ୍କଠାରୁ ରକ୍ଷା ପାଇବା ପାଇଁ, ଚାରିପଟେ ଚିମାପଥରର କାନ୍ଥ ଗଢ଼ିବାକୁ ଲାଗିଲେ । ସବୁଦିନ ରାତିରେ ଏଭଳି କରିବାକୁ ହେଉଥିଲା । ସେମାନେ ଯେତେ କ୍ଲାନ୍ତ ଓ ଯେତେ କ୍ଷୁଧାର୍ତ୍ତ ହୋଇଥାନ୍ତୁ ପଛେ, ସେନାପତି ସେମାନଙ୍କୁ ବାଧ କରନ୍ତି ଏହିପରି ପଥର ପାଚେରି ଶିବିରର ଚାରିପଟେ କରିବାକୁ । ସେ ଯାହା କହିବା ଆଗରୁ ଚେତାବନି ପାଇଥିଲେ ଯେ, ରାତିରେ ଏହିଭଳି ପଥରପାଚେରି କରି ତା ଭିତରେ ନରହିଲେ, ଶତ୍ରୁଙ୍କ ଅତର୍କିତ ଆକ୍ରମଣରୁ ରକ୍ଷା ମିଳିବା ସହଜ ହେବ ନାହିଁ । ସୈନ୍ୟମାନେ ଏହି କାମରେ ଲାଗିଥିବା ବେଳେ, ତିବ୍ବତୀୟ ପଥପ୍ରଦର୍ଶକ ଦୁହେଁ ତାଙ୍କ ନିଆଁ ପାଖରେ ବସି ହୁକୁମ ଟାଣୁଥାନ୍ତି । ସୈନ୍ୟମାନଙ୍କର କଷ୍ଟ ଦେଖି ସେମାନଙ୍କ ସ୍ୱାଭାବିକ ବିରସ ମୁହଁରେ ଆମୋଦର ଛୁଟା ଛୁଇ ହୋଇ-ଯାଇଥାଏ । ଏଭଳି ନୃଶଂସତା ଲକ୍ଷ୍ୟ କରି ସେନାପତି ରାଗରେ ସେ ଦୁହିଁଙ୍କୁ ଅସଭ୍ୟ ଭାଷାରେ ଗାଳିଦେଲେ ।

"ଏ ବେ କଇଁଛ-ଛୁଆ ଦୁହେଁ ! ଶଶାଛୁଆ କାହାଁକା ! ତୁମେ ଦୁହେଁ ଛେଳିଗୋହିଆ; ତମ ମା' ତା'ବାପ ଖାଇଆଉ ତମକୁ ଜନ୍ମ କରିଛି !"

ଏକଥା ମଧ୍ୟ ତିବ୍ବତୀୟ ଦୁହେଁ ଶୁଣିଲାପରି ଜଣା ପଡ଼ିଲା ନାହିଁ । ପୂର୍ବପରି ଏଥର ବି ସେନାପତି ଧରିନେଲେ ଯେ, ଏ ଦୁହେଁ ଚୀନାଭାଷା ସମଜି ପାରୁନାହାନ୍ତି । ସେନାପତିଙ୍କର ମନ ହେଉଥିଲା, ନିଜ ଲୋକଙ୍କୁ କହି ୟାଙ୍କୁ ଗୁଡ଼ାଏ ମାଡ଼ ମରାଇଥାନ୍ତେ । କିନ୍ତୁ ଏଭଳି କରାଇବାକୁ ସାହସ ହେଲାନାହିଁ । ଏ ଯୋଡ଼ାକଯାକ ଖାମ୍ବା ସଂପ୍ରଦାୟର ଲୋକ, ପଞ୍ଚହତା ମରଦ ; ଏଭଳି ଭୀଷଣ ଚେହେରାବାଲା ମଣିଷ, ସେନାପତି ଆଉ କେବେ ଦେଖିନଥିଲେ । ପୁଣି, ବାଟ ଦେଖିବାକୁ ୟାଙ୍କ ଉପରେ ନିର୍ଭର କରିବାକୁ

ମଣୁଛି । ତେଣୁ କେବଳ ଗାଳି ଦେବା ବ୍ୟତୀତ ଅଧିକ କିଛି କହିବାର ଉପାୟ ନଥାଏ । ସେ ଏ ଭଦ୍ରଲୋକଙ୍କ ପାଇଁ ଯେଉଁ ଗାଳିସବୁ ଉଦ୍ଭାବନ କରୁଥାନ୍ତି, ତାହା ଶୁଣି ସୈନ୍ୟମାନେ ଖୁବ୍ ହସୁଥାନ୍ତି ; ସୈନ୍ୟମାନଙ୍କ ଆମୋଦ ସେନାପତିଙ୍କ ପକ୍ଷେ ଯଥାଲାଭ ହେଉଥାଏ । ଘଣ୍ଟା କେତେଟା ଭିତରେ ସୈନ୍ୟମାନେ କିଛି କିଛି ଖାଇ ଶୋଇବାକୁ ସଜ ହୋଇଗଲେ ; ସେନାପତି ଶୋଇଲେ ରୂପାବାକ୍ସଟିକୁ ମାଣ୍ଡି କରି । ଆଗାମୀ ଦିନ ପାଇଁ ଏହାହିଁ ପ୍ରସ୍ତୁତି ।

ଷଷ୍ଠଦିନଟି ଅଭିଯାନର ଶେଷ ଦିନ । ପ୍ରଭାତ ଆସିଲା ; ଦିଗ୍‌ବଳୟରେ ସ୍ୱତେ ଯେପରି ଗୋଟାଏ ବଡ଼ ଜନବସତି ପୋଡ଼ିଗଲା ପରି ଦିଶୁଥାଏ : ସୂର୍ଯ୍ୟୋଦୟର ଘଣ୍ଟାକ ଭିତରେ ସମସ୍ତେ ପୁଣି ରାସ୍ତା ଧଇଲେ । ସେମାନଙ୍କର ଏକମାତ୍ର ଖାଦ୍ୟ, ଶୁଖା ମାଉଁସ ଓ ସପ୍ତାହିନ୍-ଦନ୍ତି । ଖାଇବାକୁ ସେମାନେ ବାଟରେ ଅଟକିବା ସାଙ୍ଗେ ସାଙ୍ଗେ ସଚିବ ଆସି ସେନାପତିଙ୍କ ଆଗରେ ଠିଆ ହେଲେ । ସେନାପତି ସଚିବଙ୍କୁ ଯଥାସମ୍ଭବ ଆଡ଼େଇ ହୋଇ ଚଳୁଥାନ୍ତି ; କିନ୍ତୁ ସେ ଆସି ଆଗରେ ଠିଆ ହେବାଠାରେ ତାଙ୍କୁ ଅବଜ୍ଞା କରିବେ କିପରି ? ଖର୍ବକାୟ, ବିକୃତ-ମୁହଁ ଲୋକଟି ତାଙ୍କ ଆଗରେ ଆସି ଠିଆ ହୋଇ କହିବାକୁ ଲାଗିଲେ ; ପବନରେ ତାଙ୍କ କଥା ଉଡ଼ିଯାଇ ନ ଶୁଭିବ ବୋଲି ଦୁଇ ହାତକୁ ମୁହଁ ଆଗରେ ଯୋଡ଼ି ନଳପରି କରିଥାନ୍ତି ।

"କମ୍ରେଡ୍, ମୋ ପାଇଁ ଗୋଟିଏ ଘୋଡ଼ା ବନ୍ଦୋବସ୍ତ ନକଲେ, ହେବ ନାହିଁ ।"

ସେନାପତି ତାଙ୍କ ଆଡ଼କୁ ରଟମଟ କରି ଚାହିଁ କହିଲେ, "ଘୋଡ଼ା କାହୁଁ ପାଇବ ?"

"ଗୋଟିଏ ଘୋଡ଼ା ଉପରୁ କିଛି ବୋଝ ଉତାରିବାକୁ ପଡ଼ିବ । ମୋର ଆଉ ଚାଲିବାର କ୍ଷମତା ନାହିଁ । ମୁଁ ଘୋଡ଼ାର ଲଦନ ଉପରେ ନବସିଲେ ଉପାୟ ନାହିଁ । ସେଇପରି ବନ୍ଦୋବସ୍ତ କର ।"

ସେନାପତିଙ୍କର ମନ ହେଉଥିଲା, ସ୍ୱା ମୁହଁରେ କଥା ପଦେ ବାଡ଼େଇ ଦେଇଥାନ୍ତେ—"ଚାଲି ଯଦି ନ ପାରୁଛୁ, ଏଇଠି ପଡ଼ି ମର ।" କିନ୍ତୁ ଏକଥା କହିବାକୁ ସାହସ ହେଲା ନାହିଁ । ସଚିବଙ୍କୁ ଏଠାରେ ଛାଡ଼ି ଚାଲିଗଲେ, ତାଙ୍କୁ ସେ ହତ୍ୟାକଲେ ବୋଲି ଅଭିଯୋଗ ହେବ । ତେଣୁ

ଅଗତ୍ୟା ଗୋଟାଏ ଘୋଡ଼ା ସଜ କରିବାକୁ ଜଣେ ସୈନ୍ୟକୁ ବରାଦ କରିବାକୁ ହେଲା ।

କିଏ ଜାଣିଥିଲା ଯେ, ସତବଙ୍କ ପାଇଁ ଘୋଡ଼ା ସଜିଲ ହେବାର ଦେଖି, ତିଇୱିପୁ ଦୁହେଁ ଆପଣାପାଇଁ ମଧ୍ୟ ଘୋଡ଼ା ଦାବି କରିବେ ? ଏକା ଜିଦ୍ କରି ସେମାନେ ଘୋଡ଼ା ମାଗିଲେ, ଏତେ ଜିଦ୍ ଯେ ପ୍ରାୟ ଘଂଣ୍ଟାକାଳ ସେମାନେ ନଚଳି ଠିଆ ହୋଇ ରହିଲେ । ସୂର୍ଯ୍ୟ ମଥା ଉପରକୁ ଉଠି ଯାଉଥାନ୍ତି, ଅନନ୍ୟଗତିକ ହୋଇ ସେନାପତି ସ୍କାଙ୍କ କଥା ମଧ୍ୟ ରଖିବାକୁ ବାଧ୍ୟ ହେଲେ । ଆଉ ଦୁଇଟା ଘୋଡ଼ାଙ୍କ ବୋଝ ଉତାରିବାକୁ ସେ ଆଦେଶ ଦେଲେ , ପଥପ୍ରଦର୍ଶକ ଦୁହେଁ ଏ ଦୁଇଟି ଘୋଡ଼ାରେ ଚଢ଼ିଲେ । ନିଜ ସୈନ୍ୟମାନେ ଗିରିସଙ୍କଟରେ ପହଞ୍ଚିବାକୁ ଶେଷ ମାଇଲ କେତୋଟାର ଉଠାଣିରେ କଷ୍ଟେମଷ୍ଟେ ଚଢ଼ୁଥାନ୍ତି ; ସେନାପତି ନିଜେ ମଧ୍ୟ ଘୋଡ଼ାରେ ଯାଉଥିବା ତିଇୱିପୁ ଦୁହିଙ୍କ ପଛରେ ଚାଲିଥାନ୍ତି । ଦେହର ବାହାରଟା ଥଣ୍ଡା ପବନରେ ବରଫ ପାଲଟି ଯାଇଥାଏ, କିନ୍ତୁ ଭିତରଟା ରାଗରେ ଜଳୁଥାଏ । ପୂର୍ବାହ୍ଣର ଆଉ ଯେଉଁ ଅଳ୍ପ ସମୟ ବାକି ଥିଲା ସେତିକ ସମୟ ସେମାନେ ପର୍ବତ ଚଢ଼ିଲେ ; ମଧ୍ୟାହ୍ନକୁ ଠିକଏ ବେଳଥାଇ ସେମାନେ ପହଞ୍ଚିଲେ ଗୋଟିଏ ଅଧିତ୍ୟକାରେ । ଏଠାରୁ ପର୍ବତ କାନ୍ଥ ପରି ଉଠିଥାଏ ଗୋଟାଏ ଶୃଙ୍ଗକୁ—ଶୃଙ୍ଗଟା ଦିଶୁଥାଏ ସତେ ଯେପରି ତଳକୁ ଖସି ପଡ଼ିବ । ଏଇ ପର୍ବତ ଉପରକୁ ରାସ୍ତାଟା ନିଶୁଣୀ ପରି ତେରିଛ ହୋଇ ପଡ଼ିଥାଏ ; ମସୃଣ ପଥରରେ ସରୁ ସରୁ ପାହାଚ କଟା ହୋଇଥାଏ ଉପରକୁ । ସେନାପତି ସେଠାରେ ରହିବାକୁ ଆଦେଶ ଦେବା ପୂର୍ବରୁ ସୈନ୍ୟମାନେ ଆସି ତାଙ୍କ ଚାରିପଟେ ବେଢ଼ିଗଲେ । ସେ ସେମାନଙ୍କ ଚିରପରିଚିତ ମୁହଁଟିମାନଙ୍କୁ ଚାହିଁଲେ ; ଏ ମୁହଁଟିମାନ ତାଙ୍କର କେତେ ପ୍ରିୟ କଥାରେ କହିହେବ ନାହିଁ । ସେଗୁଡ଼ିକ ଏତେବେଳକୁ କ୍ଳାନ୍ତିରେ କଳା ପଡ଼ି ଯାଇଥାଏ ; ମୁହଁର ରେଖାଗୁଡ଼ିକ ମୋଟ ଓ ଗାଢ଼ୁଆ ହୋଇଯାଇଥାଏ ; ଆଖି କୋରଡ଼ ହୋଇ ଯାଇଥାଏ । ତାଙ୍କ ମନରେ ପ୍ରଶ୍ନ ଉଠିଲା, ଏଇଠାରେ ଆଜ ଦିନକ ବିଶ୍ରାମ କରିବାକୁ ଦେବେ, ନା ଗିରିସଙ୍କଟରେ ପହଞ୍ଚିବାକୁ ବାକିଥିବା ଶେଷ କେଇ ମାଇଲ ଆଜି ସାରିବାକୁ କହିବେ ? ସୈନ୍ୟମାନେ ମୁହଁରେ ଅବଶ୍ୟ କିଛି କହୁ ନଥାନ୍ତି, କିନ୍ତୁ ଜଣାଯାଉଥାଏ, ଯେପରି ତାଙ୍କର

ଆଖିଟିମାନ, ଆଜ ଏଇଠାରେ ବିଶ୍ରାମଇବାକୁ ନିବେଦନ କରୁଛି । ସେ ତାଙ୍କ ନିଷ୍ପତ୍ତି ଶୁଣାଇ ଦେବାକୁ ମୁହଁ ଖୋଲୁଛନ୍ତି ଏଇ ସମୟରେ ଆଗରେ ଗୋଟାଏ ବଡ଼ ପାଟି ଶୁଣାଗଲା । ପଥପ୍ରଦର୍ଶକ ଦୁହେଁ ପାଟି କରୁଥାନ୍ତି ; ଏତେବେଳକୁ ସେମାନେ ପୁଣି ଘୋଡ଼ାରେ ଚଢ଼ି, ଅଧିତ୍ୟକାରେ ଝପଟି-ଥାନ୍ତି ସମସ୍ତ ଆଡ଼କୁ । ଏତେବେଳେ ବିଶ୍ରାମ କରିବାକୁ ଆଦେଶ ଦେଇ ସେ ନିଜ ସେନାର ଆତ୍ମସମ୍ମାନ କ୍ଷୁଣ୍ଣ କରିବାକୁ ଚାହିଁଲେ ନାହିଁ ।

"ହ୍ୟାନ୍‌ବଂଶର ଡାଯ୍ୱାଦମାନେ", ସେନାପତି ଆହ୍ୱାନ କଲେ, "ଆମେ ସେ ତିବ୍ବତୀୟ କୁକୁରଙ୍କର ପଛରେ ପଡ଼ିଯିବା ? ରାତି ହେବା ପୂର୍ବରୁ ଆମ୍ଭେମାନେ ଆଜ ଗିରିସଙ୍କଟ ପାର ହେବା ହିଁ ହେବା । ଚାଲ, ଆଗେଇ ଚାଲ ।"

ସୈନ୍ୟମାନେ ସାରଦର୍ପରେ ସବୁଥରପରି ଏ ଆହ୍ୱାନକୁ ସ୍ୱାଗତ କଲେ । ବିନା ଆପତ୍ତିରେ ସେମାନେ ଯାତ୍ରା ଆରମ୍ଭ କଲେ ; ସମସ୍ତଙ୍କ ପୁରୋଭାଗରେ ଥାନ୍ତି ସେନାପତି । ସେନାର ଯେ କୌଣସି ସୈନିକ ପରି ସେ ନିଜେ ପରିଶ୍ରାନ୍ତ ହୋଇଥିଲେ ମଧ୍ୟ, ସେମାନଙ୍କ କ୍ଲାନ୍ତି ଯୋଗୁଁ ହିଁ ସେ ନିଜର କ୍ଲାନ୍ତିକୁ ଖାତିର କରୁ ନଥାନ୍ତି । ଏବଂ ସୈନ୍ୟମାନଙ୍କର ତାଙ୍କରି ଉପରେ ନିର୍ଭର; ତାଙ୍କୁହିଁ ଚାହିଁ ସେମାନେ ସାହସ ଧରି ଚାଲିଛନ୍ତି— ସେନାପତିଙ୍କର ଆନ୍ତରିକ ସ୍ନେହ ଏବଂ ସୈନ୍ୟମାନଙ୍କ ଉପରେ । ସେ ଏମାନଙ୍କୁ ନେତୃତ୍ୱ ଦେଇ ଗିରିସଙ୍କଟ ପାର କରାଇ ଆର ପାଖରେ ଗଡ଼ାଣିଆ ଭୂଇଁକୁ ନେବେ ଓ ସେଇଠାରେ ସମସ୍ତେ ବିଶ୍ରାମ କରିବେ ।

କିନ୍ତୁ ଏଭଳି ଆଶା କଲା ବେଳେ ସେ ପବନର ତୋଡ଼କୁ ପାସୋରି ଦେଇଥିଲେ । ତିବ୍ବତର ପବନ କଥା ସେ ଆଗରୁ ଶୁଣିଥିଲେ; ଶୁଣିଥିଲେ, ପର୍ବତର ଏବଂ ହିମଭରା ନିଶ୍ୱାସର ନିଷ୍ଠୁରତା ବିଷୟ । ଆଜ ତାହା ଅଙ୍ଗରେ ନିଭାଇବାକୁ ହେଲା । ପର୍ବତ ଉପରକୁ ଯାଇଥିବା ଖାଖ ରାସ୍ତାରେ ସେମାନେ ଅଧେ ବାଟ ଯାଇଛନ୍ତି, ଅପରାହ୍ଣ ଅଧେ ଅତିକ୍ରାନ୍ତ ହେଲଣି, ଏତିକିବେଳେ ସେନାପତି ଶୁଣିଲେ ଏକ ଅଦ୍ଭୁତ ବିଳାପର ଧ୍ୱନି । ସକାଳୁ ନିର୍ମଳଥିବା ଆକାଶରେ ହଠାତ୍ କଳା ବୋଳି ହୋଇଗଲା ଓ ସର୍ପିଳାଷସ ପରି ବିଶୁଥିବା ଘୂମନ୍ତ ମେଘଖଣ୍ଡମାନଙ୍କ ଭିତରୁ ଅତି ଭୀଷଣ ପବନ ବାହାରିଲା ; ହେମ-କାଳ ଏ ପବନ ; ତୁଷାରପରି ବରଫଖଣ୍ଡମାନ ପବନରେ

ଲାଗି ଆସି ଦେହରେ ଗଳପାଉଥାଏ । ସେନାପତି ଓ ତାଙ୍କ ସୈନ୍ୟମାନଙ୍କୁ ଲାଗିଲା ସତେ ଯେପରି ପଥରପରି କଠିଣ ପଦାର୍ଥର ଗୋଟାଏ ଢେଉ ଆସି ଦେହର ରକ୍ତ ଶୁଖାଇ ଦେଉଛି । ସେନାପତି ଦେଖିଲେ, ତାଙ୍କ ସୈନ୍ୟମାନେ ପିଠିର ବୋଝ ତଳେ ପକାଇ ଭୂଇଁରେ .ଲୋଟିଗଲେ ; କେ ଜଣେ ଖଣ୍ଡେ ପଥରକୁ ଜାବୁଡ଼ି ଧରି ସେଥିରେ ମୁହଁ ଲୁଚାଇ ଆଉକେ ରହିବାରୁ ଏ ଦଶାରୁ ବର୍ତ୍ତିଗଲେ । ସେଇ ଅବସ୍ଥାରେ ଥାଇ ତାଙ୍କ ମନରେ ଆଉରି ଗୋଟାଏ ଭୟ ଆସି ପହଁଚିଲା—ପଥ-ପ୍ରଦର୍ଶକମାନେ ଯଦି ଏତିକ-ବେଳେ ଦୃଷ୍ଟି-ଅନ୍ତରାଳକୁ ଚାଲିଯା’ନ୍ତି ! ସେ ପବନର ମାଡ଼ ସତ୍ତ୍ୱେ ମୁଣ୍ଡ ଟେକି ଚାହିଁ ଆଶ୍ୱସ୍ତ ହୋଇଗଲେ— ସେ ଦୁହେଁ ଘୋଡ଼ା’ରେ ଚଢ଼ି ଆଗେଇ ଚାଲିଥାନ୍ତି ; ମୁଣ୍ଡରେ ସାଲ ଖଣ୍ଡିମାନ ଗୁଡ଼େଇ, ଲୁମାଟୋପିଟାମାନ ମୁହଁ ଉପରକୁ ଟାଣି ଦେଇଥାନ୍ତି ।

ସେନାପତି ଚିତ୍କାର କରି କହିଲେ, “ଉଠ, ଉଠ, ସୈନ୍ୟଗଣ ! ଘାଟିଟା କୌଣସିମତେ ପାର ହେବାକୁ ହେବ । ଘାଟି ପାର ନହେଲେ ରକ୍ଷା ନାହିଁ । ପବନର ଖ୍ରାପଣତା, ସେଠାରେ କପଡ଼ହୁଣ୍ଡବା ଯାଏଁ, ଆଉରି ବଢ଼ିବ । ଉଠ, ଘାଟି ପାରହେବା ”

ସୈନ୍ୟମାନେ ସେନାପତିଙ୍କ ଶେଷ ଆଦେଶକୁ ଆବୃତ୍ତି କଲେ, “ଉଠ, ଘାଟି ପାର ହେବା ।”—ସେମାନେ ସେନାପତିଙ୍କ ତୁଲ୍ୟ—ଚିତ୍କାର କରିବାକୁ ଚାହିଁଥିଲେ , କିନ୍ତୁ ପବନ ସେମାନଙ୍କ ସ୍ୱର ଭାଙ୍ଗି ଦେବାରୁ ସେମାନଙ୍କ ଚିତ୍କାର ଖଣ୍ଡିତ ପ୍ରତିଧ୍ୱନି ପରି ଶୁଭିଲା । ସେ ଯାହାହେଉ, ସମସ୍ତେ କଷ୍ଟେମଷ୍ଟେ ଠିଆ ହେଲେ ଏବଂ ସର୍ବଶେଷ ଖାଖ ଉଠାଣିଟା ଚଢ଼ି-ବାକୁ ଲାଗିଲେ । ସେନାପତି ଥାନ୍ତି ସମସ୍ତଙ୍କ ଆଗରେ ।

ଆଗରୁ ବିଳାପ କରୁଥିବା ପବନ ଏଥର ଏଣିକି ରାକ୍ଷସ ପରି କ୍ରୋଧରେ ଭୀଷଣ ଗର୍ଜନ ଆରମ୍ଭ କଲା । ସେନାପତିଙ୍କ ମୁହଁ ପୋଡ଼ି ଯାଉଥାଏ, ସତେ ଯେପରି ତାଙ୍କ ମୁହଁକୁ ସେ ଜଳନ୍ତା ନିଆଁକୁ ଦେଖାଇ ଦେଉଛନ୍ତି । ସେ ଡାହାଣ ହାତରେ ନାକ ଓ ପାଟି ବନ୍ଦ କରି ରଖିଲେ । ସୈନ୍ୟମାନଙ୍କ ଅବସ୍ଥା କ’ଣ ହୋଇଛି ଦେଖିବା ସକାଶେ ମୁହଁ ପଛକୁ ବୁଲେଇବାକୁ ପ୍ରବୃତ୍ତି ପଡ଼ୁନଥାଏ । ପର୍ବତ ଚଢ଼ିବାରେ ଅଭ୍ୟସ୍ତ ପର୍ବତିଆ ଛଟ୍ଟୁ ଘୋଡ଼ାଗୁଡ଼ିକ ଆଗରେ ଚାଲିଥାନ୍ତି,,ସେମାନଙ୍କ ଖୁରାଗୁଡ଼ାକ କଙ୍କରମୟ

ରାସ୍ତାର ଫାଟମାନଙ୍କରେ ଠିକ୍ ଜାବଧରି ରହୁଥାଏ । ଘୋଡ଼ାଙ୍କ ପଛେ ପଛେ ସେ ଯେପରି ଚାଲିଛନ୍ତି, ତାଙ୍କ ପଛରେ ସୈନ୍ୟମାନେ ଠିକ୍ ସେହିପରି ଚାଲିଥିବେ ଏହି ବିଶ୍ୱାସରେ ସେନାପତି ନିଜ ମନକୁ ଆଶ୍ୱସ୍ତ କରୁଥାନ୍ତି । ତାଙ୍କର ଆଖି ଦୁଇଟି, ଝପ୍‌ଟପ୍ ହୋଇ ଆଗରେ ଯାଉଥିବା ଘୋଡ଼ାଙ୍କ ଖୁରରେ ଲାଗି ରହିଥାଏ । ପବନର ଅଦ୍ଭୁତ ଦୁର୍ଦ୍ଧାନ୍ତ ଚିତ୍କାରରେ ମଣିଷର ସ୍ୱର ସେ ଶୁଣିପାରୁ ନଥାନ୍ତି ; କେବଳ ଶୁଭୁଥାଏ, ପବନଜୋରରେ ଭାଙ୍ଗି ଉଡ଼ୁଥିବା କ୍ଷୁଦ୍ର କ୍ଷୁଦ୍ର ବରଫ ଖଣ୍ଡମାନଙ୍କର କଡ଼କଡ଼ ଶବ୍ଦ । ସେନାପତି କୌଣସି କଥା ଚିନ୍ତା କରିବାର ଶକ୍ତି ହରାଇଥାନ୍ତି । ତାଙ୍କର ମନ ଓ ସମସ୍ତ ଶରୀର ଏକାଗ୍ର ଭାବେ ଗୋଟିଏ କାର୍ଯ୍ୟରେ ନିବିଷ୍ଟଥାଏ—ଗୋଟିଏ ପାଦ ଆଗକୁ ଆଉ ପାଦଟି ପକାଇବା । ପ୍ରତ୍ୟେକ ପ୍ରଶ୍ୱାସରେ ତାଙ୍କ କଲିଜା ଯନ୍ତ୍ରଣାରେ ଛଟପଟ ହୋଇ ମୋଡ଼ି ଯାଉଥାଏ, ତଥାପି ସେ କଷ୍ଟେମଷ୍ଟେ ଆଗେଇ ଚାଲିଥାନ୍ତି ।

ଅବଶେଷରେ ସେନାପତି ଘାଟି ଉପରେ ଯାଇ ପହଞ୍ଚିଲେ । ସେଇଠାରେ ପଥରକୁ ପିଠି ଦେସ ଦେଇ, ସେ ସୈନିକମାନଙ୍କ ଆଗମନ ପ୍ରତୀକ୍ଷାରେ ରହିଲେ । ସୈନ୍ୟଙ୍କୁ ଗଣିବାକୁ ସାହସ ହେଲା ନାହିଁ, ଏତେବେଳକୁ ସେମାନଙ୍କ ସଂଖ୍ୟା ନିଶ୍ଚୟ ହଜାରରୁ କମିଯିବଣି । ଯେଉଁ-ମାନେ ରହିଗଲେ ସେମାନେ କ'ଣ ପର୍ବତ ଉପରୁ ତଳକୁ ଖସି ପଡ଼ିଲେ ? ଏ କଥା ପରୀକ୍ଷା କରିବାକୁ ବି ଗୁଡ଼ା ପଡ଼ିନଥାଏ । ଆଉ ଯେତିକ ସୈନ୍ୟ ଅବଶିଷ୍ଟ ଅଛନ୍ତି, ତାଙ୍କୁ ଇ ଧରି ଆଗେଇଯିବାକୁ ହେବ । ବର୍ତ୍ତମାନ ତାଙ୍କର ଶତ୍ରୁ, କେବଳ ଏହି ତୋଫାନ । ଘାଟି ଉପରେ ଛାଉଣି ପକାଇବା ଅସମ୍ଭବ । ପବନର ଦାଉରୁ ରକ୍ଷା ପାଇବାକୁ ଘାଟି ତଳକୁ ଖସିବାକୁ ହେବ । ଘାଟି ପାର ହେବାକୁ ସେ ପୁଣି ପଥପ୍ରଦର୍ଶକ-ମାନଙ୍କ ଅନୁଗମନ କରିବାକୁ ବାହାରିଲେ । ବର୍ତ୍ତମାନ ଗୋଟାଏ ବଡ଼ ଆଶ୍ୱାସନାର କଥା ଯେ ଏଥର ଏଣିକି ଗଡ଼ାଣି ପଡ଼ିବ । ପର୍ବତ ଉପରେ ଘୁଷୁରି ଘୁଷୁରି ଉପରକୁ ଉଠିବାର ଯନ୍ତ୍ରଣା ସରିଛି !

ଘଣ୍ଟାକ ପରେ—ଏଇ ଘଣ୍ଟାକ ଅନନ୍ତ କାଳ ପରି ଅସରନ୍ତି ଜଣାପଡ଼ୁଥାଏ—ପଥ ପ୍ରଦର୍ଶକମାନେ ତାଙ୍କୁ ନେଇ ଗଡ଼ାଣି ମୁଣ୍ଡରେ ପହଞ୍ଚିଲେ । ରାସ୍ତାଟା ସିଧା ହୋଇ ତଳକୁ ଖସି ପଡ଼ିଲା ପରି ଦିଶୁଥାଏ ।

ଖୁବ୍ ସଙ୍କୀର୍ଣ୍ଣ ରାସ୍ତା, ଉଭୟ ପାଖର ପର୍ବତ ଭିତରେ ଗୋଟିଏ ସଙ୍କୀର୍ଣ୍ଣ ନାଳ ପରି ଚାଲିଛି । ଯାହା ହେଉ, ପବନର ପ୍ରକୋପ ଆଉ ନାହିଁ । ସେଥିରୁ ସେମାନେ ଉଦ୍ଧାର ପାଇଛନ୍ତି ; ପବନକୁ ଘାଟିର ଆର ପାଖେ ଛାଡ଼ି ସେମାନେ ଏ ପାଖକୁ ଖସି ଆସିଛନ୍ତି । ଏପାଖେ ଚାରିଆଡ଼ ନିଃଶବ୍ଦ । ଏହି ନିଃଶବ୍ଦତାର ପ୍ରତିକ୍ରିୟାରେ ହଠାତ୍ ସେନାପତିଙ୍କର କ୍ଲାନ୍ତରେ ମୁଣ୍ଡ ଘୂରିଗଲା । ସୈନ୍ୟମାନଙ୍କର ବି ସେଇ ଅବସ୍ଥା । ସମସ୍ତଙ୍କର ମୁଣ୍ଡବୁଲା ହେଉଥାଏ ; କିଏ ଟଳି ଟଳି ହେଉଥାନ୍ତି, କିଏ ବେହୋସ୍ ହୋଇ ପଡୁଥାନ୍ତି, କାହାର କାହାର ଅଇ ଉଠୁଥାଏ, ଆହୁରି କେତେ-କଙ୍କର ରକ୍ତବାନ୍ତି ହେଉଥାଏ । ସୈନ୍ୟମାନେ ଗୋଟି ଗୋଟି ହୋଇ ଆସି ତାଙ୍କ ଘୋଡ଼ାପାଖେ ଭୂଇଁରେ ଲୋଟି ପଡ଼ିବାର ଦେଖି, ସେନାପତି ନିଜର ଅସାମର୍ଥ୍ୟ ଦମନ କରି ସେମାନଙ୍କ ପାଖକୁ ଚାଲି ଚାଲି ହୋଇଗଲେ ।

ସେତିକିବେଳେ ସେନାପତିଙ୍କର ନଜର ପଡ଼ିଲା ସଚିବଙ୍କ ଉପରେ । ସେ ବି ଭୂଇଁରେ ପଡ଼ିଥାନ୍ତି, ନିଃଶ୍ୱାସ ନେବାକୁ ଧଇଁ ସଇଁ ହେଉଥାନ୍ତି । ସେନାପତି ତାଙ୍କ ପାଖରେ ଯାଇ ଠିଆ ହେଲେ ।

"କମ୍ରେଡ୍, ତୁମ ଘୋଡ଼ା କୁଆଡ଼େ ଗଲା ?—" ସେନାପତି ପଚାରିଲେ ।

ସଚିବ ସଁ ସଁ ହୋଇ କହିଲେ, "ଘୋଡ଼ା—ପଥପ୍ରଦର୍ଶକଙ୍କ ପଛେ ପଛେ—ପଳେଇଗଲା । ମୁଁ ପଡ଼ିଗଲି—ଜନ୍ତୁଟା ପଳେଇଲା— ।"

ସେନାପତି ରାଗରେ ଚମଚମ ହୋଇ କହିଲେ, "ଆଉ କାଲି ତଳମୁ ନକଲି ପଥପ୍ରଦର୍ଶକଙ୍କ ପଛରେ ଆମକୁ ଯିବାକୁ ହେବ ।'

ସଚିବ ଯନ୍ତ୍ରଣାରେ ଗଁ ଗଁ ହୋଇ କହିଲେ, "ଅସମ୍ଭବ । ମୁଁ ଆଉ ଯାଇ ପାରିବି ନାହିଁ । ଏଇଠାରେ ତମ୍ବୁ ପକାଇବାକୁ ହେବ ।"

ସେନାପତିଙ୍କର ମନ ହେଉଥିଲା, କହି ଦିଅନ୍ତେ ଯେ, ସୈନ୍ୟ-ମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ନିରାପତ୍ତା ବିଷୟ ପ୍ରଥମେ ବିଚାରିବାର କଥା, ନିଜର ନୁହେଁ । ପୁଣି ବିଚାରିଲେ, ସଚିବ ଯଦି ତମ୍ବୁ ପକାଇବାକୁ ସ୍ଥିର

କଲେଣି, ତେବେ ଦୋଷ ତ ତାଙ୍କର ହେବ ନାହିଁ । ସେ କେବଳ ନରମସ୍ୱରରେ ଆପତ୍ତି କରିବାକୁ ଯାଇ ନପାରିଲେ, କହିଲେ, "ମୋ ମତ, ଆଗେଇ ଯାଇ ଆଜ ଆମ ଦୁର୍ଗରେ ପହଞ୍ଚିଗଲେ ଭଲ ହୁଅନ୍ତା । କିନ୍ତୁ ଆପଣ ଯଦି କହୁଛନ୍ତି—।"

ସେନାପତିଙ୍କ କଥା ସରିବା ପୂର୍ବରୁ ସେମାନେ ଶୁଣିଲେ ଗୋଟାଏ ପ୍ରକାଣ୍ଡ ଶବ୍ଦ ପଛଆଡ଼ ପର୍ବତରୁ—ବହୁତ ଲୋକ ପାଟି କରୁଥାନ୍ତି । ସେନାପତି ମୁହଁ ଟେକି ପଛକୁ ଚାହିଁଲେ, ଗୁଡ଼ାଏ ଅଶ୍ୱାରୋହୀ ଏକାଠି ହୋଇଥାନ୍ତି । ଗୁଡ଼ାଏ ଡକାୟତ ଲୋକ—ଦଶ, କି କୋଡ଼ିଏ, କି ତିରିଶ, ଜଣ ହେବେ—ପର୍ବତଶୃଙ୍ଗରୁ ଗଡ଼ି ଆସୁଥାନ୍ତି—ଘୋଡ଼ାମାନେ ପାଣି ସୁଅରେ ହୋଇଥିବା ଅତଡ଼ାର ଛିନ୍ନ ପଥରଖଣ୍ଡ ଓ ତୁଷାର ଭିତରେ ତଳକୁ ଗଡ଼ି ଆସୁଥାନ୍ତି । ଅଶ୍ୱାରୋହୀମାନେ ହାତରେ ଉନ୍ମୁଖ ଖଣ୍ଡା ସିଧାକରି ଧରିଥାନ୍ତି; ଖଣ୍ଡାରେ ଚକ୍‌ଚକ୍ ସୂର୍ଯ୍ୟକିରଣ ଚକ୍ ଚକ୍ କରୁଥାଏ ।

"ସାବଧାନ ! ସାବଧାନ !"—ସେନାପତି ସୈନ୍ୟମାନଙ୍କୁ ତାଗିଦ୍ କଲେ, କିନ୍ତୁ ସେତେବେଳକୁ ବେଳ ଆଖର ହୋଇ ଯାଇଥିଲା । ଡକାୟତ ଅଶ୍ୱାରୋହୀ ସେତେବେଳକୁ ଏମାନଙ୍କୁ ଘେରି ଯାଇଥାନ୍ତି । ସୈନ୍ୟବାହିନୀର ପଛରେ ଯେଉଁ କେତୋଟି ଘୋଡ଼ା ମାଲ ବୋହି ଆସୁଥିଲେ ତାଙ୍କ ପଛରେ ଥିଲା ଗୋଟିଏ ମାଲଗାଡ଼ି—ତା' ଉପରେ ମଧ୍ୟ ବହୁତ ମାଲ ଲଦା ହୋଇଥାଏ । ଡକାୟତମାନେ ସେ ମାଲଗାଡ଼ିକୁ ମାଲ ସହିତ ଧରି ପବନ ପିନ୍ଧୁଥିବା ଗିରିସଙ୍କଟ ଉପରକୁ ବାହାରିଗଲେ । ସେନାପତିଙ୍କ ପାଟିରୁ କଥା ବାହାରୁ ନଥାଏ । ସେମାନେ ଡକାୟତଙ୍କ ପାଖରେ ପଡିଗଲେ ! ବାଟ କଢ଼ାଉଥିବା ଡକାୟତମାନଙ୍କର ବି ଦେଖାଦର୍ଶନ ନାହିଁ । ସେମାନେ ତେବେ କ'ଣ ଏଇ ଦସ୍ୟୁଦଳରେ ମିଶିଗଲେ ? ସଂକୀର୍ଣ୍ଣ ଗିରିବର୍ତ୍ମର ଦୁଇଆଡ଼େ ପର୍ବତ ଉପରେ ସେନାପତି ଆଖି ବୁଲାଇନେଲେ । ସେମାନେ ଯେଉଁସ୍ଥାନରେ ଅଛନ୍ତି ସେଥିରେ ସେମାନଙ୍କୁ ଆକ୍ରମଣ କରିବାକୁ କିଛି ନାହିଁ । ଦୁଇ ପାଖର ପର୍ବତର ଖିଅ ଗଡ଼ାଣିକୁ ସେନାପତିଙ୍କ ଦୃଷ୍ଟି ପଡ଼ିଲା । ଅତର୍କିତ ଆକ୍ରମଣକାରୀଙ୍କୁ ଠାବ କରିବା ବିଷୟରେ ତାଙ୍କ ଆଖି ଦୁଇଟି ବହୁକାଳରୁ ଦକ୍ଷତା ଅର୍ଜନ

କରିଥାନ୍ତି । ସେ ନିରେଖି କରି ଚାହିଁ ଦେଖିଲେ, ପର୍ବତ ଗଡ଼ାଣିରେ ଠାଏ ଗୋଟାଏ ରାଇଫଲ୍‌ର ନଳ ଚକ୍‌ମକ୍ କରୁଛି ତ, ଆଉ ଠାଏ ଲୁମ୍ବାଟୋପି ଲଗାଇଥିବା ଲୋକର ଦେହ ପର୍ବତର ପଥର ସନ୍ଧିରେ ଅଧା ଦିଶୁଛି । ଶହେ ଜଣ ବିଦ୍ରୋହୀ ଲୋକ ପର୍ବତ ଉପରେ ଏହିପରି ଛପି ରହି, ତାଙ୍କର ସମଗ୍ର ବାହିନୀକୁ ସହଜରେ ଧ୍ୱଂସ କରି ଦେଇ ପାରିବେ ବୋଲି ସେ କଳନା କଲେ ।

ସେ ଆଦେଶ ଦେଲେ, "ହେଇଟି, ତମେ ଦୁଇଜଣ ଦଳପତି, ମୋ ପାଖକୁ ଆସ ।"

ଦୁଇଜଣ ଯୁବକ ତାଙ୍କ ପାଖକୁ ଆସିଲେ ଓ ସେଇ ରାସ୍ତାରେ କେତେ ପାଦ ତଳକୁ ସେନାପତିଙ୍କ ପଛେ ପଛେ ଗଲେ । ସେଠାରେ ପର୍ବତ ପାଖରେ ଗୋଟିଏ ପଥରକୁ ଡେରି ଦେଇ ସେନାପତି ଏହି ଦୁଇ ଯୁବକଙ୍କ ଆଡ଼କୁ ଚାହିଁଲେ । ତାଙ୍କ ପାଖକୁ ଲାଗି ଠିଆ ହୋଇଥାନ୍ତି ତାଙ୍କର ବିଶ୍ୱସ୍ତ ସହକାରୀ କାଓ-ଲି ।

ସେନାପତି ଯୁବକ ଦୁହିଁଙ୍କୁ କହିଲେ, "ବର୍ତ୍ତମାନ ପରିସ୍ଥିତିର ଆସ କଳନା କରିବା । ଏ ପର୍ଯ୍ୟନ୍ତ ଆମକୁ ଦିଆଯାଇଥିବା ନିର୍ଦ୍ଦେଶ ଅନୁସାରେ ଆମେ କାର୍ଯ୍ୟ ସଂପନ୍ନ କରିଥାଇ । କାଲି ରାତି ସୁଦ୍ଧା ଆମେ ଯାଇ ଆମ ସୈନ୍ୟ ଶିବିରରେ ପହଞ୍ଚିବାର କଥା । ଏଇ ବିଦ୍ରୋହୀ କୁକୁର କେଇଟାଟା ଆମ ପଛରେ ଲାଗିଛନ୍ତି ବୋଲି ଆମେ ଆମର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସାଧନ କରିବାରୁ ତ ହଟିଯିବା ନାହିଁ !"

ଯୁବକ ଦୁହିଙ୍କ ପ୍ରତିକ୍ରିୟା ଜାଣିବାକୁ ସେ ଟିକିଏ ଚୁପ୍ ହେଲେ, କିନ୍ତୁ ଏମାନେ କିଛି ନ କହି ଚୁପ୍ ହୋଇ ଠିଆ ହୋଇଥାନ୍ତି । ଆଦେଶ ମାନିବାରେ ସେମାନେ ଅଭ୍ୟସ୍ତ । ପରାମର୍ଶରେ ଯୋଗ ଦେବା ତାଙ୍କର କାମ ନୁହେଁ; ପୁଣି ଶୀତ ଓ ପଥଶ୍ରାନ୍ତିରେ ସେମାନେ ସାଙ୍ଗୁଡ଼ି ହୋଇ ଯାଇଥାନ୍ତି । ସେମାନେ ନିଷ୍ପ୍ରଭ ଦୃଷ୍ଟିରେ ସେନାପତିଙ୍କୁ ଖାଲି ଚାହିଁ, ରହିଲେ ।

ସେନାପତି ପଚାରିଲେ, "କଣ, ତୁମର କ'ଣ କିଛି କହିବାର ନାହିଁ ?"

କାର୍ଓ୍ୱେଲ ଜବାବ୍ ଦେଲେ, "କମେଣ୍ଡ୍, ଯାହା କରିବାର କଥା ତୁମେ କହ, ଆମେ ଆଦେଶ ପାଳନ କରିବାକୁ ପ୍ରସ୍ତୁତ ଅଛୁ।"

ସେନାପତି ଚିନ୍ତା କରିବାକୁ ଲାଗିଲେ । ଲଜ୍ଜାର କଥା, ତାଙ୍କୁ କାନ୍ଦ ମାଡ଼ୁଥାଏ । ଏଇ ଯୁବକ ଦୁହିଙ୍କ ସଙ୍ଗେ ଯୁକ୍ତି କରି ସେ ବୁଝାଇବାକୁ ଇଚ୍ଛା କରୁଥାନ୍ତି ଯେ, ବର୍ତ୍ତମାନ ଏ ଯେଉଁ ଭୀଷଣ ପରିସ୍ଥିତି ଆସି ପହଞ୍ଚିଛି, ସେଥିପାଇଁ ସେ ଦାୟୀ ନୁହନ୍ତି । ନିଜ ମନରେ ଜାତ ହେଉଥିବା ଦୁର୍ବଳ ଆକାଂକ୍ଷା ସବୁ ସେ ଜୋରକରି ଦବାଇ ଦେଲେ ଓ ତାଙ୍କ ମନରେ ଯେଉଁ ଭୟ ଉଙ୍କି ମାରୁଥିଲା ତା'କୁ ବି ଜବତ୍ କଲେ । ତାଙ୍କ ସୈନ୍ୟମାନେ ତାଙ୍କରି ପିଲେ, ତାଙ୍କ ନିଜ ପୁଅପରି । ସେମାନଙ୍କ ନିରାପତ୍ତା କଥା ଆଗ ବିଚାରକୁ ନେବାପାଇଁ ସେ ନିଜକୁ ଜାଗ୍ରତ କଲେ । ଏମାନଙ୍କୁ ଉତ୍ସାହିତ କରି ପୁଣି ଘାଟି ଆଡ଼ ପଛକୁ ହଟାଇ ନେବେ ?– ତାହା ସେ କରିବେ ନାହିଁ । ସେପରି କଲେ, ସେ ପାଖର ପର୍ବତରେ ସେନା ଛିନ୍ନଛିନ୍ନ ହୋଇଯିବ, ସୈନ୍ୟମାନେ ପର୍ବତ ଚୋଡ଼ରେ ଆଖି ଫିଟାଇ ଚାହିଁ ପାରିବେ ନାହିଁ । ଏ ଅବସ୍ଥାରେ ଅଶ୍ୱାରୋହୀ ତିବ୍ବତୀୟମାନଙ୍କ ହାତରେ ଏମାନେ ନିଃସହାୟ ହୋଇ ପ୍ରାଣ ହରାଇବା ସାର ହେବ । ସେପରି କଲେ ତିବ୍ବତୀୟ-ମାନେ ଗୋଟିକଠାରୁ ସମସ୍ତଙ୍କୁ ବିନାଶ କରିଦେବେ ଓ ଯେଉଁ ଅମୂଲ୍ୟ ଧନ ଓ ଯୁଦ୍ଧ ସାମଗ୍ରୀ ସେ ନେଇଛନ୍ତି ସେ ସବୁ ତିବ୍ବତୀୟମାନେ ଲୁଟିନେବେ । ଏହି ଧନ ଓ ସାମଗ୍ରୀପାଇଁ ଏପାଖେ ହଜାର ହଜାର ଲୋକ ତାଙ୍କ ଆଗମନକୁ ପ୍ରତୀକ୍ଷା କରି ରହିଛନ୍ତି ! ଫେରିବାକଥା ଅସମ୍ଭବ······ ଆଉ ତେବେ କ'ଣ ତାଙ୍କ ସେନାକୁ ଦୁଇଭାଗ କରି, ଏହି ରାସ୍ତାରେ ଦୁଇ କଡ଼ର ପର୍ବତ ଉପରେ ଆକ୍ରମଣ ଆରମ୍ଭ କରି, ଛପି ରହିଥିବା ତିବ୍ବତୀୟମାନଙ୍କୁ ତାଙ୍କ ଲୁଚି ରହିଥିବା ସ୍ଥାନରୁ ଘଉଡ଼ିବାକୁ ଚେଷ୍ଟା କରିବେ ? ତାହା ତ ଆହୁରି ମୂର୍ଖାମି ହେବ ? ତିବ୍ବତୀୟମାନେ ଲୁଚି ରହିଥିବା ପର୍ବତ ଖୋଲରୁ ନିରାପଦରେ ତାଙ୍କ ସୈନ୍ୟଙ୍କୁ ଗୁଳିକରି ମାରି, ତାଙ୍କର ସବୁ ଜିନିଷ ହସ୍ତଗତ କରିନେବେ ! ସେ ଦୁଇ ପାଖର ପର୍ବତ ଆଡ଼କୁ ପୁଣି ଚାହିଁଲେ । ଯଦି ତାଙ୍କ ସୈନ୍ୟମାନେ ଯଥେଷ୍ଟ ପଥର ସଂଗ୍ରହ କରି ଏଇ ରାସ୍ତାର ସ୍ଥିରପଟେ ଗୋଟାଏ ପାଚେରି ଗଢ଼ି ପାରନ୍ତେ !—କିନ୍ତୁ ଏଠାରେ ତ ପଥର କଥା ଦୂରେ ଥାଉ, ମୁଠାଏ ମାଟି ବି ପାଇବା ଅସମ୍ଭବ ! ଯୁଗ ଯୁଗ ଧରି

ଭୀଷଣ ପବନ ଏ ସ୍ଥାନରୁ ପ୍ରତି ଧୂଳିକଣା ଉଡ଼ାଇ ନେଇଛି । ବର୍ତ୍ତମାନ, ଆଜି ଗୋଟିଏ ମାତ୍ର ଉପାୟ—ଦୁଇ ପାଖର ପର୍ବତ,ଉପରକୁ ନିର୍ବଚ୍ଛିନ୍ନ ଭାବେ ତୋପମାଡ଼କରି, ତିବ୍ବତୀୟମାନେ ଲୁଚିଥିବା ଖୋଲଗୁଡ଼ାକୁ ଚୂରମାର କରିବା । କିନ୍ତୁ ମୃଗୁନି ପଥରକୁ ତୋପ କ'ଣ ଚୂନା କରି ପାରିବ ? ଏ ଅଳୀକ କଳ୍ପନା ମଧ୍ୟ ତ୍ୟାଗ କରି ସେ ଖାଲ ଦୁଇ ପାଖର ପର୍ବତ ଶୃଙ୍ଗକୁ ଚାହିଁ ରହିଲେ । ସେଗୁଡ଼ାକ ଜନମାନବଶୂନ୍ୟ ଜଣା ପଡ଼ୁଥିଲେ ହେଁ, ସେ ଜାଣିଥାନ୍ତି ଯେ, ତା'ରି ଭିତରେ ଶତ୍ରୁ ଲୁଚି ରହିଛନ୍ତି । ଶତ୍ରୁ ? ଶତ୍ରୁ କିଏ ? ଏଇ ତିବ୍ବତୀୟମାନେ ? ସେ ଶୁଣିଥାନ୍ତି, ତିବ୍ବତୀୟମାନେ ଚୀନାଙ୍କୁ ଶ୍ରଦ୍ଧା କରନ୍ତି, ସ୍ୱାଗତ କରୁଛନ୍ତି ଓ ତାଙ୍କ ଦେଶକୁ ଚୀନାଲୋକେ ଆସିବେ ବୋଲି ଚାହିଁ ରହିଛନ୍ତି । ଏ ଅଜବ ଗୁଳିଖିଟି ଗପ କହୁଛି କିଏ ? ଏଇ ସଚିବ ! ସେନାପତି ସଚିବଙ୍କ ଆଡ଼କୁ ଚାହିଁଲେ । ତାଙ୍କ ପିଲାଦିନର ଶତ୍ରୁ, ସେଇ ଲୋକଟା କମ୍ବଳ ଘୋଡ଼ାଇ ହୋଇ ତଳେ ପଡ଼ିଥାଏ ।

ସେନାପତି ଦୁଇ ଦଳପତି ଯୁବକଙ୍କୁ କହିବାକୁ ଲାଗିଲେ, "ଆମ ସେନାର ପ୍ରତ୍ୟେକଙ୍କୁ ଓ ସବୁତକ ଜିନିଷପତ୍ର ନିରାପଦରେ ନେଇ ସୈନ୍ୟ ଛାଉଣିରେ ପହଞ୍ଚାଇବାକୁ, ଆମକୁ ଅର୍ଡ଼ର ଦିଆହୋଇଛି । ଆମେ ଯଦି ଆମ କାର୍ଯ୍ୟରେ ବିଫଳ ହୁଏ, ତେବେ ସେଠାରେ ଆମକୁ ଚାହିଁରହିଥିବା ଭାଇମାନଙ୍କର ଧ୍ୱଂସ ହେବ ହିଁ ହେବ । ଆମ୍ଭେମାନେ ହିଁ ସେମାନଙ୍କର ଏକମାତ୍ର ଆଶାଭରସା । ତେଣୁ ଆମର ସୈନ୍ୟଙ୍କୁ ଓ ସମସ୍ତ ଜିନିଷ ଓ ଯୁଦ୍ଧ ସାମଗ୍ରୀକୁ ଆମେ ଏତେବେଳେ ସମ୍ଭାଳିବା ଦରକାର । ତା' ନକରି, ଏତେବେଳେ ଯଦି ଆମ ସେନାଙ୍କୁ ଆମେ ଛପି ରହିଥିବା ଏଇ ତିବ୍ବତୀୟଙ୍କ ବିରୁଦ୍ଧରେ ଯୁଦ୍ଧରେ ବ୍ୟାପୃତ କରୁଁ ତେବେ ଆମ ସେନା ଅବସନ୍ନ ହୋଇ ନାଶଯିବେ । ମୋର ବିଶ୍ୱାସ, ଏହି ତିବ୍ବତୀୟ ଦସ୍ୟୁମାନେ ଟଙ୍କା ପାଇଲେ ସବୁ କିଛି କରି ପାରିବେ । ତେଣୁ ମୁଁ ଭାବୁଛି, ଆମେ ସେମାନଙ୍କ ସହିତ ଆପୋସ କଥାବାର୍ତ୍ତା ଚଳାଇବା । ସେମାନେ ଅବଶ୍ୟ ବହୁ ଧନ ଓ ସାମଗ୍ରୀ ଦାବି କରିବେ । କିନ୍ତୁ ତାହାହେଲେ ବି ତ ଆମର ସର୍ବସ୍ୱ ନଷ୍ଟ ହେବ ନାହିଁ ।"

ଏକଥା କାନରେ ପଡ଼ିବାରୁ ସଚିବ ଚେତେଇକା ହୋଇଗଲେ । ଯେଉଁ ପଥର ଖଣ୍ଡିକ ଉପରେ ସେ ପଡ଼ିଥିଲେ, ସେଥିରୁ ସେ ଧଡ଼ପଡ଼

ହୋଇ ଉଠି ଅଣ୍ଟାର କମରବନ୍ଧକୁ ଟାଣ କରି ଭିଡ଼ିଦେଲେ ଓ ତାଙ୍କ ଡାହାଣ ଗୋଡ଼କୁ ବାହାରକୁ ଲମ୍ବାଇ ଦେଲେ । ତା'ପରେ ଦୁଇ ହାତକୁ ଗୁଡ଼ି ଉପରେ ଛନ୍ଦି ସେ ସେନାପତିଙ୍କ ଆଗରେ ଠିଆ ହୋଇପଡ଼ି ଆରମ୍ଭ କଲେ, "ଦସ୍ୟୁମାନଙ୍କୁ ଯେଉଁ ପ୍ରଚୁର ଧନ ସମ୍ପତ୍ତି ଦେଇ ବୋଧ କରିବ ବୋଲି ଭାବୁଛ, ସେତକ ଦେଇ ସାରିଲା ପରେ ସେମାନେ ପୁଣି ଆମକୁ ଆକ୍ରମଣ କରିବେ ନାହିଁ ବୋଲି କୋଉ ବିଶ୍ୱାସ ଅଛି ? ଶେଷରେ ତ ନଷ୍ଟେ ସବୁତକ ଯିବ !"

ସେନାପତି ଦୃଢ଼ ସ୍ୱରରେ ଜବାବ ଦେଲେ, "ମୁଁ ସେମାନଙ୍କ ଅସ୍ତ୍ରଶସ୍ତ୍ର କିଣିନେବି ।"

ସଚିବ ପଚାରିଲେ, "କଣ ଦେଇ କିଣିବ ?"

ସେନାପତି କହିଲେ, "ଆମ ପାଖେ ଯେଉଁ ରୁପା ଅଛି, ତାକୁ ଇ ଦେଇ ।"

ଏକଥା ଶୁଣି ସଚିବ ତାଙ୍କ ସ୍ୱଭାବସିଦ୍ଧ ଅବଲମ୍ବ ଆରମ୍ଭ କଲେ । ସେ ଆଗକୁ ପାଞ୍ଚ ପାହୁଣ୍ଡ ଯାଇ, ପୁଣି ପଛକୁ ପାଞ୍ଚ ପାହୁଣ୍ଡ ଫେରି-ଆସିଲେ—ଭ୍ରୂକୁଞ୍ଚିତ କରି ସେନାପତିଙ୍କୁ ଧମକାଇଲା ପରି ମଟମଟ ଚାହିଁଲେ ଓ ସେନାପତିଙ୍କର ଏତେ ପାଖକୁ ମାଡ଼ି ଆସିଲେ ଯେ ତାଙ୍କ ମୁହଁର ଦୁର୍ଗନ୍ଧରେ ସେନାପତିଙ୍କ ନାକ ଚୁଣ୍ଡି ହୋଇଗଲା ।—

"ଏ ରୁପା କ'ଣ ତୁମ ବାପଘରୁ ? ଆମ ଦେଶର ଜନତାର ଏ ସମ୍ପତ୍ତିକୁ ଏପରି ବ୍ୟବହାର କରିବାକୁ ତୁମର ତ ଖାଲି ବାହାପ ?"

ସୈନିକମାନେ ଯେପରି ପରିଷ୍କାର ଶୁଣି ପାରିବେ, ସେହିପରି ବଡ଼ ପାଟିରେ ସଚିବ ଏ ଅଭିଯୋଗ କରୁଥାନ୍ତି । ଏହାର ଉଦ୍ଦେଶ୍ୟ, ସେନାପତି ବେଶ୍ ବୁଝିଲେ । ଭବିଷ୍ୟତରେ ଯେତେବେଳେ ସେନାପତି କର୍ତ୍ତବ୍ୟରେ ଅବହେଳା କରିଛନ୍ତି ବୋଲି ବିଚାର ହେବ, ସେତେବେଳେ ନିଜକୁ ନିର୍ଦ୍ଦୋଷ ବୋଲି ସଫେଇ ଦେବା ସକାଶେ, ସଚିବ, ସାକ୍ଷୀ ସଂଗ୍ରହ କରିବା ଉଦ୍ଦେଶ୍ୟରେ ଏପରି ପାଟି କରୁଥାନ୍ତି । ସେନାପତି ଅନୁଭବ କଲେ, ଭିତରେ ଗଦା-ହୋଇ ପୋଷାକ ତଳୁ, ତାଙ୍କ ଦେହରୁ ଗମ୍ ଗମ୍ ଝାଳ ବୋହିଯାଉଛି । ପଦମର୍ଯ୍ୟାଦାରେ ସଚିବ ତାଙ୍କଠାରୁ ବଡ଼ । ରାଜଧାନୀଠାରୁ ବହୁଦୂରରେ ଏ ଭୀଷଣ ପର୍ବତମାଳା ମଝିରେ ସେ ଏଭଳି ଚାଲିବେ,

ଯେପରି ରାଜଧାନୀରେ ତାଙ୍କ ଉପରକୁ ବିପଦ ନଆସିବ । ସେଠାରେ— ଦେଶର ଭାଗ୍ୟବିଧାତାଙ୍କ ନିଭୃତ କକ୍ଷରେ ତାଙ୍କ ଉପରେ ଯଦି ବିପଦ ଆସିବ ସେତେବେଳେ ଆତ୍ମରକ୍ଷା କରିବାର ସୁଯୋଗ ତାଙ୍କୁ ମିଳିବ କୁଆଡୁ ? ସେଠାରେ ଯେ ଏଇ ସଚିବଙ୍କର ପ୍ରଭୁତ୍ୱ କ୍ଷମତା ଓ ଅଧିକାର !

ସେଇ ସମ୍ଭାବିତ ବିପଦରୁ ନିଜକୁ ରକ୍ଷା କରିବା ସକାଶ ସେ ଧୈର୍ଯ୍ୟ ଧରି ସଚିବଙ୍କୁ ବୁଝାଇବାକୁ ଲାଗିଲେ, "ଧନକୁ ବଡ଼ ବୋଲି ବିଚାରି, କ'ଣ ଆମ ଦେଶର ଲୋକେ, ଏ ସୈନ୍ୟମାନେ ମରନ୍ତୁ ଓ ସବୁତକ ଜନସାଧାରଣ ଶତ୍ରୁ ହାତରେ ପଡ଼ନ୍ତୁ ବୋଲି ପସନ୍ଦ କରିବେ ? ଖାଲି ସେତିକି ତ ନୁହେଁ, ସୈନ୍ୟଶ୍ରେଣୀରେ ଯେଉଁ ଲୋକେ ଆମକୁ ଘେରି ରହିଥିବେ ସେମାନଙ୍କ ଭାଗ୍ୟ ମଧ୍ୟ ଆମର ଭାଗ୍ୟ ସଙ୍ଗେ ଯୋଡ଼ି ହୋଇ ରହିଛି । ଏତେବେଳେ ଆମକୁ ଟିକିଏ ଫୁରୁସତ୍ ମିଳିବା ବଡ଼ ଜରୁର୍ । ଟିକିଏ ସମୟ ଓ ସୁଯୋଗ ପାଇଲେ, ଆମର ସୈନ୍ୟମାନେ, ଯାହା ବା ସମ୍ପତ୍ତି ଓ ସରଞ୍ଜାମ ବଳିବ, ସେତିକି ଧରି ନିରାପଦ ଭାବେ ଖସିଯାଇ ପାରିବେ । ସବୁତକ ରୁପା ଆମ ହାତରୁ ଚାଲିଯିବାର ଆଶଂକା ନାହିଁ । ବାକ୍ସରୁ ବେଶୀଭାଗ ରୁପା କାଢ଼ିରଖି ତା' ପରିବର୍ତ୍ତେ ଗୋଡ଼ି ରଖିଦେବା, ଖାଲି ଓପରେ ଗୋଡ଼ିକୁ ଘୋଡ଼ାଇବାକୁ ଯେତିକି ରୁପା ଦରକାର ସେତିକି ରଖିବା ।"

ସଚିବ ଟିକିଏ ଛେପ ଲେଣ୍ଡାଏ ପକାଇ ଦେଲେ ; ବିଦ୍ରୂପ କରି କହିଲେ, "ଅତି ପିଲାଳିଆ ପରିକଳ୍ପନା ।"

ସେନାପତି ତାହା କଲେ, "ଏହାଠାରୁ ଭଲ ଉପାୟ କିଛି ଆପଣ ଭଲ ଚିନ୍ତା କରିଛନ୍ତି ?" ସଚିବ କିଛି ଜବାବ ନଦେବାରୁ ସେନାପତି ନିଜ ସିଦ୍ଧାନ୍ତରେ ଆଗେଇଲେ ।

ସେ କାର୍ଓ-ଲିଙ୍କୁ ଡାକି କହିଲେ, "କଳମପତ୍ର ବନ୍ଧା ହୋଇଥିବା କାଗଜରୁ ଖଣ୍ଡେ ଆଣ । ମୁଁ ଏ ଦସ୍ୟୁମାନଙ୍କ ପାଖକୁ ଗୋଟାଏ ପ୍ରସ୍ତାବ ଲେଖି ପଠାଇବି । ତୁମେ ଗୋଟାଏ ଘୋଡ଼ାରେ ଚଢ଼ି ଏହା ନେଇ ସେମାନଙ୍କ ପାଖକୁ ଯିବାକୁ ପଡ଼ିବ । ତୁମେ ଶାନ୍ତିସର୍ତ୍ତ ଧରି ଆସିଛ ଏହା ସେମାନଙ୍କୁ ଜଣାଇବା ସକାଶ ବନ୍ଧୁକଟା ରଖି ଦେଇ ଯିବ ।"

ମାରବ ହୋଇ କାଓ-ଲି ହୁକୁମ୍ ଜାରିକ୍ କଲେ । ସେନାପତି, କାଗଜରେ ସରଳ ଭାଷା ଓ ପରିଷ୍କାର ଅକ୍ଷରରେ ଏହି କଥା ଲେଖିଲେ—

"ଆମର ତିବ୍ବତୀୟ ଭାଇମାନେ ! ଆମେ ପରସ୍ପର ଲଢ଼େଇ କରିବା ଉଚିତ ହେବନାହିଁ । ବୁଝାମଣା କରିବାକୁ, ଆସନ୍ତୁ ଏକାଠି କଥାବାର୍ତ୍ତା ହେବା ।" ସେନାପତି କାଓ-ଲି'ଙ୍କୁ ଲେଖାଖଣ୍ଡି ଦେଲେ ; କାଓ-ଲି କାଗଜ ଖଣ୍ଡି ପତାକା ପରି ଉପରକୁ ଟେକି ତିବ୍ବତୀୟମାନଙ୍କ ଆଡ଼କୁ ଚାଲିଗଲେ । ତାଙ୍କ ହାତରେ କୌଣସି ଅସ୍ତ୍ରଶସ୍ତ୍ର ନଥାଏ ।

ସେନାପତି ତାଙ୍କ ଆଡ଼କୁ ଚାହିଁ ରହିଥାନ୍ତି । କାଓ-ଲି ଯାଇ ପର୍ବତର ପାଦଦେଶରେ ପହଞ୍ଚିବାମାତ୍ରେ ଯନ୍ତ୍ରଚାଳିତ-କମାଣର ଭୀଷଣ ଗୁଡ଼ୁମ୍ ଗୁଡ଼ୁମ୍ ଶବ୍ଦ ବରଫ ଶୀତଳ ପବନକୁ ଭେଦ କରି ଶୁଣାଗଲା । କମାଣର ଆବାଜରୁ ସେନାପତି ଜାଣି ପାରିଲେ ଏହା ଋଷିଆ ତିଆରି କମାଣ । ଏହା ନିଶ୍ଚୟ ଚୀନା ସୈନ୍ୟମାନଙ୍କ ହାତରୁ ଏମାନେ ହସ୍ତଗତ କରିଛନ୍ତି । କାଓ-ଲିଙ୍କ ପ୍ରାଣହୀନ ଶରୀର ଘୋଡ଼ାରୁ ତଳକୁ ଖସି ପଡ଼ିଲା !

ସଚିବ ମଧ୍ୟ ସେହି ଆଡ଼କୁ ଚାହିଁ ରହିଥିଲେ । ଏ ଘଟଣା ଦେଖି ସେ ନିର୍ମମ ଭାବେ କହିଲେ, "ଏହି ଦସ୍ୟୁମାନଙ୍କ ପାଖରେ ତ ଭଲ ଅସ୍ତ୍ର-ଶସ୍ତ୍ର ରହିଛି ।"

ସେନାପତିଙ୍କ ତୁଣ୍ଡରୁ କଥା ସ୍ଫୁରିଲା ନାହିଁ । ସେ କଲେ କ'ଣ ? କାହିଁକି ଚିଠି ଦେଇ କାଓ-ଲି'ଙ୍କୁ ପଠାଇଲେ ? ଗୋଧୂଳି ସମୟର କ୍ଷୀଣ ଆଲୋକରେ ସେ ନିରେଖି କରି ଦେଖିଲେ, ଜଣେ ତିବ୍ବତୀୟ ଅଶ୍ୱାରୋହୀ ଗଡ଼ି ଆସିଲା ପରି କ୍ଷିପ୍ରଭାବେ ପର୍ବତରୁ ଓହ୍ଲାଇ ଆସିଲା ; ହାତରେ ଖଣ୍ଡା ସିଧା ଟେକି ଧରିଥାଏ । ମୃତ ଶରୀର ପାଖରେ ସେ ଅଟକିଲା ଓ ଘୋଡ଼ାରୁ ଓହ୍ଲାଇ କାଓ-ଲି'ଙ୍କ ମୁଣ୍ଡ ଖଣ୍ଡାରେ ଛେଦି ଦେଲା । ତା'ପରେ ସେ ଛିନ୍ନ ଖଣ୍ଡକ ଧରି ପର୍ବତ ଉପରକୁ ଉଠିଗଲା, କାଓ-ଲି'ଙ୍କ ଘୋଡ଼ାକୁ ଆପଣା ଘୋଡ଼ା ସଙ୍ଗେ ଚଲାଇ ନେଇ ।

ସେନାପତି କେଉଁଠାରେ ଅଛନ୍ତି ପାସୋରି ପକାଇଲେ । କାଓ-ଲିଙ୍କ ମସ୍ତକହୀନ ଶରୀରଟି ମାତ୍ର ତାଙ୍କୁ ଦିଶୁଥାଏ । ସେ ରାସ୍ତାର ଉତ୍ତର ଆଡ଼କୁ ଧାଇଁଗଲେ ଏବଂ ଗଡ଼ାଣିଆ ରାସ୍ତାରେ ତାଙ୍କ ଆଡ଼କୁ ଗଡ଼

ଆସୁଥିବା ମୁଣ୍ଡଟାକୁ ଗୋଡରେ ଅଟକେଇ ରଖିଲେ । କାଓ-ଲିଙ୍କ ମୁହଁ ତାଙ୍କର ଆଡ଼କୁ ରହିଥାଏ ; ଅତର୍କିତ ମୃତ୍ୟୁ ଯୋଗୁଁ ଆଖି ଦୁଇଟା ଖୋଲା ହୋଇ ଯାଇଥାନ୍ତି । ସେନାପତି, ଗୋଡ଼ତଳେ ପଡ଼ିଥିବା ମୁଣ୍ଡର ମୁହଁକୁ ଗୁହିଁ ରହିଲେ । ତାଙ୍କର ମନେ ପଡ଼ିଲା ଗାଁରେ କାଓ-ଲିର ପିଲାଦିନ । ପିଲାଦିନେ ଦୁହେଁ ସାଙ୍ଗ ହୋଇ ଗୁଡ଼ି ଉଡ଼ାଇଲା ବେଳଠାରୁ ଆଜି ପର୍ଯ୍ୟନ୍ତ, କାଓ-ଲି ତାଙ୍କର ଅନୁଗତ ସହଚର ହୋଇ ରହି ଆସିଥିଲା । କାଓ-ଲି'ଙ୍କ ଦୃଷ୍ଟିରେ ସେ ସେଇ ପିଲା ଦିନୁ ବୀର ବୋଲି ସମ୍ମାନ ପାଇ ଆସିଛନ୍ତି । ସେନାପତିଙ୍କ ଭିତରେ ଗଭୀର ଯନ୍ତ୍ରଣା ଜାତ ହେଲା, ସେଇ ଯନ୍ତ୍ରଣା ଆସି ତାଙ୍କ ଓଠରେ ପହଞ୍ଚି, ବଜ୍ରାଘାତିମାନରେ ବାହାରକୁ ବାହାରି ଆସିଲା ।

ସେ ଯାହା ହେଉ, ନିଜ ବନ୍ଧୁପାଇଁ ବି ଶୋକ କରିବାକୁ ବେଳ ଏତେବେଳେ ମିଳୁଛି କେତେକେ ? ଜଣେ ତିବ୍ବତୀୟ ଅଶ୍ୱାରୋହୀ ପର୍ବତ ଉପରୁ ବାହାରିଲା; ସେ ହାତରେ ଗୋଟାଏ ଖଣ୍ଡା ଟେକି ଧରିଥାଏ ଓ ତା'ର ଆଗରେ ଥାଏ ସେନାପତି ପଠାଇଥିବା କାଗଜ ଖଣ୍ଡ । ଲୋକଟି ପାଖକୁ ଆସିଲା ଓ ସେନାପତିଙ୍କ ଆଡ଼କୁ ଖଣ୍ଡାଟି ଦେଖାଇ ଦେଲା । ସେନାପତି ଖଣ୍ଡା ଅଗରୁ କାଗଜ ଖଣ୍ଡି କାଢ଼ିନେଲେ । କାଓ-ଲି ଯେଉଁ ଚିଠି ଖଣ୍ଡି ନେଇଥିଲେ ଠିକ୍ ସେଇ ଚିଠି, ତାର ପଛ ପଟେ କେତୋଟି ଚୀନା ଅକ୍ଷର, ଠିକ୍ ଯେପରି ଲେଖାଯାଏ ସେହିପରି ଲେଖା ହୋଇ-ଥାଏ ।

"ବୁଝାମଣା ପାଇଁ ଏକାଠି ହେବାକୁ ଆମେ ରାଜି । ବର୍ତ୍ତମାନ-ଠାରୁ ଘଣ୍ଟାକରେ ପଶ୍ଚିମକୁ ଥିବା କୃଷ୍ଣପ୍ର ଶୃଙ୍ଗ ପାଖେ ବୈଠକ ବସିବ ।"

ସେନାପତି ତରତର ହୋଇ ନିଜ ସୈନ୍ୟଙ୍କ ପାଖକୁ ଯାଇ ନିର୍ଦ୍ଦେଶ ଦେଲେ — ସଚିବ ଏବଂ ପୂର୍ବବର୍ଣ୍ଣିତ ଦଳପତି ଦୁହେଁ ତାଙ୍କ ସଙ୍ଗେ ନିର୍ଦ୍ଦିଷ୍ଟ ସ୍ଥାନକୁ ଯିବାକୁ ହେବ । ସେଇ ସମୟ ଭିତରେ ସେନାପତି, ସାମାନ୍ୟ ସମ୍ଭାବନ୍ ଦହି ଟିକିଏ ଖାଇ, ତିବ୍ବତୀୟଙ୍କ ସଙ୍ଗେ କେଉଁ ମର୍ମରେ କଥାବାର୍ତ୍ତା କରିବେ ତାହା ମନେ ମନେ ଠିକଣା କରିନେଲେ । ଘଣ୍ଟାକ ସେଇଲାଗେ ଗତ ହୋଇଗଲା , ସେନାପତି, ସଚିବ ଓ ଦଳପତି

ଦୁହେଁ ପଶ୍ଚିମ ଦିଗରେ ଥିବା ତ୍ରିଶିଖର ଶୃଙ୍ଗ ଚଢ଼ିବାକୁ ଗଲେ । କିଛି ବାଟ ଯାଇ ସେମାନେ, ଗୋଟିଏ କ୍ଷୁଦ୍ର ଉପତ୍ୟକା ଦେଖିଲେ । ସେଥିରେ ତୁଷାର ଆଦୌ ନଥାଏ କହିଲେ ଚଳେ । ଉପତ୍ୟକାର ମଝିରେ ଗୋଟିଏ କ୍ଷୁଦ୍ର, ଗଭୀର ହ୍ରଦ; ଚନ୍ଦ୍ର କିରଣରେ ହ୍ରଦର ନୀଳ ଜଳ ଈଷତ୍ ଧଳା ଦିଶୁଥାଏ—ସେତେବେଳକୁ ଚନ୍ଦ୍ର ପର୍ବତମାନଙ୍କ ଚୂଡ଼ା ଉପରେ ଦିଶୁଥାନ୍ତି । ସେମାନେ ଯେଉଁ ବାଟରେ ଯାଉଥିଲେ, ତାହାର ବିପରୀତ ଦିଗରେ ଥିବା ରାସ୍ତାରେ ଲଣ୍ଠନର ମିଞ୍ଜି ମିଞ୍ଜି ଆଲୁଅ ଦେଖି ସେନାପତି ଜାଣିଲେ, ଅପରପକ୍ଷ କଥାବାର୍ତ୍ତା ପାଇଁ ଆସୁଛନ୍ତି । ମିଳାମିଶା ପାଇଁ ତାଙ୍କର ଖୁବ୍ ବେଶି ଆଗ୍ରହ ଥିବାର ଜଣା ନ ପଡ଼ୁ, ଏଥିପାଇଁ ସେନାପତି ନିଜର ଗତି ଟିକିଏ ମନ୍ଥର କଲେ, ଯେପରି ନିର୍ଦ୍ଦିଷ୍ଟ ସ୍ଥାନରେ ସେ ଆଗରୁ ନ ପହଞ୍ଚିବେ । ଯେ ଆଗରୁ ଯାଇ ପହଞ୍ଚିବ ସେ ଦୁର୍ବଳ ପକ୍ଷ ବୋଲି ଜଣାପଡ଼ିବାର କଥା । ନିଜର ଗତି ଯଥାଯଥ ଭାବେ ନିୟନ୍ତ୍ରଣ କରିବା ଯୋଗୁଁ, ତିବ୍ବତୀୟମାନେ ଆସି ଯେତିକିବେଳେ ହ୍ରଦକୂଳରେ ପହଞ୍ଚିଲେ, ସେନାପତି ଓ ତାଙ୍କ ସହଚରମାନେ ମଧ୍ୟ ଠିକ୍ ସେତିକିବେଳେ ପହଞ୍ଚିଲେ । ତିବ୍ବତୀୟ ଦଳରେ ଥାନ୍ତି ତିନିଜଣ, ପ୍ରତ୍ୟେକେ ଘୋଡ଼ାରେ ଚଢ଼ି ଆସିଥାନ୍ତି । ସେମାନଙ୍କର ନେତା ଜଣେ ଖୁବ୍ ଡେଙ୍ଗା ଲୋକ, ଗ୍ରୀବାଟା ତାଙ୍କର ଖୁବ୍ ଓସାର । ସେ ପିନ୍ଧିଥାନ୍ତି ଖଣ୍ଡେ ଲମ୍ବା କୁରୁତା, ରଙ୍ଗ, ମଦପରି ନାଲି; କୁରୁତାର ଧଡ଼ିରେ ଲୋମ ଶିଲେଇ ହୋଇଥାଏ; ବେକ ପାଖେ କଲର୍ ଖୋଲିଥାଏ । ସେଥିର କିନାରରେ ମଧ୍ୟ ଲୋମ ଥାଏ । ତାଙ୍କ ଲୁମା ଟୋପିଟା ସେ କାଖରେ ଜାକିଥାନ୍ତି; ମୁଣ୍ଡ ତାଙ୍କର ଏକାବେଳକେ ଲଣ୍ଡା । ସେନାପତି ଦେଖିଲେ, ଲୋକଟିର ଭ୍ରୂଲତା ଦୁଇଟି କଳା ଓ ମୁହଁଟି ବେଶ୍ ସୁନ୍ଦର । ସେନାପତି, ଆହୁରି ମଧ୍ୟ ଲୋକଟିରେ ଚେହେରାରୁ ଲକ୍ଷ୍ୟ କଲେ, ସେ ବୋକା ନୁହେଁ, ଚଲାକ—ପଶୁପରି ନୃଶଂସ ପ୍ରକୃତିର ନୁହେଁ, ଭଲ ମଣିଷ ପରି ଉଦାର-ପ୍ରକୃତିର ଲୋକ । ମୁହଁରୁ ଜଣା ପଡ଼ୁଥାଏ ସେ ଜଣେ ଧର୍ମଯାଜକ, ତିବ୍ବତୀୟ ଲାମା—ସୈନିକ ନୁହେଁ । ତିବ୍ବତୀୟମାନେ ଘୋଡ଼ାରୁ ଓହ୍ଲାଇବେ ବୋଲି ସେନାପତି ଅପେକ୍ଷା କଲେ, କିନ୍ତୁ ତାହା ହେଲାନାହିଁ । ସେମାନେ ଘୋଡ଼ା ଉପରେ ଆରାମରେ ବସି ପ୍ରତିପକ୍ଷ କଥା ଆରମ୍ଭ କରନ୍ତୁ ବୋଲି ଚୁପ ହୋଇ ରହିଲେ ।

ନଜକୁ କଥା ଆରମ୍ଭ କରିବାକୁ ପଡ଼ବ ଦେଖି, ସେନାପତି ନିଜର ବନ୍ଧୁକଧାରୀ ଜଣେ ଦଳପତିଙ୍କୁ ବଢ଼ାଇ ଦେଲେ ଏବଂ ତିବ୍ବତୀୟମାନଙ୍କ ଆଡ଼କୁ ଅଗ୍ରସର ହୋଇ ହାତଯୋଡ଼ି କହିଲେ, "ତିବ୍ବତୀୟ ଭାଇମାନେ ! ଆପଣମାନଙ୍କୁ ନମସ୍କାର । ଆମେ ଶାନ୍ତିସ୍ଥାପନ କରିବାକୁ ଆସିଛୁଁ, ଯୁଦ୍ଧ କରିବା ଉଦ୍ଦେଶ୍ୟରେ ନୁହେଁ । ଆମ ଦେଶ ଓ ଆପଣଙ୍କ ଦେଶର ଲୋକେ ପୂର୍ବକାଳରୁ ପ୍ରତିବେଶୀ ହୋଇ ରହିଛନ୍ତି । ଆମ ଦୁଇ ଦେଶର ଲୋକେ ଏକ ପରିବାର—"

ସେନାପତି ଖୁବ୍ ସରଳ ଭାଷାରେ ପ୍ରତି ଶବ୍ଦକୁ ପରିଷ୍କାର ଉଚ୍ଚାରଣ କରି ଧୀରେ ଧୀରେ କହୁଥାନ୍ତି – ତାଙ୍କର ସନ୍ଦେହ ଥାଏ ଯେ ତିବ୍ବତୀୟମାନେ ବୋଧହୁଏ ଚୀନାଭାଷା ଭଲ ବୁଝି ପାରୁ ନଥିବେ । ସେ ଲାମାଙ୍କ କଥା ଶୁଣି ବିସ୍ମିତ ହୋଇଗଲେ । ସେ ସାଧୁ, ପଣ୍ଡିତଆ ଚୀନାଭାଷାରେ ଉତ୍ତର ଦେଲେ –

"ଆପଣମାନେ ଆମର ଭାଇ ନୁହନ୍ତି । ଆପଣମାନେ ଆମ ଦେଶର ଆକ୍ରମଣକାରୀ । ଆପଣମାନେ ଆମ ସହର ସବୁ ଧ୍ୱଂସ କରିଛନ୍ତି, ଆମର ଔରସ ଭାଇମାନଙ୍କୁ ହତ୍ୟା କରୁଛନ୍ତି ।"

ଖାଲି ଏକଥାର ଭାବ ବୁଝି ନୁହେଁ, ଯେଉଁ ଭଙ୍ଗୀରେ ଏକଥା ଗୁଡ଼ିକ କୁହାଗଲା ତାହା ଶୁଣି ସେନାପତି ସ୍ତମ୍ଭୀଭୂତ ହୋଇଗଲେ । ସେ ଦେଖିଲେ, ଏ ଲୋକଟି ତାଙ୍କ ନିଜ ଚୀନାଭାଷାରେ ବି ତାଙ୍କଠାରୁ ଅଧିକ ଅଭିଜ୍ଞ । ସେ ଆଡ଼ ଆଖିରେ ସତବଙ୍କ ଆଡ଼କୁ ଚାହିଁଲେ । ତାଙ୍କର କୃଶ ଓ ରୋଷପୂର୍ଣ୍ଣ ମୁଖରେ ପ୍ରଚଣ୍ଡ କ୍ରୋଧର ଚିହ୍ନ ସେନାପତି ଲକ୍ଷ୍ୟ କଲେ । ସତବ ତିବ୍ବତୀୟ ଲାମାଙ୍କୁ ଉତ୍ତର ଦେବା ପାଇଁ ଆଗେଇ ଆସିଲେ ଓ ଡାହାଣ ହାତ ବଢାଇ ଦେଇ ତର୍ଜନୀର କାଣି ଅଙ୍ଗୁଠି ଲାମାଙ୍କ ଆଡ଼କୁ ଦେଖାଇ ଚିତ୍କାର କଲେ, "ତୁମ୍ଭେମାନେ ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀଙ୍କର ଦାସ ହୋଇଥିଲ । ଆମେ—ହ୍ୟାନ୍‌ବଂଶୀୟ ଲୋକେ, ତୁମର ଦାସତ୍ୱ ମୋଚନ କରିଛୁଁ, ଏକଥା ଅସ୍ୱୀକାର କଲେ ତୁମର ସର୍ବନାଶ ହେବ ।"

ସେନାପତି ନିଃଶ୍ୱାସ ରୋକି ଦାନ୍ତଚାପି କହିଲେ; "ଆରେ ମୂର୍ଖ !" କିନ୍ତୁ ସତବ ଏକଥା ଶୁଣିଲେ ନାହିଁ । ସେ ଯେତେ ଜୋରରେ ପାରନ୍ତି, ଚିତ୍କାର କରି ତିବ୍ବତୀୟମାନଙ୍କୁ ଗାଳି ଦେବାକୁ ଲାଗିଲେ –

"ତୁମ ପୂର୍ବପୁରୁଷମାନେ ଥିଲେ ଆମ ଦେଶର ପ୍ରଜା । ତୁମ ଜମିର ମାଲିକ ଆମେ । ଆମର ମହାନ୍ ନେତା ମାଓ ସେ-ତୁଙ୍ଗ୍ ଙ୍କ ଅନୁଗ୍ରହରେ ଆମେ ସେ ଜମି ଭୋଗ ଦଖଲ କରିବାକୁ ତୁମକୁ ଅନୁମତି ଦେବୁ । କିନ୍ତୁ ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀଙ୍କୁ ଏଠାରୁ ନ ତଡ଼ିବା ପର୍ଯ୍ୟନ୍ତ ସେ ଅନୁମତି ମିଳିବ ନାହିଁ । ଆମେ ଏହି ସାମ୍ରାଜ୍ୟବାଦୀଙ୍କ କବଳରୁ ତୁମକୁ ରକ୍ଷା କରିବାକୁ ବସିଥିବା ଯୋଗୁଁ, ତୁମେ ଆମ ପାଖେ କୃତଜ୍ଞ ହେବାର କଥା । ଆମକୁ ତୁମେ ସ୍ୱାଗତ କରିବା ଉଚିତ ।"

ରାଗରେ କୁହାଯାଇଥିବା ଏହି କଥାର ଜବାବ୍ ସେହିପରି ରାଗରେ ଦେବାକୁ ଲମା ପସନ୍ଦ କଲେ ନାହିଁ । ସେ ଧୈର୍ଯ୍ୟ ଧରି ଧୀର ଅଥଚ ଦୃଢ଼ ସ୍ୱରରେ ଜବାବ୍ ଦେଲେ, "ଏକଥା ସତ ଯେ ପଚାଶବର୍ଷ ପୂର୍ବେ ଦଳେ ପାଶ୍ଚାତ୍ୟ ଲୋକ ଆମ ଦେଶକୁ ଆକ୍ରମଣ କରିଥିଲେ । ସେମାନଙ୍କ ହାତରେ ଯେଉଁଭଳି ଅସ୍ତ୍ର ଥିଲା ସେଭଳି ଅସ୍ତ୍ର ଆମେ କେବେ ଦେଖି ନଥିଲୁ, ତେଣୁ ବାଧ୍ୟ ହୋଇ ଆମକୁ ହାର ମାନିବାକୁ ହୋଇଥିଲା । କିନ୍ତୁ ସେମାନେ ଆମ ରାଜ୍ୟରେ ରଜା ହେବାକୁ ଚାହିଁ ନଥିଲେ; ତାଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିଲା ବାଣିଜ୍ୟ କରିବା । ଏକଥା ସତ ଯେ, ସେମାନଙ୍କ ବାଣିଜ୍ୟ ଆମର ଲୋଡ଼ା ନଥିଲା ; କାରଣ, ସେମାନେ ଯେତେ ଦେଉଥିଲେ, ତା'ତୁଳନାରେ ଆମଠାରୁ ବହୁତ ଅଧିକ ନେଇ ଯାଉଥିଲେ । ଯାହାହେଉ, ସେମାନେ ଅବଶେଷରେ ମାନେ ମାନେ ଆମ ଦେଶ ଛାଡ଼ି ଚାଲିଗଲେ; ଆମେ ଯେମିତି ଥିଲୁଁ ପୁଣି ସେମିତି ରହିଲୁଁ । ପାଶ୍ଚାତ୍ୟ ଦେଶର ଲୋକେ ଆଉ ଫେରି ନାହାନ୍ତି । ମୁଁ ଆମ ଦେଶର ବହୁ ଅଞ୍ଚଳରେ ବୁଲିଛି, କୌଣସିଠାରେ ପାଶ୍ଚାତ୍ୟ ଦେଶର କାହାକୁ ଜଣକୁ ଦେଖିନାହିଁ । ଆମେ ସେମାନଙ୍କର କେବେଁ ଦାସ ହୋଇ ନଥିଲୁଁ ।"

ସଚିବ ଚିତ୍କାର କଲେ, "ତୁମେ ଖାଲି ଗୁଡ଼ାଏ ମିଛ ଗପୁଛ ।"

ତାଙ୍କ କଥାରେ କେହି ବାଧା ଦେଇ ନଥିଲା ପରି, ଲମା କହି ଚାଲିଲେ, "ଆଉ ତୁମେ ଓ ତୁମ ଦେଶର ଲୋକେ ଆମ ଦେଶରେ ପଶି ତୁମ ଚଳଣି ଆମ ଦେଶରେ ଜବରଦସ୍ତି ଚଳାଇବାକୁ ବସିଛ । ତୁମ ଲୋକେ ଲକ୍ଷେରୁ ଅଧିକ ସଂଖ୍ୟାରେ ଆମ ଦେଶରେ ପଶିଛ । ଆମ ଦେଶର ଶାସନ ତୁମେ ହାତକୁ ନେଇଛ । ତୁମେମାନେ ଆମର ସବୁଠାରୁ ଉର୍ବର ଜମିତକ

ଅଧିକାର କରିଛ । ଆମକୁ ତୁମେ ଦରିଦ୍ର କରିଛ, ଓ ମାରି ହାଣି ଆମର ସଂଖ୍ୟା କମ୍ କରିଛ । ତୁମେ ଆମ ପିଲାଙ୍କୁ ଜୋର କରି ନେଉଛ ଓ ତୁମ ଦେଶରେ ତୁମର ଅସତ୍ ଦର୍ଶନ ସେମାନଙ୍କୁ ପଢ଼ାଉଛ । ଫଳରେ ସେମାନେ ତୁମ ଦେଶର ଲୋକଙ୍କୁ ଓ ତୁମ ଦେଶରେ ନେତୃତ୍ୱ କରୁଥିବା ଲୋକଙ୍କୁ ଭଗବାନ ପରି ବନ୍ଦୁଛନ୍ତି । ତୁମ ସୈନ୍ୟ ଖାଇବେ ବୋଲି ତୁମେ ଆମର ଖାଦ୍ୟ ଲୁଟିନେଉଛ ଓ ଆମର ଭେଣ୍ଡାମାନେ କଏଦୀପରି ତୁମ ପାଇଁ ଖଟିଖଟି ମରୁଛନ୍ତି । ତୁମର ସବୁଠାରୁ ବଡ଼ ଅପରାଧ— ଆମେ ଯାହାକୁ ସବୁଠାରୁ ମହାମୂଲ୍ୟ ମନେ କରୁଁ ତା'କୁ ବି ତୁମେ ଧ୍ୱଂସ କରିବାକୁ ବସିଛ । ତାହା ଆମ ପିତୃପିତାମହଙ୍କ ଧର୍ମ । ତୁମେ ଆମ ଧର୍ମ ବିରୁଦ୍ଧରେ ଯିବାରୁ ଆମ ଧର୍ମଗୁରୁ, ଦଲେଇ ଲାମା, ବାଧ୍ୟ ହୋଇ ଦେଶାନ୍ତର ହୋଇଛନ୍ତି । ଏହା ଦାସତ୍ୱ ନୁହେ, ଆଉ କ'ଣ ? ଏହା କ'ଣ ଆମ ଜାତିର ମୃତ୍ୟୁ ନୁହେ ?"

ତିବ୍ବତୀୟ ଲାମାଙ୍କର ଶାନ୍ତ ସ୍ୱରରେ ସର୍ବୋତ୍କୃଷ୍ଟ ଚୀନାଭାଷାରେ କୁହାଯାଇଥିବା ଏହି କଥାଗୁଡ଼ିକ ମାଡ଼ି ଆସୁଥିବା ରାତିର ବିଶୁଦ୍ଧ ଶୀତ ପବନରେ ଖେଳିଗଲା । ସେନାପତି ନିଜର ଅନିଚ୍ଛା ସତ୍ତ୍ୱେ ଏକଥାଗୁଡ଼ିକ ନିବିଷ୍ଟ ମନରେ ଶୁଣୁଥାନ୍ତି ଓ ଗୁଣୁଥାନ୍ତି ।

ସଚିବ ରାଗରେ ତାଙ୍କ ଆଡ଼କୁ ଫେରି ଭର୍ତ୍ସନା କଲେ, "ଏକଥା ଶୁଣି ମଧ୍ୟ ତୁମେ ସ୍ଥିର ହୋଇ ଠିଆ ହୋଇଛ ? ତୁମେ କ'ଣ ଆମ ମତବାଦରୁ ବିଚ୍ୟୁତ ହେଲଣି ?"

ସେନାପତି ଚେଷ୍ଟା କରି ଜବାବ୍ ଦେବାକୁ ବାହାରିଲେ । ସେ ତିବ୍ବତୀୟ ଲାମାଙ୍କୁ କହିଲେ, "ଆମେ ଯାହା କରୁଛୁ, ତୁମର ହିତପାଇଁ କରୁଛୁ । ତୁମମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତ୍ ତୁମେ ଯେପରି ପୂର୍ଣ୍ଣ ରୂପେ ଉପଭୋଗ କରିପାରିବ, ତାହାର ପୂର୍ଣ୍ଣ ସୁଯୋଗ ଦେବାକୁ ଆମେ ତିଆରି ଅଛୁଁ ।"

ଲାମା ଉତ୍ତର ଦେଲେ, "ତୁମର ଆମକୁ ଦେବାକୁ କିଛି ନାହିଁ— ତୁମେ ଖାଲି ନେବାରେ ଲାଗିଛ । ତେଣୁ ତୁମଠାରେ ଆମର ଆସ୍ଥା ନାହିଁ । ସେ ଯାହାହେଉ, ଯେତେ ଚେଷ୍ଟା କଲେ ମଧ୍ୟ ତୁମେ ଆମକୁ ନାଶ କରି-ପାରିବ ନାହିଁ । ପ୍ରାଣଠାରୁ ଅଧିକ କିଛି ରକ୍ଷା କରିବାକୁ ଆମେ ଲଢ଼ୁଛୁ । ଆମେ ଲଢ଼ୁଛୁ ଆମର ନିଜ ସଂସ୍କୃତି ରକ୍ଷା କରିବାକୁ । ତୁମେ ଆମ ଦେଶର ସମସ୍ତଙ୍କୁ ମାରି ସାରିଲେ ବି ଜିଣିବ ନାହିଁ । ଶେଷ ବିଜୟ ଆମର ।"

ସଚିବ ଉଚ୍ଚସ୍ୱରରେ ଚିତ୍କାର କଲେ, "ଆହା-ହା, ଏଠେଇ ତ ତୁମେ ଭୁଲ କରୁଛ ! ଆମର ମହାନ୍ ନେତା ମାଓ ପରିଷ୍କାର କହିଛନ୍ତି ଯେ, ପ୍ରତ୍ୟେକ ଜାତି ଓ ସମ୍ପ୍ରଦାୟର ଲୋକେ ସେମାନଙ୍କ ନିଜ ନିଜ ଧର୍ମ ପାଳିବାକୁ ପୂର୍ଣ୍ଣ ଅଧିକାର ପାଇବେ । ତୁମେ କ'ଣ ତାଙ୍କ କଥାରେ ଅବିଶ୍ୱାସ କରୁଛ ?"

ଲାମା ଉତ୍ତର ଦେଲେ, "ଯଦି ତୁମ ମାଓ ତୁଣ୍ଡରେ ଯାହା କହୁଛନ୍ତି ପ୍ରକୃତରେ ତାଙ୍କର ସେଇଆ ଇଚ୍ଛା, ତେବେ ତୁମେ ସବୁ ଏଠାକୁ ଆସିଛ କାହିଁକି ?"

ସେନାପତି କହିଲେ, "ହଉ, ଥାଉ, ଥାଉ, ଏ ଅନର୍ଥକ ବାକ୍-ବିତଣ୍ଡା ବନ୍ଦ କରାଯାଉ । ମୁଁ ଏଠାକୁ କାହିଁକି ଆସିଛି ବୋଲି ପଚାରୁଛ ପରା ? ମୁଁ ଆସିଛି, ତୁମମାନଙ୍କ ଆଗ୍ନେୟାସ୍ତ୍ର ଖରିଦ କରିବାକୁ । ସେଇଥି-ପାଇଁ ମୁଁ ଏଠାକୁ ଆସିଛି । ମୋ ପାଖେ ଅସ୍ତ୍ରଶସ୍ତ୍ର ସଜ୍ଜିତ ହଜାରେ ସୈନ୍ୟ ଅଛନ୍ତି - ବୁଝି ରଖ ଯେ, ତୁମ ଅସ୍ତ୍ର ଶସ୍ତ୍ରରେ ମୋର କୌଣସି ପ୍ରୟୋଜନ ନାହିଁ । ଇଚ୍ଛା କଲେ ତୁମର ଅସ୍ତ୍ରଶସ୍ତ୍ର ମୁଁ ଜବରଦସ୍ତି ନେଇ ଯା'ନ୍ତି । କିନ୍ତୁ ସେପରି କରିବା ମୋର ଇଚ୍ଛା ନୁହେଁ । ସେ ସବୁ ତୁମଠାରୁ ଖରିଦ୍ କରି ନେବାକୁ ମୁଁ ରାଜି । ଏହା ତୁମ ପ୍ରତି ଅନୁଗ୍ରହ ମାତ୍ର ।"

ଲାମା ହଠାତ୍ ହସି ଉଠିଲେ । ଆନନ୍ଦରେ ଗଦ୍‌ଗଦ୍ ଏ ହାସ୍ୟ । ସତେ ଯେମିତି ଖୁବ୍ ଗୋଟାଏ କୌତୁକ କଥା ସେ ଶୁଣିଛନ୍ତି : ଆଚ୍ଛା, ଆମ ଅସ୍ତ୍ରଶସ୍ତ୍ର ତୁମକୁ ଆମେ କାହିଁକି ଭଲା ବିକିବୁ ? ତୁମ ଲୋକଙ୍କୁ ଆମ ଦେଶରୁ ଘଉଡ଼ିବା ନିମନ୍ତେ ସେ ସବୁ ଯେ ଆମର ଦରକାର !"

ସଚିବ ଗର୍ଜିକରି କହିଲେ, "ତୁମେ ସବୁ ଆଜି ରାତିରେ ମରିବ ।"

ଲାମା ଧୀର ଭାବରେ କହିଲେ, "ଆଜି ରାତିରେ ଆମର ସେ ଦଶା ହେବନାହିଁ । ତୁମର କେତେ ଜଣ ସୈନ୍ୟ ଅଛନ୍ତି ଆମକୁ ଜଣା— ହଜାରରୁ କମ୍ । ତୁମ ଲୋକ ସମସ୍ତେ ଶ୍ରାନ୍ତ ହୋଇଛନ୍ତି । ଆମ ସ୍ୱେ ପାତଳା ବାୟୁରେ ସେମାନେ ନିଃଶ୍ୱାସ ନେଇ ପାରୁ ନାହାନ୍ତି, କିନ୍ତୁ ଆମେ ପାରୁଛୁ, କାରଣ, ସ୍ୱେ ଆମ ନିଜର ପବନ ।"

ଲାମାଙ୍କ ସ୍ୱର ହଠାତ୍ ବଦଳିଗଲା । ଏଥର ସେ କ୍ଷୀଣ ଅଥଚ ହିଂସ୍ର ସ୍ୱରରେ କହିଲେ, "ଆମେ ରାତିରେ ଦେଖିପାରୁ । ଏ ପର୍ବତମାଳାର

ପ୍ରତି ଶିଳା ଖଣ୍ଡ ଆମର ଚିହ୍ନା; କାରଣ, ଏସ୍ବ ଆମର ନିଜ ପର୍ବତମାଳା । ତୁମେ ଯେଉଁଠାରେ ଲୁଚ ନା କାହିଁକି, ଗନ୍ଧ ବାରି ଆମେ ତୁମକୁ ଠାଉରେଇ ନେବୁ । ଆଜି ରାତିରେ ମରିବ ତୁମେମାନେ, ଆମେ ନୁହଁ ।"

ସେନାପତି ଅନୁଭବ କଲେ, ପୁଣି ତାଙ୍କ ଦେହରୁ ଝାଳ ବୋହି ଯାଉଛି । ସେ ଜାଣିଲେ, ତାଙ୍କୁ ଭୟ ଗ୍ରାସ କରୁଛି । ତାଙ୍କୁ ଏତେ ଭୟ ହେଉଥିବା ସ୍ଥଳେ, ଲମାଙ୍କୁ ଭୟ ନ ହେଉଛି କାହିଁକି ?

ଆଉ ସତିବ ? ସେ ଗୋଟାଏ ମିଛ ଉଗ୍ରତା ଦେଖାଇ ଗର୍ଜନ କଲେ, "ତୁମର ମୋଟେ ଶହେ ଲୋକ—ଆଉ ଆମର ଶହ, ଶହ ।"

ଲମା ଘୋଡ଼ା ଉପରୁ ଟିକିଏ ଲଇଁ ପଡ଼ି ଶୁଣାଇ ଦେଲେ, "ମୁଁ ବର୍ତ୍ତମାନ ଯାହା କହିଲି, ତାହାର ମର୍ମ ଯଦି ତୁମ ମୁଣ୍ଡରେ ପଶିଥାନ୍ତା—ତେବେ ତୁମ ପରି ମଣିଷ ବି ଦୁଏତ ବାଟ ପାଇଥାନ୍ତ ।"

ଏତିକି କହି ଲମା ତାଙ୍କ ଘୋଡ଼ା ପେଟରେ ଗୋଡ଼ ମାରି ଦେଇ ଦଉଡ଼ାଇ ଦେଲେ ; ଅଳ୍ପ କ୍ଷଣରେ ସେ ପର୍ବତ ଭିତରେ ଅନ୍ତର୍ହିତ ହୋଇଗଲେ—ତାଙ୍କ ଅନୁଚର ଦୁଇଜଣ ବି ତାଙ୍କ ପଛେ ପଛେ ଲୁଚି ଗଲେ । ସତିବ ସେନାପତିଙ୍କ ଆଡ଼କୁ ବୁଲିପଡ଼ି କହିଲେ, "ଆଉ ତୁମେ, ଏ ପରିସ୍ଥିତିରେ କାହିଁକି ନିକଟ ଠିଆ ହୋଇ ରହିଛ ?"

ସେନାପତି, ସତିବଙ୍କଦ୍ୱାରା ଏହିପରି ନିର୍ଯାତିତ ହୋଇ, ଖୋପରୁ ପିସ୍ତଲ୍ କାଢ଼ିଲେ ଲମାଙ୍କ ପଛରେ ଗୁଳି ଛୁଟାଇବାକୁ । କିନ୍ତୁ ସାଙ୍ଗେ ସାଙ୍ଗେ ତାଙ୍କ ହାତ ତଳକୁ ଓହଳି ପଡ଼ିଲା । ପର୍ବତର ପ୍ରତ୍ୟେକ ସନ୍ଧିରେ ଲୁଚି ରହିଥିବା ରାଇଫଲର ନଳି ସେତେବେଳକୁ ତାଙ୍କ ଉପରକୁ ଓ ତାଙ୍କ ସୈନ୍ୟମାନଙ୍କ ଉପରକୁ ମୁହଁ କରି ରହିଥାଏ । ସେନାପତି ସେ ଆଡ଼ୁ ମୁହଁ ଫେରାଇ ନିଜ ସୈନ୍ୟମାନଙ୍କ ପାଖକୁ ଗଲେ । ସୈନ୍ୟମାନେ ତାଙ୍କୁ ଅପେକ୍ଷା କରି ରହିଥାନ୍ତି । ନୀରବରେ ସେମାନେ ସେନାପତିଙ୍କୁ ସ୍ୱାଗତ କଲେ । ସେତିକିବେଳେ ସେନାପତି ବୁଝିଲେ, ଲମାଙ୍କ ମନରେ ଭୟ କାହିଁକି ହୋଇ ନଥିଲା । ସେ ମଧ୍ୟ ଥରେ ଏହିପରି ନିର୍ଭୀକ ଭାବେ ଶତ୍ରୁର ସମ୍ମୁଖୀନ ହୋଇ ଲଢ଼େଇ କରିଥିଲେ—ସେ ଓ ତାଙ୍କ ସୈନ୍ୟମାନେ । ସେତେବେଳେ ସେମାନେ ଥିଲେ ତାଙ୍କର ଜନମ ମାଟିରେ ; ବିଦେଶୀ ଶତ୍ରୁ ବିରୁଦ୍ଧରେ ଲଢ଼ୁଥିଲେ—ଜାପାନର ସେନାମାନଙ୍କ ବିରୁଦ୍ଧରେ—ନିଜର

ପ୍ରାଣ ଓ ଦେଶକୁ ରକ୍ଷା କରିବା ପାଇଁ । କିନ୍ତୁ ଆଜି—ସେ ନିଜେ ବିଦେଶୀ ଶତ୍ରୁ—ସେ ଓ ତାଙ୍କର ସୈନ୍ୟମାନେ……ହଠାତ୍ ଅନ୍ଧାରରେ ସେ ଶୁଣିଲେ ସେଇ ବିକଟ ଆର୍ତ୍ତନାଦ—ଯୁଦ୍ଧରେ ମରି ପଡ଼ୁଥିବା ସୈନ୍ୟମାନଙ୍କର କ୍ଷୀଣ ବିକଳ ଚିତ୍କାର—ଯୁଦ୍ଧରେ ବିଜୟର ଆଶା ହରାଇଥିବା ଲୋକଙ୍କର କରୁଣ ଆର୍ତ୍ତନାଦ—ଏମାନଙ୍କ ପକ୍ଷରେ ରାତି ଆସେ ମରଣର ଡାକ ଧରି—ପ୍ରଭାତ ଆଉ ସେମାନଙ୍କ ପାଇଁ ଆସେନାହିଁ ।

"ଆଲୋ, ମୋ ମା-ଲୋ—ବୋଉ ଲୋ—ମା କିଲୋ—"

ବୟଃପ୍ରାପ୍ତ ଲୋକଗୁଡ଼ା ପିଲାଙ୍କ ପରି ବୋବାଳି ଛାଡ଼ୁଛନ୍ତି କୋଉ କାଳରୁ ମରିଥିବା ମା'ମାନଙ୍କୁ ଝୁରି ଝୁରି । ଗୋଟିକ ପରେ ଗୋଟିଏ ହୋଇ ସବୁତକ ସୈନ୍ୟ ଏହି ଆର୍ତ୍ତନାଦ କରିବାକୁ ଲାଗିଲେ—ଶେଷରେ ନୀରବ ହୋଇ ରହିଲେ ମାତ୍ର ଦୁଇଜଣ, ସେ—ସେନାପତି-ଆଉ ସଚିବ ।

ଏଇ ସମୟରେ ସଚିବ ମୁଣ୍ଡ ଟେକିଲେ ଓ ଆଉ ଥରେ ଚିତ୍କାର କଲେ, "ଆମେ ଚୀନା ଜନତାର ମୁକ୍ତିଦାତା ସେନା—ହଜାରେ ଜଣ ବିଜୁଆ ସୈନ୍ୟ ! ମୋଟେ ଶହେଟା ଭିକାରୀପ୍ରାୟ ଦସ୍ୟୁ ଆମକୁ କାବୁ କରିବେ କିମିତି ?"

ସେନାପତି ସଚିବଙ୍କ ବେକ ଧରି ଟେକି ଝାଡ଼ି ଦେଲେ—

"ଚୁପ୍ ରହ ବେଶରମ୍ ଗାଣ୍ଡୁ ।" ସେ ଦାନ୍ତ ଚିପି କହିଲେ । ତାପରେ ସେ ଚାହିଁଲେ, ତାଙ୍କ ହାତ ଦୁଇଟା ଭିତରେ ଚିପି ହୋଇଥିବା ସଚିବଙ୍କ ମୁହଁକୁ ।

"ମୂର୍ଖ, ବୋକା ! ଯଦି ପାଟି ବନ୍ଦ କରି ରହିଥାନ୍ତୁ, ତେବେ ହୁଏତ ମୁଁ ଆମ ସମସ୍ତଙ୍କୁ ରକ୍ଷା କରିପାରିଥାନ୍ତି । ତୋ' ପାଟି ଓ ତୋ ଭଣ୍ଡ ମତବାଦ ଯୋଗୁଁ ସମସ୍ତଙ୍କର ସର୍ବନାଶ ହେଲା ।"

ସେନାପତି ଆଉ ନିଜକୁ ସମ୍ଭାଳି ପାରିଲେ ନାହିଁ । ପିଲାଦିନର ରୁଦ୍ଧ ଆକ୍ରୋଶ ତାଙ୍କ ମନରେ ଫୁଟି ବାହାରିଲା ; ପରିଣତ ବୟସର ସମସ୍ତ ଅଭିମାନ ବିଚାରବୁଦ୍ଧିକୁ ପ୍ରତ୍ୟାଖ୍ୟାନ କଲା । ତାଙ୍କର ହାତରେ ସଚିବଙ୍କ କ୍ଷୀଣ ଚର୍ମମାଂସସାର ବେକ ଚିପି ହୋଇଗଲା—ସଚିବଙ୍କ ଆଖି ଦୁଇଟି ଫୁଲା ହୋଇ ବାହାରକୁ ବାହାରି ପଡ଼ିଲା । ସଚିବ ଉଦ୍ଧାର ପାଇବାକୁ ବାଡ଼େଇ କଚାଡ଼ି ହେଲେ—କିନ୍ତୁ ତାଙ୍କର ବଳ ବା କେତେ ? ମୁହୂର୍ତ୍ତକ

ଭିତରେ ସେ ନିଶ୍ଚେଷ୍ଟ ହୋଇ ପଡ଼ିଲେ । ତା'ପରେ ଯାଇ ସେନାପତି ମୁଠା କୋହଳ କଲେ ଓ ପ୍ରାଣ ଶୂନ୍ୟ ନଥିବା ମଣିଷଟାକୁ ଟେକି ପର୍ବତ ଉପରୁ ତଳକୁ ଫୋପାଡ଼ି ଦେଲେ । ତା'ପରେ ସେ ଶୁଣିଲେ ତାଙ୍କ ଚାରିପଟେ ଘେରି ରହିଥିବା ପର୍ବତ ପୁଞ୍ଜକୁ । ତାଙ୍କ ସୈନ୍ୟମାନଙ୍କର ଆର୍ତ୍ତନାଦ ଆଉ ଶୁଣା ଯାଉନଥାଏ । ସେମାନେ ତାଙ୍କଠାରୁ ଦୂରକୁ ଦୂରକୁ ଚାଲିଯାଉଥାନ୍ତି, ସେମାନେ ଗୋଟି ଗୋଟି ହୋଇ ଖେଳେଇ ହୋଇ ଯାଉଥାନ୍ତି ; ପ୍ରତ୍ୟେକେ ନିଭୃତ କନ୍ଦରମାନଙ୍କରେ ଲୁଚି ରହିବାକୁ ଚେଷ୍ଟା କରୁଥାନ୍ତି । ସେମାନେ ସମସ୍ତେ ତାଙ୍କ ସେନାପତିଙ୍କୁ ଏକୁଟିଆ ଛାଡ଼ି ପଳାଇ ଯାଉଥାନ୍ତି – ଶେଷ ମୁହୂର୍ତ୍ତରେ ପ୍ରତ୍ୟେକେ ଚେଷ୍ଟା କରୁଥାନ୍ତି, ନିଜ ନିଜ ପ୍ରାଣ ବଞ୍ଚାଇବାକୁ । ସେ ସେମାନଙ୍କୁ ଡାକିବାକୁ ଚେଷ୍ଟା କଲେ—କିନ୍ତୁ ସ୍ୱର ପଡ଼ିଗଲା । ତାଙ୍କର ମନେ ପଡ଼ିଲା ସେଇ ସାହସିକ ଉକ୍ତି ସବୁ, ଯାହା ରାଜନୀତିକ ନେତାମାନେ ତାଙ୍କୁ ଶିଖାଇଥିଲେ ।

"ଲାଲ ପତାକା ଉଡ଼ାଇ ଦିଅ – ପ୍ରତ୍ୟେକ ମନରୁ ଖିନ୍ନତା ଦୂର କର—"

"ଉତ୍ପାଦନ ସମାଜବାଦର ହୃତ୍‌ପିଣ୍ଡ – ଉଦ୍ୟମ ତାହାର ପ୍ରାଣବାୟୁ—"

"ବିଶ୍ୱାସରେ ଦୃଢ଼ ରହ—ଆଶଙ୍କାମାନ ହୃଅ ନାହିଁ—"

"ଲୋକଙ୍କର ସେବା କର—ତେବେ ଯାଇ ଲୋକେ ତୁମକୁ ଖାତିର କରିବେ—"

ଏହି ସୁନ୍ଦର ଉକ୍ତିମାନଙ୍କରୁ କୌଣସିଟି ଏତେବେଳେ ଆଉ କାମରେ ଆସିଲା ପରି ବୋଧ ହେଲା ନାହିଁ । ରୁପେଲି ଚନ୍ଦ୍ର ପର୍ବତମାଳାର ପଛ ଆଡ଼କୁ ବୁଡ଼ି ଯାଉଥାଏ—ଅଳ୍ପ ସମୟ ଭିତରେ ଚାରିଆଡ଼କୁ ଅନ୍ଧକାର ଘୋଟିଯିବ ।

ସେ ଚିତ୍କାର କଲେ, "ଆଲୋ— ବୋଉ ଲୋ !" କ୍ରମେ ତାଙ୍କ ଚିତ୍କାର ବଢ଼ି ଆର୍ତ୍ତ ନାଦରେ ପରିଣତ ହୋଇଗଲା—"ମା ଲୋ ! ଏ ମା !"

ଏଥର ସେ ଶୁଣିଲେ ତାଙ୍କ ସୈନ୍ୟଙ୍କ ତୁଣ୍ଡରେ ତାଙ୍କ ସ୍ୱରର ପ୍ରତିଧ୍ୱନି । ସୈନ୍ୟମାନେ, ଯେ ଯେଉଁଠାରେ ଲୁଚିଥିଲେ, ସେଠାରୁ ତାଙ୍କ ଡାକାପରି ପ୍ରତିଧ୍ୱନି ସ୍ୱରୂପ ଆର୍ତ୍ତନାଦ କଲେ, "ମା ଲୋ ! ଏ ମା !"

ସେନାପତି ତାଙ୍କ ସୈନ୍ୟମାନଙ୍କ ପାଖକୁ ଧାଇଁଲେ, ସେମାନଙ୍କ ସହିତ ଏକ ହୋଇ ରହିବାକୁ । ସେ ଓ ସୈନ୍ୟମାନେ—ସମସ୍ତଙ୍କର ସର୍ବନାଶ ଉପସ୍ଥିତ । ଅପରିଚିତ ଶତ୍ରୁ-ରାଜ୍ୟର ହେମକାଳ ପର୍ବତପୁଞ୍ଜ ଭିତରେ—ସ୍ୱଦେଶରୁ ବହୁ ଦୂରରେ ସେ ସମସ୍ତଙ୍କର ଦଫା ରଫା ହୋଇଯିବ—କିନ୍ତୁ ଏତେବେଳେ ଆଉ ସେନାପତି ତାଙ୍କ ସୈନ୍ୟଙ୍କଠାରୁ ବିଚ୍ଛିନ୍ନ ନୁହନ୍ତି ।

— — —

# ସେ କାଳ କଥା ଆଉ ନାହିଁ

ମିଷ୍ଟର୍ ଓ ମିସେସ୍ କମ୍ବି ଟିକଏ ଚହଁା ଚହିଁ ହେଲେ । ଦୁହେଁ ଦୁହିଁଙ୍କ ଆଖିରେ ଆବିଷ୍କାର କଲେ ସେଇ ଏକ ପ୍ରଶ୍ନ—ଏହାର ଉତ୍ତର ଦେବାକୁ ପଡ଼ିବ ବୋଲି ପ୍ରତ୍ୟେକେ ଆଖି ଆଡ଼େଇ ନେଲେ । ଏ ଦିନ ଦିନର ଧୋଇା ପରେ, ଘର ପୁଣି ଟିକଏ ଥପ୍ପ ପଡ଼ିଥାଏ । କମ୍ବି ଦମ୍ପତି ବର୍ତ୍ତମାନ ଘରେ ଏକୁଟିଆ । ଶୀତ ଦିନର ଲମ୍ବା ଗୋଧୂଳି ସମୟରେ, ଗଳି ମୁଣ୍ଡ ବଡ଼ ରାସ୍ତାରେ ତାଙ୍କ ତିନ ପିଲେ ନିଜ ନିଜର ମଟର ଗାଡ଼ି ଡିଙ୍ଗୋଠା ଏତେବେଳକୁ କ୍ଷିପ୍ର ଗତିରେ ଚଳାଇ ଥିବେ—ତାଙ୍କ ପ୍ରକୃତି ଯାହା ସେଥିରେ ସେ ସବୁ ସଂଯତ ମଟର ଚଳାଉଥିବେ ବୋଲି ମନେ ହେଉ ନାହିଁ । ତିନିପିଲେ ତାଙ୍କର—ବଡ଼ଝିଅ ଜୋଆନା ତା ସ୍ୱାମୀ ଟିମଥି ସାଙ୍ଗେ; ପୁଅ ହବାର୍ଟ ଓ ତା ସ୍ତ୍ରୀ ଆନ୍, ଓ ଏଯାଏଁ ବାହା ହୋଇ ନଥିବା ସାନ ପୁଅ ଫିଲିପ୍ ।

ମିସେସ୍ କମ୍ବି କହିଲେ, "ମୁଁ ଆଗ ଟିକଏ ଘର ସଜଡ଼ାସଜଡ଼ି କରିଦିଏ କି, ସିଟିଂରୁମରେ ବସିବା ।"

ମିଷ୍ଟର କମ୍ବି କହିଲେ, "ଚାଲ, ମୁଁ ତୁମ ସଙ୍ଗେ ମିଶିବି ।"

ଦୁହେଁ ଯାକ ଦିନରେ ବସନ୍ତ କରିବା କୋଠରୀକୁ ଗଲେ, ଓ ଆଉ କିଛି କଥାବାର୍ତ୍ତା ନକରି ଘର ସଜାଡ଼ିବାରେ ଲାଗିଲେ । ଚାରିଆଡ଼େ ସିଗ୍ରେଟ୍ ପାଉଁଶ ଓ ସିଗ୍ରେଟ୍ ଠୁଣ୍ଟି—ମିଷ୍ଟର୍ ଓ ମିସେସ୍ କମ୍ବି ସିଗ୍ରେଟ୍ ଖାଆନ୍ତି ନାହିଁ; ମିଷ୍ଟର କମ୍ବି ପାଇପ୍‌ରେ ଧୂଆଁ ଖାଆନ୍ତି ଯେ, ଚୁଲ୍ଲୀରେ ପାଉଁଶ ଝାଡ଼ି ଦେଉଥିବାରୁ ଘରେ ପାଉଁଶ ଦାନିର ଅଭାବ । ସେଇଥିପାଇଁ ଜୋଆନା ଘର ଯାକ ପିଆଲା ଥୋଇ ଦେଇଛି, ସିଗ୍ରେଟ୍ ପାଉଁଶ ପକାଇବାକୁ ! ତିରିଶ ବର୍ଷ ପୂର୍ବେ ମିସେସ୍ କମ୍ବି ଓ ମିଷ୍ଟର୍ କମ୍ବିଙ୍କ ବାହାଘରକୁ; ମିସେସ୍ କମ୍ବିଙ୍କ ବାପମା' ଦେଇଥିଲେ ଧଳା ଚିନାବାସନ କପ୍ ପିଆଲା—

ତା’ର ମଝିରେ ସୁନେଲି ଗାର । ମିସେସ୍ କମ୍ପି ଦେଖିଲେ ସେଗୁଡ଼ିକରେ କଳା ଦାଗ ହୋଇଯାଇଛି । ଏହି ଚିନାବାସନର ସୁନେଲି ଦାଗଗୁଡ଼ିକ ଟିକିଏ ବି ଲିଭେ ନାହିଁ । ନ ହେବାର କଥା—ସେମାନେ ତ ସବୁଦିନ ଏପରି ଜିନିଷ ବ୍ୟବହାର କରନ୍ତି ନାହିଁ ।

ମିସେସ୍ କମ୍ପି ଭାବୁଥାନ୍ତି, “ଆନିକୁ ଦୋଷ ଦେବାର ନୁହେଁ ; ସେ ତ ପିଲାଦିନୁ ଏ ଘରେ ବଢ଼ିନାହିଁ । କିନ୍ତୁ କୋଆନା—ସେ ତ ଜାଣେ, ମୋର ଏତେ ସୁନ୍ଦର ଚିନାବାସନରେ ଟିକିଏ ଦାଗ ଲଗିଲେ ମୋତେ କିମିତି ବାଧିବ ।”

କିନ୍ତୁ ସେ ତୁଣ୍ଡ ଫିଟାଇ କିଛି କହିଲେ ନାହିଁ । କଥା ଫିଟିଲେ, ତାଙ୍କ ସ୍ୱାମୀ ରବର୍ଟଙ୍କ ମନ ବି ଖରାପ ହୋଇପାରେ । ପିଲେ ତାଙ୍କ ଜିନିଷକୁ ମଧ୍ୟ ଯାଦୁଛି କି ଭାବେ ଘଷା ଘଷି କରିଛନ୍ତି । ଫିଲିପ୍ ତ ଖଣ୍ଡିଏ ବି ନେକ୍‌ଟାଇ ନଆଣି ଆସିଥିଲା । ଏବେ ଗଲା ବେଳେ ସେ ତ ରବର୍ଟଙ୍କ ନେଳି ରେଶମ୍ ନେକଟାଇଟି ପିନ୍ଧି ଯାଉଛି । ରବର୍ଟ୍‌କୁ ସେ ଏ ଟାଇଟି ଖ୍ରୀଷ୍ଟମାସ୍ ବେଳେ ଦେଇଥିଲେ । ତା’ ପୂର୍ବରୁ ବି ସେ ସ୍ୱାମୀଙ୍କୁ ଗୁଡ଼ିଏ ସୁନ୍ଦର ଟାଇ ଦେଇଥିଲେ, କିନ୍ତୁ ରବର୍ଟ୍ କହନ୍ତି, ଆଗରୁ ଯେତେ ଟାଇ ସେ ବ୍ୟବହାର କରିଥିଲେ ସେ ସମସ୍ତଙ୍କଠାରୁ ଏଇ ନେଳି ରେଶମ ଟାଇରେ ତାଙ୍କର ବେଶୀ ଶ୍ରଦ୍ଧା । ମିସେସ୍ କମ୍ପି ସବୁବେଳେ ସ୍ୱାମୀଙ୍କ ପାଇଁ ଟାଇ ବାଛିକରି ଆଣନ୍ତି । ସେ ମସ୍ତବଡ଼ ଡେଙ୍ଗା ମଣିଷ, ଏବେ ଟିକିଏ ମୋଟା ବି ହୋଇଗଲେଣି ; ତେଣୁ କପରି ଟାଇ ପିନ୍ଧିବେ ସେ ବିଷୟରେ ସେ ଯତ୍ନଶୀଳ ହେବାର କଥା । ଫିଲିପର ନିଜ ଟାଇ କିଣିବାକୁ ପଇସା ନାହିଁ —ସ୍ୱା ତ ନୁହେଁ । ସେ ନ୍ୟୁୟର୍କ୍ ସହରରେ ଗୋଟିଏ ରେଡ଼ିଓ କଂପାନୀରେ ଭଲ ଚାକିରିଟିଏ ପାଇଛି । ହବାର୍ଟ୍ ଓ ଟିମଥି ମଧ୍ୟ ସେଇ ସହରରେ ଚାକିରି କରୁଛନ୍ତି । ସହରରେ ରହୁଥିବାରୁ ମଫସଲକୁ ସେମାନେ ଖାଲି ଶ୍ରଦ୍ଧା କରୁଛନ୍ତି । କିନ୍ତୁ ଏଠାରେ ଥିଲାବେଳେ ସେମାନେ ମନେ କରୁଥାନ୍ତି, ସହରରେ ଯେତେ ଅନାୟାସରେ ସବୁ ଜିନିଷପତ୍ର ମିଳେ, ଏଠାରେ ବି ସେଇପରି ମିଳନ୍ତା ।

ମିଷ୍ଟର୍ କମ୍ପି ପାଟି କରି ଉଠିଲେ, “ମୋ ଚାଉଳରେ ଦେଇଛି ଗୋଟାଏ କଣା ସଦ୍ୟ ପୋଡ଼ିଯାଇ ହୋଇଚ ।”

ମିସେସ୍ କମ୍ଭି ସାଙ୍ଗେ ସାଙ୍ଗେ ଦେଖିବାକୁ ଗଲେ, ଚଉକି ପାଖକୁ । ସତରେ ଗୋଲ ହୋଇ କେତେ କଣାଟେ ! ଚଉକିର ଓପର ଚମଡ଼ା ଭେଦ ଭିତରର ଲୁମାଗଦି ପର୍ଯ୍ୟନ୍ତ ଯାଇଚି ।

ମିସେସ୍ କମ୍ଭି ମନ୍ତବ୍ୟ ଦେଲେ, "ହଁ, ତ "।

ବାପାଙ୍କ ଚଉକିରେ ବସିବା ଉଚିତ ନୁହେଁ ବୋଲି ପୁଅ ବି ହେ ତ ଜାଣନ୍ତି । ତିମଧ୍ୟ ମଧ୍ୟ ଆଜ ସତକି ଜାଣିବାର କଥା—ସେ ତ କେତେ ଥର ଏ ଘରକୁ ଆସିଲେଣି । ଜୋଆଁନା ଏକଥା ତାଙ୍କୁ କହିବା ଉଚିତ ଥିଲା—ସେ ନିଷ୍ଟୟ କହିନାହିଁ । "ମୁଁ ତ ଶଶୁରଙ୍କ ପୁରୁଣା ନାଲି ମରସ୍ ଚଉକିରେ ରବର୍ଟ୍ଙ୍କ ବସିବାକୁ ଦିଅନ୍ତି ନାହିଁ"—ମିସେସ୍ କମ୍ଭି ମନେ ମନେ ବିଚାରିଲେ ।

ପ୍ରକାଶ୍ୟରେ ସେ କହିଲେ "ଓପର ଖୋଳର କାନରୁ ଟିକିଏ ଚମଡ଼ା କାଟି ଯାଁ ଉପରେ ଗୋଟିଏ ତାଳି ପକାଇ ଦେବି—ତେବେ ଠିକ୍ ହୋଇ ଯିବ ବୋଲି ମୋର ବିଶ୍ୱାସ ।"

ମିଷ୍ଟର୍ କମ୍ଭି ଉତ୍ତର ଦେଲେ, "ଏ ଘରଟା ଯେ ସମୁଦାୟ ପୋଡ଼ି ଯାଇନାହିଁ ତାହାହିଁ ଆଶ୍ଚର୍ଯ୍ୟ କଥା ।"

ମିଷ୍ଟର୍ କମ୍ଭିଙ୍କ ପାଇପରୁ ପାଉଁଶ ପଡ଼ି ଚଉକିଟିର ମାଟିଆ ଚମଡ଼ା ଖୋଳରେ ବହୁତ ଛୋଟ ଛୋଟ ପୋଡ଼ା ଚିହ୍ନ ହୋଇଥାଏ; କିନ୍ତୁ ଚମଡ଼ାରେ ଏଭଳି ପୂରା କଣା ଆଜ କେବେ ହୋଇନଥିଲା ।

ଦୁହେଁ ଯାକ ସଯତ୍ନେ ଗୋଟିଏ ପାଖ କୋଠରିଟିର ସବୁ ଜିନିଷ ଭଲ କରି ଦେଖିନେଲେ ; ପୂର୍ବରେ ଯେଉଁ ଜିନିଷ ଯେଉଁଠି ଯେପରି ରହିଥିଲା, ସବୁ ସେଇପରି ସଜଡ଼ା ସଜଡ଼ି କରି ରଖିଲେ—ଚଉକି ସବୁ ସେମାନଙ୍କ ପୂର୍ବ ସ୍ଥାନକୁ ଫେରିଲେ ଓ ବହି ସବୁ ବହିଥାକମାନଙ୍କୁ ।

ଅବଶେଷରେ ମିସେସ୍ କମ୍ଭି କହିଲେ, "ଏଇ ! ଏଥର ସବୁ ଠିକ୍ଠାକ୍ ହୋଇଗଲା । ଏଥର ମୁଁ ଯାଇ ଟିକିଏ କ'ଣ ଖାଇବାକୁ କରେଁ ।"

ମିଷ୍ଟର୍ କମ୍ଭି କହିଲେ, "ଚାଲ, ମୁଁ ବି ସାହାଯ୍ୟ କରିବି ।"

ଦୁହେଁ ଯାକ ରୋଷେଇ ଘରେ ଯାଇ ସଇଥିଲଆରେ ଏଣୁତେଣୁ କାମ କରୁଥାନ୍ତି, ବେଶୀ କିଛି କଥାବାର୍ତ୍ତା ନହୋଇ ।

ମିଷ୍ଟର୍ କମ୍ଭି କହିଲେ, "ଖିରସା କରିଛ ?" ତାଙ୍କୁ ଖିରସା ସୁଖ ଲାଗେ ।

ମିସେସ୍ କମ୍ପି କହିଲେ, "ନ କରିଥିଲେ କ'ଣ ହେଲା, ସାଙ୍ଗେ ସାଙ୍ଗେ କରି ଦେବି । ଘରେ ଫାଳେ ବନ୍ଧାକୋବି ଅଛି ।"

ମିସେସ୍ କମ୍ପି ତାଙ୍କ ଚଟ୍‌ପଟ ଢଙ୍ଗରେ ସିଝା ପରିବାକୁ ଘାଣ୍ଟି ଦେଇ ସେଥିରେ ମସଲା ମସଲା ନଦେଇ ଖାଲି ଦୁଧ ସର ଟିକିଏ ଅଜାଡିଦେଲେ । ଆନି କାଲି ସରକୁ ମଧ୍ୟ ଗୋଟାଏ ପ୍ରକାର ଖିରି କରି-ଥିଲା ଯେ, ତାକୁ ଚାଖି ଦେଇ ରବର୍ଟ ଭ୍ରୂ କୁଞ୍ଚିତ କରିଦେଲେ । କହି ପକା-ଇଲେ, "ଯାହାକୁ ଖିରି ବୋଲି କହନ୍ତି, ଯଦି ମୁଁ ଜାଣିଥାନ୍ତି ଯେ ଖିରିରେ ବନ୍ଧାକୋବି ପଡ଼େ ନାହିଁ ।"

ମିସେସ୍ ସାଙ୍ଗେ ସାଙ୍ଗେ କହି ଦେଲେ, "ବେଶ୍, ସୁଆଦ ତ ଲାଗୁଛି ।" ଆନିଙ୍କର ପାଚିଲା ମୁହଁ ଓ କଳା ଓ ଚଞ୍ଚଳ ଆଖି ଦେଖି ଯେ କେହି ସାଙ୍ଗେ ସାଙ୍ଗେ ଠଉରେଇ ନେବ ଯେ ସେ ଟିକିଏ ଅଭିମାନ କରୁ ଥିବେ । ମିଷ୍ଟର୍ କମ୍ପିଙ୍କ ମନ୍ତବ୍ୟ ଶୁଣି ଆନି କହିଲେ, "ନୂଆ ପ୍ରକାରେ ରାନ୍ଧିବାର ପ୍ରଣାଳୀ ଶିଖିବାକୁ ମୋର ଭାରି ଇଚ୍ଛା ।"

ମିଷ୍ଟର୍ କମ୍ପି ଆନିଙ୍କୁ ବାଧିବ ବୋଲି ଆଶଂକା ନକରି ନିଜର ମତରେ ଜିଦ୍ କଲା ପରି ପୁଣି କହିଲେ, "ମାଗି, ତୁମର ତିଆରି ଖିରସା ମୋତେ ଭାରି ସୁଖ ଲାଗେ ।" ଏହା ଶୁଣି ପରେ ମିସେସ୍ କମ୍ପି (ମାଗି) ସ୍ୱାମୀଙ୍କୁ ଓପର ମହଲାରେ ଏକାନ୍ତରେ ଯାଇ କହିଲେ, "ମୋ ତିଆଣ ମୋ କାମକୁ ପସନ୍ଦ କରି ପିଲାଙ୍କ ଆଗେ ଆଉ କେବେ କହିବ ନାହିଁ, ରବର୍ଟ !"

ମିଷ୍ଟର୍ କମ୍ପି ଜାଣିବାକୁ ଚାହିଁଲେ, "କାହିଁକି କହିବି ନାଇଁ ନା ?

ମିସେସ୍ କମ୍ପି ଉତ୍ତର ଦେଲେ, "ବୋହୂ ବୋଲି ଯେଉଁ ପଦାର୍ଥ, ଟିକିଏ କହି ନ ଜାଣିଲେ, ଚଳେଇ ନଜାଣିଲେ ମନୁଆ ହୋଇଯିବ । ପୁଣି, ତାଙ୍କ ଘରେ ତାଙ୍କୁ ତାଙ୍କ ମା' ଯେମିତି ବଢେଇଛି ସେ ସେମିତି କରି ବାକୁ ଚାହିଁବା ସ୍ୱାଭାବିକ ।"

ଆନି ଭାରି ବିଚକ୍ଷଣ ଓ ଫିଟ୍‌ଫାଟ ଯୁବତୀ ; ମିସେସ୍ କମ୍ପି ଏ ଆଧୁନିକତାର ପାଖ ପଶି ନାହାନ୍ତି—ତଥାପି ଯୁବତୀ ଭିତରେ ସେ ଆନିର ମନକୁ ଚିହ୍ନି ପାରିଛନ୍ତି । ତା'ର କାରଣ, ତାଙ୍କର ନିଜ ବୈବା-ହିକ ଜୀବନର ଆରମ୍ଭରେ ତାଙ୍କର ନିଜ ମନରେ ବି ଏଇପରି ଆଘାତ ଲାଗିଥିଲା । ତାଙ୍କର ବେଶ୍ ମନେଅଛି, ସେ ଯେତେବେଳେ ବହୁ ବୋହୂ

ହୋଇ ପ୍ରଥମେ ରବର୍ଟଙ୍କ ଘରକୁ ଆସିଥିଲେ, ସେତେବେଳେ ରବର୍ଟଙ୍କ ମା' ତାଙ୍କୁ ଶିଖାଇଥିଲେ କେଉଁଠୁ ପିଠା କରିବାକୁ ଓ ଆଉ ବ' ପ୍ରକାର ଜିଅଣ ଓ ପିଠା କରିବାକୁ—ତାଙ୍କଘରେ ସେ ନିଜେ ଯେମିତି କରନ୍ତି ସେଇମିତି । ମାଗି କୌଣସି ପ୍ରତିବାଦ ନକରି ଶାଶୁଙ୍କ କଥା ଶୁଣିଥିଲେ । କିନ୍ତୁ ଯେତେ-ବେଳେ ରବର୍ଟଙ୍କ ସଙ୍ଗେ ସେ ସ୍ୱତନ୍ତ୍ରଭାବେ ଘର କରିବାକୁ ଗଲେ ସେ ଶାଶୁଙ୍କ ଶିକ୍ଷାକୁ ନମାନି ତାଙ୍କ ନିଜ ମା ଯେମିତି ଶିଖାଇଥିଲେ ସେମିତି ରନ୍ଧାବଢ଼ା କଲେ—ରବର୍ଟ ବି ତାଙ୍କ ନିଜ ବୋଉ ରାନ୍ଧଣାଠୁ ଅଲଗା ହେଲା ବୋଲି କେବେ ଖୁଣି ନାହାନ୍ତି । —

ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ କରୁକରୁ ମିସେସ୍ କମ୍ବି ଏଇପରି ବସ୍ତୁରୁଛନ୍ତି, ମିଷ୍ଟର କମ୍ବି କହିଲେ, "ଚାଲ ଏଇ ରୋଷେଇ ଘରେ ଖାଇବା । ଖାଇବା ଘରେ ବସି ବସି ମତେ ଶୀତ ଲାଗିଲାଣି ।"

ମିସେସ୍ କମ୍ବି କହିଲେ, "ହଉ ।"

ପିଲେ ଘରକୁ ଆସିଲେ ସେମାନେ ରୋଷେଇଘରେ ଖା'ନ୍ତି ନାହିଁ । ପିଲାଙ୍କ ଯିବା ପରେ, ଏବେ ସ୍ୱାମୀ ସ୍ତ୍ରୀ ଦୁହେଁ ଘରେ ଏକୁଟିଆ ରହିବାରୁ ରୋଷେଇ ଘରେ ଖାଇବାକୁ ଦୁହିଙ୍କପାଇଁକୁ କମିତି ଗୋଟାଏ ଆରାମ ଲାଗୁଥାଏ । ବିଶେଷ କରି ମେଳା ଝରକା ତଳକୁ ଖାଇବା ଟେବୁଲଟି ଥିବାରୁ ଓ ଷ୍ଟୋଭ ଟେବୁଲଟି ଚୁଲ୍ଲୀମୁଣ୍ଡକୁ ଲାଗିଥିବାରୁ ଭାରି ସୁବିଧା ବି ହେଉଥାଏ । ଖାଇବାଘର ଟେବୁଲଟା ଅତି ବଡ଼--ଅବଶ୍ୟ ଖୁବ୍ ସୁନ୍ଦର, ତଳକ ଟେବୁଲ ସବୁଗୁଡ଼ିକ ଓ୍ୱାଲ୍‌ନଟ୍ କାଠରେ ତିଆରି ।

ବନ୍ଧାକୋବି ଖିରସା, ଗୋରୁ ମାଉଁସର ତରକାରୀ, ଗରମ ବିସ୍କୁଟ୍ ଓ ଆପଲ୍ ଫଳର ସିଝଣି—ତା'ସାଙ୍ଗକୁ ମିସେସ୍ କମ୍ବି ଖୋଲିଲେ ମସଲାଦିଆ ପିଚ୍ ଫଳର ଡବାଟିଏ ।

ରବର୍ଟ କହିଲେ, "ଟିକିଏ କଫି ହେଲେ କମିତି ହୁଅନ୍ତା !"

ମିସେସ୍ କମ୍ବି ଉତ୍ତର ଦେଲେ, "ଖାଇଲେ କିନ୍ତୁ ରାତିଯାକ ତୁମର ନିଦ ହେବ ନାହିଁ ।"

ରବର୍ଟ କହିଲେ, "ପରୁଆ ନାହିଁ ! ଆଜି ତ ଯେମିତି ହେଲେ, ଟିକିଏ ରାତି ଅନିଦ୍ରା ହୋଇ ତୁମପାଖେ ବସିବାକୁ ମନ ହେଉଛି । ତୁମକୁ ତ ଅନେକ କାଳ ହେଲା ନ ଦେଖିଲା ପରି ଲାଗୁଛି ।"

ମିସେସ୍ କର୍ମି କହିଲେ, "ହଉ, ଥାଉ, ଥାଉ ।" ହସ ମାଡ଼ିଲା ; ହସି ହସି ସେ କଫି ପାତକୁ ହାତ ବଢ଼ାଇଲେ ।

କଫି ଖାଇଲେ ସବୁ ଦିନ ଯେପରି ନିଦ ନମାଡ଼େ, ଆଜି ବି ଖାଇ-ସାରି ମିଷ୍ଟର୍ କର୍ମି ସେଇପରି ବହୁତ ବେଳ ଚେଇଁ ରହିଲେ । ଉଚ୍ଛୁରରେ ଶୋଇଲେ ଉଚ୍ଛୁରରେ ଉଠିବେ—ସେଥିକୁ ଚିନ୍ତା କ'ଣ ? ସକାଳବେଳା ଟିକଏ ଡେରିରେ ଦୋକାନକୁ ଗଲେ କିଛି ଅସୁବିଧା ହେବନାହିଁ । ନିଜର ତ ଦୋକାନ । ପୁଣି, ପିଲାଙ୍କୁ ବଡ଼େଇଲା ବେଳେ, ତାଙ୍କୁ ସୁଖ ସ୍ୱାଚ୍ଛନ୍ଦ୍ୟରେ ରଖି ତାଙ୍କର ସମସ୍ତ ଅଭାବ ପୂରଣ କରିବା ସକାଶ, ଯେପରି ବ୍ୟସ୍ତ ହୋଇ ରୋଜଗାର ବଢ଼ାଇବାକୁ ହେଉଥିଲା, ଆଉ ଏଣିକି ସେପରି ହେବାର ପ୍ରୟୋଜନ ନାହିଁ । ରବର୍ଟ୍ ମୂଳରୁ ଭଲରେ ଚଳି ଆସିଛନ୍ତି । କର୍ମ୍ ଯେ ରୋଜଗାର କରୁଥିଲେ ତା' ନୁହେଁ ; ପିଲା ତିନୋଟିଙ୍କୁ ପଢ଼ାଇବା ଓ ଉପଯୁକ୍ତ ଶିକ୍ଷା ଦେବାରେ ବହୁତ ଗୁଡ଼ାଏ ପଇସା ଖର୍ଚ୍ଚ ହୋଇ ଯାଇଥିଲା । ସେ ଖର୍ଚ୍ଚ ବେଳ ଯାଇଛି । ଗାଁରେ ତାଙ୍କର ଗୋଟିଏ ବୋଲି ଦୋକାନ ଯେଉଁଠାରେ ସବୁ ପ୍ରକାର ବ୍ୟବହାର୍ଯ୍ୟ ଜିନିଷ ଗଚ୍ଛିତ ଅଛି । କିନ୍ତୁ ଯେତେହେଲେ ମଫସଲ ଗାଁଟାଏତ, କେତେ ବା ଜିନିଷ ଗାଁଲୋକେ କିଣିବେ ? ଧର, ମିସେସ୍ ଲାଇଡର ଯଦି ଆଜି ତାଙ୍କ ରୋଷେଇଘର ଚଟାଣରେ ବିଛାଇବା ପାଇଁ ଲିନୋଲିଅମ୍ କିଣା କିଛି ନେଲେ, ତେବେ ଆସନ୍ତା କେତେବର୍ଷଯାଏଁ ତ ତାଙ୍କର ଆଉ ଲିନୋଲିଅମ ଦରକାର ହେବ ନାହିଁ !

ରବର୍ଟ୍ କହିଲେ, "ହଇଓ, ନିଆଁ ଟିକଏ କରନ୍ତେଇଁ ।"

ମିସେସ୍ କର୍ମି କହିଲେ, "ହଉ କର, ନିଆଁ ଟିକଏ ହେଲେ ସୁଖ ଲାଗିବ ।"

ତେଲରେ ଚଳୁଥିବା ଉତ୍ତାପ ଯନ୍ତ୍ରଟା ଘରେ ଖଞ୍ଜା ହେବାଦିନୁଁ ଘର ସବୁବେଳେ ଉଷୁମ ରହିବାରୁ ସେମାନେ ତାଙ୍କ ଅଗ୍ନିକୁଣ୍ଡରେ କାଠ ଜାଳି ପୁଆଁଇବା ବନ୍ଦ କରି ଦେଇଥିଲେ । କିନ୍ତୁ ପିଲେ ଏବେ ଯେଉଁ ଦିନ କେତୋଟି ରହିଲେ, ସେତକ ସମସ୍ତ ଅଗ୍ନି-କୁଣ୍ଡରେ ଅନବରତ ହୁରୁହୁରୁ ନିଆଁ ଜଳୁଥାଏ ।

ଟିମୋଥି ବଡ଼େଇ କରି କହୁଥାନ୍ତି, "ନିଆଁରେ ଖଣ୍ଡ ଖଣ୍ଡ କରି କାଠ ଗଡ଼—ଅସଲି କାଠଗଡ଼ ପକାଇବାକୁ ପାଇବା ବଡ଼ ମଜ୍ଜାର କଥା । କାଠ ପକାଇ ନିଆଁ ଜାଳନ୍ତି ବୋଲି ମୁଁ ବହିରେ ପଢ଼ିଥିଲି ସିନା, ହାତରେ, ଏଇଠା ବ୍ୟତୀତ ଅନ୍ୟ କେଉଁଠି ନିଜେ ଏପରି ନିଆଁ ଜାଳି ନଥିଲି ।" ଟିମୋଥିଙ୍କର ଜନ୍ମ ସହରରେ, ଜନ୍ମଦିନୁଁ ଆଜଯାଏ ରହିଛନ୍ତି ସହରରେ ।

ରବର୍ଟ୍, ଯାହା ହେଉ, ଏଇ କାଠ ଜାଳିବା ବିଷୟରେ ହୁଁ ହାଁ କରି ନାହାନ୍ତି । କାଠ କାଟି ଗଡ଼ କରିବାକୁ ପରିଶ୍ରମ ପଡ଼େ ବୋଲି ଟିପ୍ପଣୀ କରି ନାହାନ୍ତି । ଆଜିକାଲି ଅବଶ୍ୟ ସବୁତକ କାଠ ତାଙ୍କୁ ଏକୁଟିଆରେ ହାଣିବାକୁ ପଡୁନାହିଁ । ଗଲା ବର୍ଷଠାରୁ ସେ, ପଡ଼ଶାଘରର ଗୋଟିଏ ପିଲାକୁ ଲଗେଇଛନ୍ତି ; ଘରକରଣା କାମରୁ ଗୁଡ଼ାଏ କରିବାକୁ । ତଥାପି, ପୋଡ଼ିଯାଉଥିବା ପ୍ରତି କାଠଖଣ୍ଡରେ ରବର୍ଟଙ୍କର ଗୁଡ଼ାଏ ସମୟ ଓ ଶକ୍ତି ପୋଡ଼ିଯାଉଛି ବୋଲି କର୍ମିଙ୍କୁ ଜାଣେ । ମନର ଏ ଭକ୍ତିତାକୁ ଦମନ କରିବାକୁ ଯେତେ ଚେଷ୍ଟା କଲେ ବି ସେ ପାରୁନଥିଲେ । ତେଣୁ ରୋଷେଇ ଘରେ ଯେଉଁ ଦିନ ଇଲେକ୍‌ଟ୍ରିକ୍ ଚୁଲ୍ଲୀ ବସିଲା ସେଦିନ ତାଙ୍କୁ ଭାରି ଆନନ୍ଦ ଲାଗିଥିଲା । ସେ ଆଶ୍ୱସ୍ତ ହୋଇଥିଲେ ଯେ, ଆଉ ରାନ୍ଧିବା ପାଇଁ ରବର୍ଟଙ୍କୁ କାଠ ହାଣିବାକୁ ପଡ଼ିବ ନାହିଁ । ଆନ ରୋଷେଇଘରେ ଇଲେକ୍‌ଟ୍ରିକ୍ ଚୁଲ୍ଲୀ ଥିବା ଶୁଣି ବିସ୍ମିତ ହୋଇ କହିଥିଲା, "ମା କର୍ମି, ସହରର ଗୃହକର୍ତ୍ତ୍ରୀଙ୍କ ପରି ତୁମର ଏଠାରେ ବି ସତେ ଇଲେକ୍‌ଟ୍ରିକ୍ ଚୁଲ୍ଲୀ ଅଛି ? ମୋର ଏପର୍ଯ୍ୟନ୍ତ ଧାରଣା ଥିଲା ଯେ, ମଫସଲର ରୋଷେଇ-ଘରମାନଙ୍କରେ ବଡ଼ ବଡ଼ କାଠ-ଚୁଲ୍ଲୀ ଥାଏ ।" ଆନ ଏକଥା କହିଲା ବେଳେ, ସେ କାହିଁକି ଇଲେକ୍‌ଟ୍ରିକ୍ ଚୁଲ୍ଲୀ ବସାଇବାକୁ ଜିଦ୍ କରିଥିଲେ, ତାହାର କାରଣ କହିବାକୁ ଲାଜ ମାଡ଼ିଥିଲା ।

ଅସଲ କାରଣଟା କହି ନପାରି ସେ ସେତେବେଳେ ଟିକିଏମାନ ହସି ଦେଇଥିଲେ , ଇଲେକ୍‌ଟ୍ରିକ୍ ଚୁଲ୍ଲୀର ଚକ୍‌ଚକ୍ କରୁଥିବା ଧଳା ଇନାମେଲ୍‌କୁ ସ୍ପର୍ଶ କରିଥିଲେ, "ଚୁଲ୍ଲୀ କାଠଜାଳରେ କଳା ପଡ଼ି ଯାଉ ନାହିଁ, ଏଥିରେ ଏତିକି ଲାଭ ।"

ପିଲମାନଙ୍କ ପିବା ପରେ,ଏବେ ନୈଶ ଭୋଜନ ସାର, ଦୁହେଁଯାକ କ୍ଷଣକପାଇଁ ଲଗାଲଗି ହୋଇ ବସି ଅଗ୍ନିକୁଣ୍ଡରେ ଜଳୁଥିବା ନିଆଁକୁ ଚାହିଁଥାନ୍ତି । ମିଷ୍ଟର୍ କମ୍ବି ହାତ ବଢ଼ାଇ ମିସେସ୍‌ଙ୍କ ହାତ ଧରି ପକାଇଲେ ।

ସେ କହିଲେ, ଓହୋ ! ଟିକଏ ଏକୁଟିଆ ହେବାରୁ କେଡ଼େ ଆନନ୍ଦ ଲାଗୁଛି ।" ସେ ଆଣି ମିସେସ୍‌ଙ୍କ ହାତ ଆପଣା ଆଣ୍ଠୁ ଉପରେ ରଖିଲେ ; ଆଦେଶ ଦେଲା ପରି କହିଲେ, "ହାଁ, ହାତ ଉଠାଅ ନାହିଁ ।" ସେ ନିଜ ପାଇପ୍‌ଟାକୁ ସାଉଁଟି ଆଣିଲେ ଓ ଦୋକ୍ତା ଭର୍ତ୍ତି କରି ସେଥିରେ ନିଆଁ ଧରାଇଲେ ଓ ମନଖୁସିରେ ଧୂଆଁ ଟାଣି ଛାଡ଼ିଲେ । ଏତକବେଳେ ଟିକଏ କଡ଼େଇ ଚାହିଁ, ସେ ଦେଖିଲେ, ପାଖ ଚଉକରେ ଓହଳାଥିବା ସିଲେଇ ବ୍ୟାଗ୍‌କୁ ମିସେସ୍ ଚାହୁଁଛନ୍ତି ।

ସେ କହିଲେ, "ନା, ଏତେବେଳେ ସିଲେଇ କରିବାକୁ ହେବ ନାଇଁ । ଟିକଏ ନିଶ୍ଚିନ୍ତ ହୋଇ ବସିବାକୁ ହେବ, ମାଗି !"

ଦୁହେଁ ଯାକ ସେଇପରି ବସି ରହିଲେ । ତା'ପରେ ମିଷ୍ଟର୍ କମ୍ବି, ମିସେସ୍‌ଙ୍କ ଆଡ଼କୁ ଚାହିଁଲେ ଓ ମୁହଁରୁ ପାଇପ୍‌ଟା ବାହାର କରି, ପ୍ରଶ୍ନ କଲେ,

"ଏ ଯେଉଁ ସଂସାର ଗଢ଼ିଛେ, ଏହା ଠିକ୍ ହୋଇଛି, ନା ନାହିଁ, କହିଲ ।"

ମିସେସ୍ କମ୍ବି ଆବେଗରେ ଉତ୍ତର ଦେଲେ, "ସ୍ବା କ'ଣ ପଚାରୁଛ ମ ? ଯାହା ହୋଇଛି ବେଶ୍ ହୋଇଛି, ଠିକ୍ ହୋଇଛି, ରବର୍ଟ୍ କମ୍ବି !"

ମିଷ୍ଟର କମ୍ବି କହିଲେ, "ସତେ ମୁଁ ମଣିଷ ମାରିଲାପରି ମୋ' ଆଡ଼େ ସେମିତି ଚାହଁନାଇଁ । ପିଲେ ଏଠି ଥିଲାବେଳେ ତୁମେ ତ ଭାରି ଖୁସୀ ଥିଲ ପରି ଦିଶୁ ନଥିଲ, ମାଗି ! ତୁମେ ମୋତେ ଭଣ୍ଡେଇ ପାରିବ ନାଇଁ । ତୁମର ସବୁ ପ୍ରକାର ଗୁହାଣିର ମାନେ ମୋତେ ଜଣା ।"

"ହଁ ତୁମେ ଖୁବ୍ ଜାଣ—ମୁଁ ଟିକଏ ବେଗେ ଚିଡ଼ିଯାଏ ; ମୋ ମା' ବି ଥିଲେ ସେମିତି କ୍ଷଣକୋପିନୀ—କିନ୍ତୁ ସ୍ବା ବୋଲି କ'ଣ ମୋ ପିଲଙ୍କୁ ମୁଁ ସୁଖ ପାଏନାହିଁ ବୋଲି ଅର୍ଥ କରୁଛ ?"

ମିଷ୍ଟର୍ କମ୍ବି କହିଲେ, "ଆଚ୍ଛା, ବେଶ୍, ବେଶ୍ ।"

ଏ ଯେଉଁ ବଡ଼ ବଡ଼ ମଣିଷଙ୍କମାନେ ଆସି, ଗଲେ ସେଇମାନେ ହେଉଛନ୍ତି ସେକାଳର ଶ୍ରେଷ୍ଠ ଛୁଆଟିମାନ—ଏଇକଥା ମନେ ପଡ଼ି ମିସେସ୍ କମ୍ବିଙ୍କୁ ଆଶ୍ଚର୍ଯ୍ୟ ଲାଗୁଥାଏ । କେତେ ବର୍ଷ ହୋଇଗଲାଣି, ରବର୍ଟ୍ ଓ ସେ, ଠିକ୍ ଏଇ ଘରଟିରେ ବସି ଏଇକଥା କଥାବାର୍ତ୍ତା ହୋଇ ଫଇସଲା କରିଥିଲେ । ସେତେବେଳେ ଦୁହେଁଯାକଙ୍କର କଞ୍ଚାବୟସ । ଖୁବ୍ ଦରିଦ୍ର ଅବସ୍ଥା । ରବର୍ଟ୍ ଦୋକାନରେ ତାଙ୍କ ବାପାଙ୍କ ପାଖେ ସାମାନ୍ୟ କିରାଣୀ କାମ କରୁଥାନ୍ତି । ଏତେ ସୁନ୍ଦର ସୋଫା ଟି ସେତେବେଳେ ନଥାଏ—ମିସେସ୍ କମ୍ବିଙ୍କ ମା, ଖୁଆଡ଼ରୁ ବାହାର କରି ଯେଉଁ ପୁରୁଣା, ଲୁମ ଉପରେ କନା ଢଙ୍କା ହୋଇଥିବା ସୋଫାଟା ଦେଇଥିଲେ, ସେଇ ଗୋଟାକ ଏଠି ପଡ଼ିଥାଏ । ରବର୍ଟ୍ ତାଙ୍କୁ କୋଡ଼ରେ ଟାକି କରି ବସିଥାନ୍ତି—ସେତେବେଳେ ସେ ବଳକଟେ ମାତ୍ର ମାଇକିନିଆଁ ।

ସେତେବେଳେ ରବର୍ଟ୍ କହିଥିଲେ, "ଧନ ! ଆମେ ସଂସାର କରିବା, ଆମର ପିଲାପିଲି ହେବେ, ଯା ତୁମର ପ୍ରକୃତ ଇଚ୍ଛା ଟି ? ଭଲ କରି ବିଚାରି କହୁଛ ? ଯଦି ପରିବାର ବଢ଼େ, ତେବେ ଆମେ ଦୁହେଁଯାକଙ୍କୁ ବହୁ କଷ୍ଟ ସହିବାକୁ ହେବ । ପିଲାଙ୍କ ବାପ ମା ହେବାରେ ଯେଉଁ ଟିକିକ ସନ୍ତୋଷ, ତା' ବାଦ୍ ଅନ୍ୟ ସବୁ ପ୍ରକାର ସୁଖରୁ ଆମ ଭଳିଆ ଲୋକଙ୍କୁ ବଞ୍ଚିତ ହେବାକୁ ପଡ଼ିବ—କୁଆଡ଼େ ଟିକିଏ ବୁଲି ଯାଇ ପାରିବା ନାହିଁ କି କିଛି ଆମୋଦ ପ୍ରମୋଦ କରି ପାରିବା ନାହିଁ । ଖାଇବାକୁ ଯଥେଷ୍ଟ ଅବଶ୍ୟ ମିଳିବ । ମୋର ବିଶ୍ୱାସ, ମୁଁ ଗୋଟାଏ ପରିବାରର ଭରଣପୋଷଣ ସକାଶେ ଯଥେଷ୍ଟ ଅର୍ଜିପାରିବି । କିନ୍ତୁ ବିଳାସବ୍ୟସନ ଘରୁ ଏକାବେଳକେ ଫାଙ୍କ ପଡ଼ିଯିବ । ପିଲା ଯଦି ହେବାର କଥା, ତେବେ ଗୋଟିକରେ ତ ସନ୍ତୋଷ ଆସିବନାହିଁ, ଏକାଧିକ ହେବା ଦରକାର ।"

"ହଁ, ନିଶ୍ଚୟ, ମୁଁ ତାହାହିଁ ଚାହେଁ, ରବ୍ କମ୍ବି ।"—ସେ ଉଠି ପଡ଼ି କହିଥିଲେ । ଯେଉଁ ମାଇକିନିଆଁଙ୍କୁ ପିଲା ଗଢ଼ାନ୍ତି, ସତେ ଯେମିତି, ତାଙ୍କୁ ସେମିତି ମାଇକିନିଆଁ ବୋଲି ରବ୍ ବିଚାରୁଥାନ୍ତି ।

ରବ୍ ତାଙ୍କୁ ପୁଣି କୋଡ଼କୁ ଟାଣି ନେଇ କହିଥିଲେ, "ଉଁହୁଁ, ତୁମର ଯେଉଁଠି ରହିବାର କଥା, ସେଠାରେ ଧୀର ହୋଇ ରହ । ଆଉ ମୋତେ ଚାମୁଡ଼ ପକେଇଲା ପରି ହୁଅନାହିଁ । ଜାଣ ତ, ତୁମର ଉପୁଯୋଗ

ବୁଲିଯିବାକୁ ସବୁବେଳେ ମନ । ତୁମେ ଭଲ ପୋଷାକପତ୍ର ଲୋଡ଼ୁନାହିଁ ବୋଲି କହିଲେ; ତାହା ହେବ ଡାହା ମିଛ । ପୁଣି ଏ ଘରଟାକୁ ସଜାଇବା ପାଇଁ ତ ଖୁବ୍ ଲଗେଇଛ । ଏ ସବୁ ହେବ ନା ପରିବାର ବଢ଼େଇବା ? ମାଗି ! ଏ ଦୁଇ ପାଖ ଭଲ କରି ତଉଲି ସିଦ୍ଧାନ୍ତ କରିବାକୁ ହେବ । ତୁମେ ଗୋଟାଏ ଦରିଦ୍ର ଲୋକକୁ ବିଭା ହୋଇଛ—ସେ ପୁଣି ଏମିତି ଲୋକ ଯେ, ଜୀବନରେ କେବେ ଧନୀ ହୋଇ ପାରିବ ନାହିଁ । ମୋର ଆଶା ହେଉଛି, ମୁଁ ଭଲରେ ଚଳିବା ଭଳି ରୋଜଗାର କରିବି, କିନ୍ତୁ କେବେ ଧନୀ ହୋଇପାରିବି ବୋଲି ଭାବି ପାରୁନାହିଁ । ଧନୀ ହେବାକୁ ହେଲେ, ବହୁତ ଖାଟିବାକୁ ହୁଏ, ପୁଣି କୁଟିଳ ନୀତି ଅବଲମ୍ବନ କରିବାକୁ ପଡ଼େ—ଏ ଦୁଇ କଥା ପାଇଁ ମୁଁ ପାତ୍ର ନୁହେଁ ।"

ସେ ଜବାବ୍ ଦେଇଥିଲେ, "ମୁଁ ବି ଧନୀ ହେବାକୁ ପସନ୍ଦ କରେ ନାହିଁ । ନିତାନ୍ତ ଯାହା ପ୍ରୟୋଜନ ସେତକ ପୂରଣ କରିବାକୁ କାହାର ଧାରୁଆ ନହେଲେ ହେଲା । ଇୟୁରୋପ ଯିବା ନହେଉ ପଛେ ମୋର କୋଳରେ ପିଲା ହ'ନ୍ତୁ ।"

ମିଷ୍ଟର୍ କମ୍ବି ଖୁସି ହୋଇ କହି ପକାଇଲେ, "ମୋ'ର ବି ସେଇଆ ଇଚ୍ଛା । ତୁମେ ସମସ୍ୟାଟା ଭଲରକମ ବୁଝି ସମଜ, ସିଦ୍ଧାନ୍ତ କର, ସେତିକି ମାତ୍ର ଦରକାର ।"

ଏହା ପରେ, ବର୍ଷେ ପୂରିଲା ବେଳକୁ ଜୋଆନା ଜନ୍ମ ହୋଇଥିଲା । ସେ ଗର୍ଭ ହେବାର ଦେଖି ତାଙ୍କ ନିଜ 'ମା' ଦୀର୍ଘଶ୍ୱାସ ପକାଇ କହିଥିଲେ, "ମାଗି, ମୋର ଆଶା ଥିଲା, ରବ୍ ଜୀବନରେ ଟିକିଏ ଉନ୍ନତି କରିବା ଯାଏଁ, ତୁମମାନଙ୍କର ପିଲାପିଲି କିଛି ହବନି ।" ଏ କଥା ଶୁଣି ସେ ସାଙ୍ଗେ ସାଙ୍ଗେ ଜବାବ ଦେଇଥିଲେ, "ଆମେ କୌଣସି ମତେ ଚଳାଇ ନେବୁଁ ।"

ସେ ଦୁହେଁ ବେଶ୍ ଚଳାଇ ନେଲେ, ପ୍ରତିଦିନ ପିନ୍ଧି ପିନ୍ଧି ତାଙ୍କ ବିଭାଘର ପୋଷାକ ଏଭଳି ପୋରହ୍ନା ହୋଇଗଲା ଯେ ଆଉ ସିଲେଇ ରହିଲା ନାହିଁ, ତଥି ସିଲେଇ କଲା ବେଳକୁ ଛୁଞ୍ଚି ଯେଉଁଠି ପଶେ ସେଠାଟା ମେଲା ହୋଇଯାଏ । ଆଜି ସେଇ ଜୋଆନାକୁ ଅଣତିରିଶ ବର୍ଷ । ଆଜି ତା'କୁ ଦେଖିଲେ କିଏ ବିଶ୍ୱାସ କରିବ ଯେ, ଏ ସେଇ ରୋଗଣି ପିଲାଟା, ଯାହା ଛାତିରେ ଗୁଣ୍ଡାଟେ ଦେଲେ ଥୁ ଥୁ କରି ଫୋପାଡ଼ି ଦେଉଥିଲା ।

ଜୋଆନା ଏବେ ନିୟମିତ ଭାବେ କ'ଣ ଗୋଟାଏ ନଷ୍ଟା ଧରିଛନ୍ତି, ପର୍ବ-ଦିଲେ କହୁଛନ୍ତି, ଗଣ୍ଡି କମେଇବାକୁ ଲଢ଼ୁଛନ୍ତି । ତା ଦେହରେ ସେମିତି ମାଉଁସ ଗୁଡ଼ାଏ ଥିଲା ପର ତ ମିସେସ୍ କମ୍ପିଙ୍କୁ ଦିଶୁ ନଥାଏ, କିନ୍ତୁ ମାଉଁସ କମାଇବାକୁ ଏ ଚେଷ୍ଟା କାହିଁକି ଲାଗିଛି ତା'ର ଅର୍ଥ ସେ ଠିକ୍ ଠଉରେଇ ପାରୁଥାନ୍ତି । ମିସେସ୍ କମ୍ପି ନିଜେ ଗଣ୍ଡି କମେଇବାକୁ ଲଢ଼େଇ କର‌· ନଥିଲେ । ଯାହା ହେଉଚ ହେଉ ବୋଲି ସେ ଛାଡ଼ି ଦେଇଥିଲେ ; ସମୟ ନଥିଲା, ପଇସା ବି ନଥିଲା ଏ ଲଢ଼େଇ ପାଇଁ । ଜୋଆନାର ପୋଷାକ-ତଳେ ଦିହଟି ଯେ ପାତଳା ଓ କୃଷ ହୋଇ ରହିଛି ଏଥି ପାଇଁ ପର ବହୁତ ପଇସା ଖର୍ଚ୍ଚ ହୋଇଛି । ଏଠାରେ ଥିଲାବେଳେ ଦିନେ ଜୋଆନାକୁ ଅଳସ ଲାଗିଲା ବିଛଣାରୁ ଉଠିବାକୁ ; ତେଣୁ ମିସେସ୍ କମ୍ପି ତା' ପାଖକୁ ଜଳଖିଆ ନେଇଯାଇଥିଲେ ଖଟପାଖକୁ । ସେତିକବେଳେ ତାଙ୍କ ଆଖିପଡ଼ିଲା ଜୋଆନାର ଖୋଲା ବାହା ଉପରେ – ବେଶ୍ ଉଜଳ ତାଜଳ ହୋଇଛି । ସେ ଏହା ଦେଖି, ଖଟପାଖ ଟେବୁଲ ଉପରେ ଜଳଖିଆ ଥୋଇ ଥୋଇ, ଫିକ୍ କିନ ହସି ପକେଇଲେ ; କହିଲେ, "ସେତେବେଳେ, ଖଡ଼ିକା ପରି ତୋ' ବାହା ଦୁଇଟା ଦେଖି ମୁଁ ଯାହା ବ୍ୟସ୍ତ ହେଉଥିଲି, ଏତେବେଳେ ତା' ଶୁଣିଲେ, ମୋତେ ବିଦ୍ରୂପ କରିବ ସିନା !"

ଜୋଆନା ବି ଖୁବ୍ ହସିଲେ ; କହିଲେ, "ସତ ମାଁ ବୋଉ ! ଏବେ, ଏତେ ଗୁଡ଼ାଏ ସର, ଡିମ୍ବ ଓ ଲହୁଣି ତୁ ଆଣିଛୁ ଯେ ମୋତେ ଖାଇବାକୁ ଡର ମାଡ଼ୁଛି ।"

ମିସେସ୍ କମ୍ପି କହିଲେ, "ସିମିତି ଗୁଡ଼ାଏ ନ ବାଛିର ଖାଆ ମ, ଖାଅ । ତୁ' କ'ଣ ଭଲେ ନ୍ୟୁୟର୍କ୍‌ରେ ଅଛୁ ? ଏଇ ପରା ନିଜ ଘର ।"

ଜୋଆନଙ୍କର ପାଟି ନାଳୋଉଥାଏ ଖାଦ୍ୟସାମଗ୍ରୀ ଦେଖି । ସେ କହିଲେ, "ହଁ, ଆଜ ଦିନକ ଖାଇଦେବି ଯେ, ଯାକୁ ଖାଇଲେ ଯେଉଁ ତକ ଗଣ୍ଡି ଗ୍ରେଟ ହେବ ସେତକ ଘଷି ଖସାଇବାକୁ ତ ଗୁଡ଼େ ପଇସା ପଡ଼ିବ ।"

ମିସେସ୍ କମ୍ପି କହିଲେ, "ତୋ' ପିଲ୍ଲ ଯୋଡ଼ାକ ପଶି ଯାଇଥାଏ ବୋଲି ସେ କାଳରେ ମୁଁ କେତେ ବ୍ୟସ୍ତ ନ ହେଉଥିଲି ?"

ଜୋଆନା ସ୍କ୍ରିନରେ ମାଖନ ମାଖୁ ମାଖୁ କହିଲେ, "ସତେ ଲେ ବୋଉ ! ତୋ'ର ଦୋଷରୁ ଆଜ ମୋର ଏ ଦଶା । ଝିଅ ସବୁ ହୋଇଛୁ ବୋଲି ସହରର ମାୟା ଖୁବ୍ ବଢ଼ିଗଲା ନିଶ୍ଚୟ ।"

ମିସେସ୍ କର୍ମି କହିଲେ, "ମାୟା ଗୁଡ଼ାଏ ବଢ଼ିଗଲା କ'ଣ ? ହଁ, ମୋର ସେତେବେଳେ ଯାହା କରିବାର କଥା, ମୁଁ ତା' କରିବାରେ ହେଳା କରିନାହିଁ । ଥାଉ ସେ କଥା । ଏବେ ଆଉ କ'ଣ ଆଣିବ, କହିବୁ ଟି ଧନ ! ତୋର ସବୁ ଆଉ କିଛି ଦରକାର ନାଇ, ତେବେ ମୁଁ ଖାଲି ଠିଆ ହେବ କାହିଁକି ? ମୋତେ ବେଳ ନାଇଁ ଲେ ମା । ତେଣେ ଫିଲିପ୍ କହୁଛି ମୁଁ ତମ ପିଲାଙ୍କ ମନେ ଯେଉଁ କସ୍ ମିସ୍ ପିଠା କରେ ତା'ର ସେ ଦରକାର । ଦିନ୍ଦପହର ଖିଆ ବସାଇବା ଆଗରୁ ସେ ପିଠା ପ୍ରସ୍ତୁତ କରିଦେବାକୁ ହେବ ।"

ପିଲାମାନେ ଆସିବା ପୂର୍ବରୁ ତାଙ୍କର ଯାହା ଯାହା ଦରକାର ହେବ ସେ ସବୁ ସେ କରି ରଖିଥିଲେ । କିନ୍ତୁ ଫିଲିପ୍ର ମନେ ପଡ଼ିଗଲା, କସ ମିସ୍ ପିଠା । ଏଇଟିକୁ ସେ ନିଜେ ପାଦେସାରିଯାଇଥିଲେ ।

ଜୋଆନା କହିଲେ, "ମୋର ଆଉ କିଛି ଦରକାର ନାଇଁ । ସେ ଗୋଲାପଗୋଲାପ ଗୋଲଗାଲ ଡେଣା ଦୁଇଟି ଉପରକୁ ଟେକି ହାଇ ମାଇଲେ—ସୁନ୍ଦର ଶୁଭ୍ର ଦନ୍ତପନ୍ତି ଦିଶିଗଲା । ହାଇମାରି ସେ କହିଲେ, "ଘରକୁ ଆସିଲି, କାମଦାମ କିଛି କରିବାକୁ ପଡୁନାହିଁ, ଭାରି ମଜା ।"

ମିସେସ୍ କର୍ମି କହିଲେ, "ହଉ ଖା । ମୁଁ ଯାଉଛି ତେବେ ।"

ସେତେବେଳେ ଘରକୁ ଯାଇ ମଇଦା ଚକଟୁ ଚକଟୁ, ଜୋଆନାକୁ ମନେ ପକାଇ ସେ ଭାବିଲେ, "ଜୋଆନାର ଦାନ୍ତ ସଳଖିବାରେ ଏତେ-ଗୁଡ଼ାଏ ଟଙ୍କା ଯେ ଖର୍ଚ୍ଚ କଲେଇ ତାହା ସାର୍ଥକ ହେଲା ପରି ଜଣାପଡ଼ୁଛି ।"

ଇଉରୋପ ଭ୍ରମଣ କରିଯିବା କଥା—ଏଇ ଜୋଆନାର ଦାନ୍ତ ସଳଖିବାରେ ପଶିଗଲା । ଇଉରୋପ ଯିବାକୁ ସେ ଏମିତି ସବୁବେଳେ କାହିଁକି ବାସ୍ତାଣୀ ହୁଅନ୍ତି ତାହା ନିଜେ ମିସେସ୍ କର୍ମିଙ୍କୁ ବି ଜଣାପଡ଼େ ନାହିଁ । ସତରେ ସେ ସିମିତି ହେଉଥିଲେ । ଇଉରୋପର ସବୁ ବିଷୟରେ ସେ କେତେ ବହି ନ ପଢ଼ିଥାନ୍ତି ସତେ । ବଡ଼ ବଡ଼ ଗିର୍ଜାଘର, ସେଥିରେ

ଧର୍ମାଧ୍ୟକ୍ଷଙ୍କ ପାଇଁ ସିଂହାସନ ଘର ସାଙ୍ଗେ ଗଢ଼ା ହୋଇଥାଏ ; ଇଂଲଣ୍ଡର ଗ୍ରାମମାନଙ୍କ ଦୃଶ୍ୟ ; ଲଣ୍ଡନ ସହରର ଗଳିକନ୍ଦି ; ରମ୍ପି ଆଇ ସହରର ଭଗ୍ନାବଶେଷ—ଏ ସବୁ ବିଷୟରେ ପଢ଼ି ପଢ଼ି ମନଶ୍ଚକ୍ଷୁରେ ଏସବୁ ସେ ସବୁବେଳେ ଦେଖୁଥାନ୍ତି ସିନା, ସତରେ କ'ଣ ଇଉରୋପ ଯାଇହୋଇ-ଥାନ୍ତା ? ଜୋଆନାର ଦାନ୍ତରେ ନ ଯାଇଥିଲେ, ଭ୍ରମଣ ପାଇଁ ଯେଉଁ ଟଙ୍କା ଦରକାର, ତାହା ଆଜ କୋଉ କାମରେ ପଶି ଯାଇଥାନ୍ତା । ସେ ଜାଣିଥିଲେ ଯେ, ପ୍ରାୟ ପନ୍ଦର ଶହ ଟଙ୍କାରେ, ଯିବା ଆସିବା ଖର୍ଚ୍ଚ ଯାଇ, ଦେଢ଼ ମାସ ଇଉରୋପରେ ବୁଲି ପାରିଥାନ୍ତେ । ଠିକ୍ ସେତିକ ଟଙ୍କା ଜୋଆନାର ପାଟିରେ ଗଲା, ତା'ର ବଙ୍କା ତେମଣା ମୂଷାଦାନ୍ତଗୁଡ଼ାକୁ ସିଧା କରି ବଢ଼ାଇବା ପାଇଁ । ସତେ ଦାନ୍ତଗୁଡ଼ିକ କେଡ଼େ ସୁନ୍ଦର ହୋଇଚି ! ଏବେ ଜୋଆନା ଏଇ ଦାନ୍ତ ଯୋଗୁଁ ବଡ଼େଇ କରୁଛି । ଦାନ୍ତର ଶୁଭ୍ରତା ନଷ୍ଟ ହୋଇଯିବା ଭୟରେ ସେ ବେଶୀ ସିଗ୍ରେଟ୍ ଖାଉ-ନାହିଁ । ଯାହାହେଉ, ଟୋକିଟା, ଏତେ ପଇସା ଖର୍ଚ୍ଚ ହୋଇଥିବା ଦାନ୍ତର ଯତ୍ନ ତ ନେଲେ ନେଉଛି ! ପିଲାଦିନର ସେଇ କଣିଗୋଡ଼ି ଜୋଆନା ଟୋକିଟା ଏତେବେଳକୁ ବେଶ୍ ଘଟଣା ଦିଶିଲାଣି । ଆଉ, ସେମାନେ ତା'କୁ ଭଲ ଶିକ୍ଷା ବି ଦିଆଇଛନ୍ତି—ପିଆନୋ ବଜାଇବା ଶିକ୍ଷା ସେ କଲେଜ ପର୍ଯ୍ୟନ୍ତ ପାଇଛି । ପ୍ରକୃତରେ, ଜୋଆନା ଯଥାର୍ଥ ପିଆନୋ ବଜେଇ ଜାଣେ । ଦରକାର ପଡ଼ିଥିଲେ, ସଙ୍ଗୀତ ଶିକ୍ଷକ ହୋଇ ମଧ୍ୟ ସେ ପେଟ ପୋଷିପାରିଥାନ୍ତା । ତା'ର ସେ ପ୍ରୟୋଜନ ପଡ଼ିଲା ନାହିଁ । କଲେଜରେ ପଢ଼ିଲାବେଳେ ଟିମଥି ସଙ୍ଗେ ଭାବ ହେଲା ; ଜୋଆନା ବି.ଏ. ପାସ୍ କରିବା ପରେ ପରେ ବିଭା ହେଲା । ଟିମଥିଙ୍କ ବାପ ଥିବାବାଲା ; ଟିମଥି ଏଇ ଟୋକା ବେଳୁଁ କଲମ୍ବିଆ ବିଶ୍ୱବିଦ୍ୟାଳୟରେ ମନସ୍ତତ୍ତ୍ୱର ଅଧ୍ୟାପକ ହୋଇଗଲେଣି ; ବିଚାରୁଛନ୍ତି, ମନସ୍ତାତ୍ତ୍ୱିକ ଚିକିତ୍ସା କରିବାକୁ ଗୋଟାଏ ଡାକ୍ତରଖାନା ଖୋଲିବେ । ମନସ୍ତତ୍ତ୍ୱ ବିଷୟରେ ସେ ଖୁବ୍ ଗପନ୍ତି, ଜୋଆନା କୋଉ ଜିନିଷକୁ କାହିଁକି ସୁଖ ପାଉଛି, କାହିଁକି ବା ସୁଖ ନ ପାଉଛି, ତାହାର ତତ୍ତ୍ୱ ଜୋଆନାକୁ ସବୁବେଳେ ବୁଝାଉଥାନ୍ତି ; କହନ୍ତି, "ହେଇଟି, ଜୋ ! ତୁମ ବାପ ମା' ଯତ୍ନ ଯା କରିଥାନ୍ତେ, ତେବେ ଏମିତି—ଯତ୍ନ ଯା କରିନଥାନ୍ତେ, ତେବେ ଏମିତି ହେଉ ନଥାନ୍ତି ।" ଏଇପରି କେତେ ।

ଟିମଥି ଯାହା କହନ୍ତୁ ପଛେ, ସେ ଓ ତାଙ୍କ ପତ୍ନୀ ସବୁ ପିଲାଙ୍କ-ପାଇଁ ଯଥାସାଧ୍ୟ କରୁଛନ୍ତି । ରବର୍ଟ ପଇସାଟିକ ପର୍ଯ୍ୟନ୍ତ ଖର୍ଚ୍ଚ କାଟି ଜୋଆନାକୁ ସଂଗୀତ ଶିକ୍ଷା ଦେବାପାଇଁ ଏତେତ ପଇସା ପାଣି ପରି ଅଜାଡ଼ିଥିଲେ ; କାହିଁକି ନା, ଥିଏଟରରେ ହେଉଥିବା ସଂଗୀତ ଅପେକ୍ଷା 'ଘରର ସଂଗୀତ'କୁ ତାଙ୍କର ବେଶୀ ଶ୍ରଦ୍ଧା । କିନ୍ତୁ ଏଇ ଜୋଆନା ଶିଖିଥିବା ସଂଗୀତର ଅଭ୍ୟାସ ଛାଡ଼ିଦେଇ ବସିଲାଣି । ହେଉଟି ସେ ଦିନ ରାତିରେ ତା'ବାପା କହିଲେ, "ଜୋଆନା, ତୋ' ବୁଢ଼ା ବାପାପାଇଁ ଗୋଟାଏ ଗୀତ ବଜେଇଲୁ ଦେଖି," ଜୋଆନା ତା କୁଞ୍ଚୁକୁଞ୍ଚିଆ କଳା ବାଳରେ ହାତ ବୁଲାଇ ଜବାବ୍ ଦେଲା, "ମୁଁ ତ କାଇଁ କେତେ ଦିନ ହେଲା ପିଆନୋ ପାଖକୁ ଯାଇନାହିଁ ।" ଜୋଆନାର ବାଳଗୁଡ଼ିକ ଭାରି ସୁନ୍ଦର—କଳା ଭିତରେ ଗୋଟିଏ ବି ଧଳାବାଳ ନାହିଁ । ମିସେସ୍ କମ୍ପି ଭାବୁଥିଲେ, "ମୋତେ କୋଡ଼ିଏ ବର୍ଷ ହେଲା ବେଳକୁ ତ ଗୋଟାଏ ଗୋଟାଏ ବାଳ ପାଚିଁଶିଆ ହୋଇ ଯାଇଥିଲା । କଳାବାଳ ମାଇପି ମୁଣ୍ଡକୁ ଭଲ ମାନେ; ଜୋଆନାର ବାଳଗୁଡ଼ିକ ଠିକ୍ ମୋର ବାଳ ପରି ।" ଏତିକି-ବେଳେ ଗୋଟାଏ ବଡ଼ ଭୀଷଣ ଆଶଂକା ମିସେସ୍ କମ୍ପିଙ୍କ ମନରେ ଉଦିତ ହେଲା—ତେବେ କ'ଣ ଜୋଆନା ବାଳରେ ରଙ୍ଗ ଲଗାଉଛି ! ଏ ଆଶଂକା ମନରେ ହେବାମାତ୍ରେ ସେ ଜୋରକରି ତାହା ମନରୁ ଦୂର କରିଦେଲେ ; ମନକୁ ମନ କହିଲେ, "ଏ ଚିନ୍ତା ମନକୁ କାହିଁକି ଆସୁଛି ? ମୁଁ ତ ମୋ ପିଲାଙ୍କୁ ମିଥ୍ୟାଚାରରୁ ଦୂରରେ ରହିବାକୁ ଶିଖାଇ ଆସିଛି ।"

ଜୋଆନା ବହୁଦିନ ହେଲା ପିଆନୋ ପାଖକୁ ଯାଇନାହିଁ ବୋଲି କହିବାରୁ ରବର୍ଟ ପୁଣି କହିଥିଲେ, "ଭଲେ ଟୋକି, ତୁ କ'ଣ କିଛି ଗୋଟାଏ ବଜେଇ ପାରିବୁ ନାହିଁ, "ଆନ ଲରି" ସଂଗୀତର ଗତଟା ବି ନୁହେଁ ?"

ରବର୍ଟ ଅଛା କାଳପରି ସ୍ୱରରେ ପଚାରିଲେ ସିନା, ମିସେସ୍ କମ୍ପିଙ୍କୁ ଜଣା ପଡ଼ିଲା, ସେ ଭାବୁଛନ୍ତି,"ସ୍ତ୍ରୀର ସଂଗୀତ ଶିକ୍ଷାରେ ଯେତେ-ଯାକ ପଇସା ଖର୍ଚ୍ଚ କରିଥିଲି ସେ ସବୁ କ'ଣ ତେବେ ବୃଥା ?"

ଫିଲିପ୍ ଏତିକି ବେଳେ କହିଲେ, "ସଂଗୀତ ଶୁଣିବାକୁ ଘରେ ଗୋଟିଏ ରେଡ଼ିଓ ଦରକାର ବାପା ! ମୁଁ ଗୋଟାଏ ପଠାଇ ଦେବି ।"

ରବର୍ଟ୍ ତତ୍‌କ୍ଷଣାତ୍ ଜବାବ ଦେଲେ, "ଥାଉ ଥାଉ, ତୁ ପଠାଇଲେ ମୁଁ ସେଇଟାକୁ ଝରକାବାଟେ ବାହାରକୁ ଫୋପାଡ଼ି ଦେବି।" ରବର୍ଟଙ୍କର ରେଡ଼ିଓକୁ ଘୃଣା ଦେଖି ହସ ମାଡ଼େ। ମିସେସ୍ କମ୍ବିଙ୍କର ଇଚ୍ଛା, ରେଡ଼ିଓଟିଏ ଘରେ ରହିଲେ ଭଲ ହୁଅନ୍ତା; ମଧୁର ମନୋହର ସ୍ୱରରେ ଫିଲିପ୍ ରେଡ଼ିଓରେ କରିଥିବା ଘୋଷଣା ଶୁଣିବାକୁ ମିଳନ୍ତା। ଝାଡ଼ା ଔଷଧର ବିଜ୍ଞାପନ ଘୋଷଣା ବି ଫିଲିପ୍ ତୁଣ୍ଡରେ ବଡ଼ ସୁନ୍ଦର ଶୁଭେ। କିନ୍ତୁ ରବର୍ଟ୍‌ତ ଘରେ ରେଡ଼ିଓ ରଖେଇ ଦେବେ ନାହିଁ।

ଅରେ ସେ କହିଥିଲେ, "ସେ କୁତ୍ସିତ ଘଡ଼ଘଡ଼ କରୁଥିବା ପଦାର୍ଥ ଆମର ଦରକାର ନାହିଁ।" ସେତିକରେ ଘରକୁ ରେଡ଼ିଓ ଆସିବା ବନ୍ଦ ହୋଇଛି।

ବାସ୍ତବିକ୍, ଜୋଆନା ପିଛା ବହୁତ ପଇସା ଖର୍ଚ୍ଚ ହୋଇଛି ! ସେ କହୁଥିଲା, ପାଠ ସରିଲେ ସେ ଚାକିରି କରିବ ଓ ତା' ପିଛା ଖର୍ଚ୍ଚ ହୋଇଥିବା ପଇସାରୁ କିଛି ପରିଶୋଧ କରିଦେବ। କିନ୍ତୁ ଟିମଥିଙ୍କୁ ଦେଖିଲା ପରେ ତା'ର ସେକଥା ସବୁ ପାସୋର ହୋଇଗଲା। ତେଣୁ କଲେଜ ପଢ଼ା ବନ୍ଦ ହେବା ସାଥେସାଥେ ବିବାହ ଖର୍ଚ୍ଚ ମୁଣ୍ଡରେ ବସିଲା।

ଜୁଲାଇରେ ସେମାନେ ବିଭା ହେବାକୁ ସିଦ୍ଧାନ୍ତ ବୋଲି ଶୁଣାଇ ଦେଇ ଏଇ କୋଠରୀରୁ ଜୋଆନା ଯେତେବେଳେ ବାହାରକୁ ଚାଲିଗଲା, ସେତେବେଳେ ରବର୍ଟ୍ ତାଙ୍କ ଆଡ଼କୁ କମିତ ଚାହିଁଲେ ତାହା ମିସେସ୍ କମ୍ବିଙ୍କର, ଏପର୍ଯ୍ୟନ୍ତ ପରିଷ୍କାର ମନେଅଛି।

ରବର୍ଟ୍ ସେତେବେଳେ କହିଥିଲେ, "ହାଇଓ ମାଗି, ଏ ବିବାହ ଖର୍ଚ୍ଚ ଆମେ ବର୍ତ୍ତମାନ କେମିତି ତୁଲାଇବା କହିଲ।"

ଘର ଉପରେ କିଛି ଟଙ୍କା ବନ୍ଧକସୂତ୍ରେ ଆଣି ସେ ଖର୍ଚ୍ଚ ତୁଲାଆ ହୋଇଥିଲା। ପୂର୍ବରୁ ସେ ଦୁହେଁ ସିଦ୍ଧାନ୍ତ କରିଥିଲେ ଯେ, କସ୍ମିନ୍‌କାଳେ ଘର ବନ୍ଧା ଦେଇ ଟଙ୍କା କରଜ କରିବେ ନାହିଁ। କିନ୍ତୁ ସେ ସିଦ୍ଧାନ୍ତ ରହିଲା ନାହିଁ। ପ୍ରତି ପିଲାଙ୍କ ପାଇଁ ଥରେ ଥରେ ଘର ବନ୍ଧା ଦେବାକୁ ହେଲା। ପ୍ରତିଥର ସ୍ୱାମୀ ସ୍ତ୍ରୀ ଦୁହେଁ ଆଶ୍ୱସ୍ତ ହୋଇଥିଲେ ଯେ, ଦୈବାତ୍ ଏପରି କିଛି ଘଟିବ ଯାହା ଫଳରେ ଘରଟିକୁ ମୁକୁଳାଇ ନପାରି ସବୁଦିନ-ପାଇଁ ହରାଇବେ। ସେ ଯାହାହେଉ, ଜୋଆନାର ବିଭାଘରଟି ବେଶ୍

ଭଲରେ ହେଲା । ଘର ବନ୍ଧକ ଦେଇ ଯେଉଁ ଟଙ୍କା ଆଣିଥିଲେ, ସେଥିରୁ ଶେଷ ବର୍ଷର କଲେଜଦେୟ ଦିଆହେଲା, ଜୋଆନା ପାଇଁ ବିବାହ ପୋଷାକ କଣାହେଲା ଏବଂ ବିଭାଘର ଭୋଜି ଇତ୍ୟାଦି ବାବଦ୍ର ସମସ୍ତ ଧାର ଉଧାର ଶୁଝାଗଲା । ଏସବୁ ଯାଇ ଆଉ ଯାହା ଟଙ୍କା ବଳିଲା ସେଥିରେ ଗୋଟିଏ ବାକ୍ସ, ଭଲ ଚୀନା ବାସନ କଣି ବିବାହ ଉପହାର ସ୍ୱରୂପ ଝିଅ ଜ୍ୱାଇଁଙ୍କୁ ଦିଆ ହେଲା । ତା' ପରେ ସ୍ୱାମୀ ସ୍ତ୍ରୀ ଦୁହେଁ ଲାଗି ପଡ଼ିଲେ କରଜ ଶୁଝିବାକୁ । କିଛି ଦିନରେ ସବୁ ଟଙ୍କା ପରିଶୋଧ ହୋଇ ଘର ମୁକୁଳିଲା ।

ପୁଅ ଦୁହିଙ୍କ ପାଇଁ ଏତେ ଖର୍ଚ୍ଚ ହୋଇନାହିଁ । ହାଇସ୍କୁଲରେ ପଢ଼ିଲା ବେଳେ ବଡ଼ ପୁଅ ହିବାର୍ଟ ପିଛା ସେପରି କିଛି ଖର୍ଚ୍ଚ ହୋଇନାହିଁ । ସେଥିରୁ ଉତ୍ତୀର୍ଣ୍ଣ ହୋଇ ଇଂଲଣ୍ଡରେ ଯାଇ ପଢ଼ିବାକୁ ସେ ଗୋଟାଏ "ରୋଡ଼ସ୍ ବୃତ୍ତି" ପାଇଲା । ହିବର୍ଟ୍‌ର କୃତିତ୍ୱ ଯୋଗୁଁ ବାପ ମା' ଦୁଇ ପ୍ରାଣୀଙ୍କର ବୁକୁ ଫୁଲେ ମୋଟ ହୋଇଥାଏ । ପାଠ ପଢ଼ିବାପାଇଁ ତା'କୁ ଇଂଲଣ୍ଡ ନ ପଠାଇବା ମୂର୍ଖତା ହୋଇଥାନ୍ତା । ସେଥିଯୋଗୁଁ ପୁଣି ଘର ବନ୍ଧା ଦେଇ ଟଙ୍କା ଉଠାଇବାକୁ ପଡ଼ିଲା । ପୁଣି, ଇଂଲଣ୍ଡଯାଏ ଗଲା ଯେତେବେଳେ, ଇୟୁରୋପରେ ଟିକିଏ ଭ୍ରମଣ କରିବାକୁ ନଦେବା ମଧ୍ୟ ବୋକାମି ହୋଇଥାନ୍ତା । ଇଂଲଣ୍ଡରେ ଥାଉ ଥାଉ ସେ ଆନ ସାଙ୍ଗେ ପ୍ରେମରେ ପଡ଼ିଲା ଓ ଆନକୁ ସାଙ୍ଗରେ ଧରି ଘରକୁ ଫେରିବାକୁ ସ୍ଥିରିଲା ବାଟଖର୍ଚ୍ଚ । ଏ ଖର୍ଚ୍ଚ ତ ହେବାର କଥା । ଆନ ସାଙ୍ଗେ ପ୍ରେମରେ ପଡ଼ିବା ବା ଫେରିବା ବେଳେ ବାପମା'ଙ୍କୁ ଖର୍ଚ୍ଚାନ୍ତ କରିବାରେ ହିବର୍ଟ୍‌ଙ୍କୁ ଦୋଷ ଦିଆଯାଇ ନପାରେ । କିନ୍ତୁ, ହିବାର୍ଟ ଅସଲ ହିଇଗଣ କଲା, ଯେତେବେଳେ ସେ ମାଷ୍ଟର୍ ହେବାକୁ ରାଜିନହୋଇ, ପାଠଶାଠ ପଢ଼ି ସାରି, ଧରି ବସିଲା ଡାକ୍ତର ହେବାକୁ । ପୁଣି ଆରମ୍ଭହେଲା ଖର୍ଚ୍ଚ, ଖର୍ଚ୍ଚସାପେକ୍ଷ ଡାକ୍ତରି ଉପାଧି ପାଇ ସାରି ଏବେ ବି ସେ ଅଛି ହାଉସ୍ ସର୍ଜନ ମାତ୍ର । ଆଉ ବର୍ଷେ ଗଲେ ଯାଇ ବାହାରେ ଚିକିତ୍ସା କରି ରୋଜଗାର କରିପାରିବ । ଏଣେ ଆନ ଦିଶୁଛି, ସତେ ଯେମିତି ତା'ର ପେଟ ପୂରୁ ନାହିଁ । ଇଂଲଣ୍ଡର ଲୋକମାନେ ସାଧାରଣତଃ ଟିକିଏ ପାତଳା ଦିଶନ୍ତି ; ସେଇ କାରଣରୁ ହୁଏତ ଆନର ଚେହେରା ଏତେ ରୋଗଣା ଦିଶୁଛି । ଏପର୍ଯ୍ୟନ୍ତ ହିବାର୍ଟ ଘରୁ ଟଙ୍କା ନେଉଛି—ଧାର ନେଉଛି ବୋଲି ସେ କହୁଛି, ବାପ ବି

କହୁଛନ୍ତି ଧାର ଦେଉଛନ୍ତି ବୋଲି ; କିନ୍ତୁ ହବାର୍ଟ୍‌ ଘରୁ ନେଉଥିବା ଟଙ୍କା ଫେରାଇ ଫେରାଇ ଆଉ ଅନେକ ବର୍ଷ ଯିବ ନିଶ୍ଚୟ । ରବର୍ଟ୍‌ ବେମାର ହୋଇ କାମ ନ କରି ପାରିବା ଯାଏଁ ହବାର୍ଟ୍‌ଠାରୁ ଏ ଟଙ୍କା କାହିଁକି ବା ଫେରି ପାଇବାକୁ ଚାହିଁବେ ? ଯାହାହେଉ ହବାର୍ଟ୍‌ ପିଲାଟି ଭଲ, ବାପା ଖର୍ଚ୍ଚ କରିବା ଟଙ୍କା ପରିଶୋଧ କରିବାକୁ ସେ ଚାହିଁବ । କିନ୍ତୁ ସାନ ପୁଅ ଫିଲିପ୍ ଯଦି ବାପାଙ୍କଠାରୁ ଏଇପରି ଟଙ୍କା ଧାର ନେବାକୁ ବସେ, ତେବେ ପରିଶୋଧ କରିବା କଥା ସେ ସ୍ୱପ୍ନାକ୍ଷରରେ ବି ଭାବିବ ବୋଲି କହି ହେବନାହିଁ ।

ଫିଲିପ୍‌ଟା ଚଗଲା, ତା ପିଲା ଢଙ୍ଗ ଏପର୍ଯ୍ୟନ୍ତ ଯାଇନାହିଁ । ପିଲେ ଯଦି ଭଲ, ତେବେ ବାପ ମା’ ତାଙ୍କ ପିଛା ହେଉଥିବା ଖର୍ଚ୍ଚକୁ ଖାତିର କରନ୍ତି ନାହିଁ । କିନ୍ତୁ ଫିଲିପ୍ ? ପଢ଼ାରେ ଯେମିତି ମନ ଦେବା କଥା, ସେମିତି ଦେଲା ନାହିଁ, କଲେଜର ଦ୍ୱିତୀୟ ବାର୍ଷିକ ଶ୍ରେଣୀରେ ଫେଲ୍ ହୋଇ ଘରକୁ ବାହୁଡ଼ି ଆସିଲା । ତା’ ପାଇଁ କ’ଣ କରିବେ ବାପ ମା’ ଠିକ୍ କରି ପାରିଲେ ନାହିଁ । କୋଡ଼ିଏ ବର୍ଷର ଏଡ଼େ ପିଲାଟେ, ଏଡ଼କି ଅଳସୁଆ ପୁଣି ସବୁବେଳେ ହେଁହେଁ ଫେଁଫେଁ, ଯାକୁ ଧରି ମଣିଷ କରିବ କ’ଣ ? ଦିନେ ସକାଳେ ଜଳଖିଆ ଖାଇଲା ବେଳେ ରବର୍ଟ୍ ତା’ ଉପରେ ରାଗିଯାଇ ପାଟି କଲେ, “ଚାଲି ଦୋକାନକୁ, ସେଠାରେ ଦୋକାନ ଝାଡ଼ୁ ଦେଇ ତୋ ଖୁଦ୍ରାକ ରୋଜଗାର କରିବୁ ।” ଫିଲିପ୍‌ର ଗୁଣରୁ, ଏକଥା ପାଇଁ ମିସେସ୍ କମ୍ପି ରବର୍ଟ୍‌ଙ୍କୁ ଦୋଷ ଦେଇ ପାରି ନଥିଲେ ।

ଫିଲିପ୍ ଜବାବ୍ ଦେଇଥିଲା, “ହଉ ବାପା, ମୁଁ ସେଇଆ କରିବି ।” ଟିକିଏ ରାଗ ନାଇଁ କି ଅଭିମାନ ନାହିଁ । ଯାହା କହ, ଫିଲିପ୍‌ର ପ୍ରକୃତିଟା ବଡ଼ ସୁନ୍ଦର । ଯେତେ ଯାହା କହିଲେ ବି ରାଗିଉଠିବ ନାହିଁ । ସେଇଦିନଠାରୁ ମାସ କେତେ ହପ୍ତା ପରେ, ଦିନେ ହଠାତ୍ ସେ ସିଧା ନିୟୁୟର୍କ ଚାଲିଗଲା ଓ କଲେଜରେ ପଢ଼ା ଶେଷ କରିଥିବା ପିଲେ ଯେମିତି ସାଙ୍ଗେ ସାଙ୍ଗେ ଚାକିରି ପା’ନ୍ତି ସେଇମିତି ଗୋଟାଏ ଚାକିରି ସାଙ୍ଗେ ସାଙ୍ଗେ ପାଇଗଲା । ରବର୍ଟ୍‌ ପ୍ରଥମେ ଏକଥା ଶୁଣି ବିଶ୍ୱାସ କଲେ ନାହିଁ ; ପରେ ଚାକିରିଟା କ’ଣ ଶୁଣି, କହିଲେ, “ଭଲ ହୋଇଛି, ଯାର ପାଠପଢ଼ାରେ ଆମେ ଆଉ ଅଧିକ ଖର୍ଚ୍ଚ କରି ନଥାଇଁ ।” କିନ୍ତୁ ସେ ଦୁହେଁ—ରବର୍ଟ୍ ଓ ମିସେସ୍

କମ୍ପି ଉଭୟେ ମନେ ମନେ ନିଜକୁ ଦୋଷନ୍ତି ଯେ, ପ୍ରଥମ ଦୁଇ ପିଲାଙ୍କ ପାଇଁ ସେମାନେ ଯେତେ ଖର୍ଚ୍ଚ କରିଛନ୍ତି ତା ତୁଳନାରେ ଫିଲିପ୍‌ପାଇଁ ସେପରି କିଛି କରି ନାହାନ୍ତି । —

ଏବେ ବୈଠକଖାନାରେ ନିଭୃତରେ ବସି ମିସେସ୍ କମ୍ପି ଏଇ ସବୁ କଥା ମନେ ପକାଇ ପ୍ରକାଶ୍ୟରେ ମିଷ୍ଟର୍ କମ୍ପିଙ୍କୁ କହିଲେ, "ଆମର ଯେତିକ କରିବା ଉଚିତ କମ୍ବା ଅଧିକାଂଶ ଲୋକ ତାଙ୍କ ପିଲାଙ୍କପାଇଁ ଯାହା କରନ୍ତି, ତହିଁରୁ ଅଧିକ ଆମ ପିଲାଙ୍କପାଇଁ ଆମେ କରିଛେଁ ବୋଲି ମୋର ମନେ ହେଉ ନାହିଁ ।"

ମିଷ୍ଟର୍ କମ୍ପି ଉତ୍ତର ଦେଲେ,"ବେଳେ ବେଳେ ମନେ ହୁଏ, ଖୁବ୍ କରିଛେ, ପୁଣି ଆଉ ବେଳେ ବେଳେ ମନେ ହୁଏ ଯଥେଷ୍ଟ କରି ନଥାଇଁ ।"

ମିସେସ୍ କମ୍ପି ମନ୍ତବ୍ୟ ଦେଲେ, "ଯାହା କହ ପଛେ, ଆମେ ତ ପିଲା ହୁଅନ୍ତୁ ବୋଲି ବୁଝି ବିଚାରି ସେମାନଙ୍କୁ ଜନ୍ମ କରିଥାଇଁ ।"

ଗୋଟାଏ ହାଇଁ ମାରି ମାରୁ ମାରୁ ମିଷ୍ଟର୍ କମ୍ପି କହିଲେ, "ସେ କଥା ସତ ; କିନ୍ତୁ ମୋର ବର୍ତ୍ତମାନ ପଚାରିବାର କଥା, ପିଲାଙ୍କ ବିଷୟରେ ଯେଉଁ ଅଭିଜ୍ଞତା ଆମେ ଦୁହେଁ ପାଇଲେଣି, ତାହା ପାଇ ସାରିବା ପରେ, ଆମକୁ ଯଦି ସେଇ ପୁରୁଣା ସମସ୍ୟା—ପିଲା ଜନ୍ମ କରିବା କି ନାହିଁ— ସେଇ ସମସ୍ୟାର ସିଦ୍ଧାନ୍ତ କରିବାକୁ ପଡ଼ନ୍ତା, ତେବେ କ'ଣ କରନ୍ତେ କହ । ତଥାପି କ'ଣ ପିଲା ହୁଅନ୍ତୁ ବୋଲି ମତ ଦିଅନ୍ତେ—ମାଗି ! ମନର କଥା ନ ଲୁଚାଇ ପରିଷ୍କାର ଜବାବ୍ ଦିଅ ।"

ମିସେସ୍ କମ୍ପି ହାତ ବଢ଼ାଇ ସିଗାରେଟ୍ ବ୍ୟାଗ୍ ଆଣିଲେ ; ଜୋରରେ ନିଃଶ୍ୱାସ ମାରି, ବିଚାରୁଥାନ୍ତି । ମିସେସ୍ କମ୍ପି ସିଗାରେଟ୍ ବ୍ୟାଗ୍ ଆଣିବାରେ ମିଷ୍ଟର୍ କମ୍ପି ଏଥର ଆଉ ଆପତ୍ତି କଲେନାହିଁ ।

ଟିକିଏ ଚିନ୍ତିତ ରହି ମିଷ୍ଟର୍ କମ୍ପି ପୁଣି କହିଚାଲିଲେ, "ଆଉ ଗୋଟିଏ କଥା ବିଚାରିବାକୁ ହେବ । ଆମ ପିଲେ—ତାଙ୍କର ପିଲା ହେବେ କି ନାହିଁ ଏ ବିଷୟରେ ସେମାନେ ଯଦି ସିଦ୍ଧାନ୍ତ କରିବାର ସୁଯୋଗ ପା'ନ୍ତି, ତେବେ, ସେମାନେ ପିଲା ହେବାକୁ ସିଦ୍ଧାନ୍ତ କରିବେ ନା ନାହିଁ ? କଷ୍ଟେ ମଷ୍ଟେ ନିଜର ଜୀବିକା ନିର୍ବାହ କରୁଛନ୍ତି, ପରସ୍ପର ଭିତରେ ବିଶେଷ ସୌହାର୍ଦ୍ଦ୍ୟ ଥିବା ପରି ତ ଜଣା ଯାଉନାହିଁ—ସେମାନେ ସୁଖରେ ଅଛନ୍ତି

ବୋଲି ମୁଁ ବଡ଼ୁଛି ନାହିଁ—ଧର, ଏଇ ଜୋଆନା କଥା । ତା'ର ହୋଇଛି କ'ଣ ? କେତେ ଚିଡ଼ଚିଡ଼ି ହେଉଛି ସେ, ବିଶେଷ କରି ଟିମଥି ସାଙ୍ଗେ ।"

ମିସେସ୍ କମ୍ପି କହିଲେ, "ଅଧେ ସମୟ ତ ସେ ଭୋକରେ ରହୁଛି । ସେଇଥିପାଇଁ ତା'ର ଚିଡ଼ଚିଡ଼ା ପ୍ରକୃତି ହୋଇ ଯାଉଛି । ପୁଣି, ଖାଇବାକୁ ଲାଳସା ହେବାରୁ ଯାହା ଖାଉଛି, ଖାଇ ଖରାପ କଲି ବୋଲି ବିଚାରିବାରୁ ପୁଣି ଚିଡ଼ଚିଡ଼ି ହେଉଛି । ପେଟ ନ ପୂରିଲେ ଚିଡ଼ଚିଡ଼ି, ପେଟ ପୂରିଲେ ବି ଚିଡ଼ଚିଡ଼ି ।"

ମିଷ୍ଟର୍ କମ୍ପି ଆରମ୍ଭ କରୁଥିଲେ, "ଏଥିରେ ମଣିଷ କଣ – ।" ତାଙ୍କ କଥା ଶେଷ ହେବା ପୂର୍ବରୁ ମିସେସ୍ କମ୍ପି ବାଧା ଦେଇ ବିଷଣ୍ଣ ଭାବେ କହିଲେ—"ମୁଁ କିନ୍ତୁ ଦେହ ମୋଟ ହେବା ବିରୁଦ୍ଧରେ ଲଢ଼େଇ କରୁନାହିଁ । ବୋଧହୁଏ ସେପରି କଲେ ଭଲ—"

ମିଷ୍ଟର୍ କମ୍ପି ବିରକ୍ତ ହୋଇ କହିଲେ, "ତୁମେ ତ ସେପରି କିଛି ମୋଟା ହୋଇନାହଁ ମାଗି !"

ମିସେସ୍ କମ୍ପି ତରତରରେ ସିଲେଇ କରୁ କରୁ କହିଲେ, "ହଁ, ମୁଁ ମୋଟା ହେଲିଣି । କିନ୍ତୁ ସରୁ ହେବାକୁ ତ କିଛି ଉପାୟ କରି ପାରିଲି ବେରି ଲାଗୁନାହିଁ । ମୋତେ ବେଳ ନାହିଁ କି ଉପାସ ରହିବାକୁ ମୋର ବଳ ନାହିଁ ।"

ମିଷ୍ଟର୍ କମ୍ପି କହିଲେ, "ମୋ ଆଖିକୁ ତୁମେ ମୋଟା ଦିଶୁନାହଁ ! ପାତଳା ମାଇକିନିଆଁଙ୍କୁ ମୋର ସବୁବେଳେ ଘୃଣା ।"

ମିସେସ୍ କମ୍ପି ମିଷ୍ଟର୍ କମ୍ପିଙ୍କ ଆଡ଼କୁ ଟିକିଏ ଆଗେଇ ଆସିଲେ – ମିଷ୍ଟର୍ କମ୍ପି ମୁହଁରୁ ପାଇପ ବାହାର କଲେ—ଦୁହେଁ ଖୁବ୍ ମନ ପୂରେଇ ଚୁମ୍ବନ ଦିଆନେଇ ହେଲେ । ତା'ପରେ ମିସେସ୍ କମ୍ପି କହିଲେ—ତାଙ୍କ ହୃଦୟ କରୁଣାରେ ଦ୍ରବ ଗଳିପଡ଼ି ହୋଇଥାଏ—"ମୋ ମନରେ ଏତିକି ଦୁଃଖ ଯେ, ଆମ ପିଲାଙ୍କର ପରସ୍ପର ପ୍ରତି ପ୍ରେମ ଥିବା ପରି ଜଣାଯାଉନାହିଁ; ଯେମିତି ଆମ ଦୁହିଁଙ୍କର ଅଛି ।"

ମିଷ୍ଟର୍ କମ୍ପି ପଚାରିଲେ, "ସ୍ବାମୀ ମାନେ ?"

ମିସେସ୍ କମ୍ବି କହିଲେ, "ଯାହା କହିଲ ସେଇଆ । ଜୋଆନା ଟିମଥିକୁ ସୁଖ ପାଇଲା ପରି ଜଣାଯାଉନାହିଁ, କି ଟିମଥି ଜୋଆନାକୁ । ହବାର୍ଟ ଓ ଆନଙ୍କ ଭିତରେ ବି ସେଇ ଅବସ୍ଥା । ପୁଣି ଜୋଆନା ଓ ତା' ଭାଇ ଦୁହିଁଙ୍କ ଭିତରେ ବି ସଦ୍‌ଭାବ ଥିଲା ପରି ଦିଶୁନାହିଁ । କାହା ହୃଦୟରେ କାହାରି ପ୍ରତି ମମତା ନାହିଁ ; କମିତି ଆଡ଼େଇ ଆଡ଼େଇ ହୋଇ ଚଳୁଛନ୍ତି, ସତେ ଯେମିତି, ହୃଦୟରେ କାହେ ସ୍ନେହ ଶ୍ରଦ୍ଧା ଟିକଏ ହେଁକ ମାରିଦେବ ବୋଲି ଡରୁଛନ୍ତି । ମୋର କେମିତି ଗୋଟାଏ ଧାରଣା ହୋଇଛି ଯେ ଏଗୁଡ଼ାକ ମନରେ ସହୃଦୟତା ନାହିଁ । ଜୋଆନା ମଧ୍ୟ ସମସ୍ତଙ୍କ ସଙ୍ଗେ ସମାନ ହେଲା ! ଅବୁଝା ହୁଏ ବୋଲି ଯେଉଁ ଛୁଆଟିକୁ ମୁଁ ଘଣ୍ଟା ଘଣ୍ଟା ଧରି ବୁଝାଉଥାଏ, ସେ ସେଇ ବୋଲି ମୋର ପରତେ ହେଉନାହିଁ । ସେ ବି—ସେ ବି—ଦାଣ୍ଡର ଯେ କୌଣସି ମାଇପି ପରି ହୋଇଗଲା—ଆଶ୍ଚର୍ଯ୍ୟ ଲାଗୁଛି । ମିସେସ୍ ଟିମଥି ଆଲ୍‌ବ୍ରିକ୍ ବୋଲି ସେ କାର୍ଡ ଛପାଇଛି—ତା' ଆଚରଣ ଦେଖି ମୋର ବେଳେ ବେଳେ ମନେ ହେଉଥିଲା, ମୁଁ ବି ତାକୁ ସେଇ ମିସେସ୍ ଟିମଥି ଆଲ୍‌ବ୍ରିକ ବୋଲି ଡାକନ୍ତି ।" ମିସେସ୍ କମ୍ବି ସିଲେଇକାମଟା ହାତରୁ ସୋଫା ଉପରେ ଥୋଇ ଦେଇ ମିଷ୍ଟର୍ କମ୍ବିଙ୍କ ଆଡ଼କୁ ଗୁହିଁଲେ; ପୁଣି କହିଲେ, "ବଡ଼ ହେଲାରୁ ଏ ପିଲା ଗୁଡ଼ାକ ମଣିଷଠାରୁ କେଡ଼େ ଗୁଡ଼ରୀ ହୋଇଗଲେ । ତାଙ୍କ ଢଙ୍ଗରଙ୍ଗ ଦେଖି ମନେ ହେଉଛି, ସତେ ଯେମିତି ଏଗୁଡ଼ାକ ମୋ ପେଟରୁ—"

'ଉଁଃ', ମିଷ୍ଟର୍ କମ୍ବି ଚିନ୍ତିତ ହୋଇ କହିଲେ ଓ ପାଇପ୍‌ଟା ସୋଫା ଉପରେ ଥୋଇ ଦେଲେ । ଆଜି ସିନା ଏମିତି ହୋଇଛନ୍ତି, ଏଇମାନେ ତ ପୁଣି ଦିନେ ଏଇ ଘରେ ଧାଁଧପଡ଼, ଖେଳ କୌତୁକ କରୁଥିଲେ—ଘନ କୃଷ୍ଣ କବରୀ ଝିଅଟି ଓ କଅଁଳ ବାଳୁଆ ପୁଅ ଯୋଡ଼ିକ । ବାପ ମା' ଦୁହିଁଙ୍କ ଜୀବନର ଅସଲ ସମ୍ପତ୍ତିଟା ଏ ପିଲାଙ୍କ ପିଣ୍ଡ କଟିଛି । ଏଥିରେ ଲାଭଟା କ'ଣ ହେଲା କେଜାଣି—ପିଲା ଜନ୍ମ କରିବ ଓ ବଞ୍ଚିଥିବାଯାକ ସେମାନଙ୍କ ପାଇଁ ଘାଣ୍ଟି ହୋଇ ମରିବ—ଏବେ ବି ଯେମିତି ଘାଣ୍ଟି ହେଉଥାଇଁ । ବୁଢ଼ା ହେଲା ବେଳକୁ - ସେ ଯାଇ ତାଙ୍କ ସୁଖରେ ରହିବେ—ତୁମର ପଇସାତକ ଗଲା—ଏତିକିମାତ୍ର ଲାଭ । ଏତେ ପଇସା ଗଲା, କିନ୍ତୁ ତା ବଦଳରେ ରହିଲା କ'ଣ, ଜନାମାଣ୍ଡ ସଂସାରରେ ଅଧିକା ଦିଗୋଟି ମଣିଷ ମାତ୍ର !"

ମିସେସ୍ କମ୍ପି କହିଲେ, "ଯାହା ହେଉ, ଭଲ ପିଲାଗୁଡ଼ିଏ ।"

ମିଷ୍ଟର୍ କମ୍ପି କହିଲେ, "ସଂସାରରେ ଏମିତି ଭଲ ମଣିଷର ତ ଅଭାବ ନାହିଁ ।" ମୃଦୁ ହସି ରହି ସେ ପୁଣି ଯୋଡ଼ିଲେ, "ଫିଲିପ୍ ଟୋକାଟା ବିଷୟରେ ସେତିକି ସାନ୍ତ୍ୱନା ବି ଅଛି ବୋଲି ତ କହି ହେଉନାହିଁ ।"

ମିସେସ୍ କମ୍ପି ଜିଦ୍ କଲେ, "ଫିଲିପ ବି ଭଲ ।"

ମିଷ୍ଟର୍ କମ୍ପି ଗୁଁ ଗୁଁ ହୋଇ କହିଲେ, "ହଁ, ଭଲ ଲୋକ ତ ମୋର ସବୁଠାରୁ ଭଲ ଟାଇଟା ନେଇ ତୁ ମାଇଲା ।"

ହସି ହସି ମିସେସ୍ କମ୍ପି କହିଲେ, "ତା' ବିରୁଦ୍ଧରେ ଏତିକି ମାତ୍ର ଯାହା ଅଭିଯୋଗ— ।"

ହସିଲେ ସିନା, ସ୍ୱାମୀଙ୍କ କଥାର ମର୍ମ ହୃଦୟଙ୍ଗମ କଲେ । ସେ ନିଜେ ମଧ୍ୟ ଫିଲିପ୍ ବିଷୟରେ ନିଶ୍ଚିନ୍ତ ନୁହନ୍ତି । ଯେତିକି ସୁନ୍ଦର ଦେଖିବାକୁ, ସେତିକି ଅଳସୁଆ ସ୍ୱଭାବ ତା'ର । ଖାଲି ଟିଆ ହୋଇ ରେଡ଼ିଓରେ ଗୃଡ଼େ ଗପିବ—ସ୍ପୋର୍ଟ ବାଦ୍ କୋଉ କାମଟା ବା କରୁଛି ? ସ୍କୁଲ୍ ଗୋଟାଏ କୋଉ କାମରେ ବା ଲେଖା ? ସେଦିନ ଗ୍ରେଷେଇଘରେ—ସବୁବେଳେ ଗ୍ରେଷେଇଘରେ ତାଙ୍କ ପଛରେ ଲଡ଼ି ବଡ଼ ହେବା ସେ ପିଲାଟାର ଢଙ୍ଗ— ଫିଲିପ୍‌କୁ ସେ ଯାହା କହିଲେ, ସେ କଥା କଦାପି ମିଷ୍ଟର୍ କମ୍ପିଙ୍କୁ କହିବାର ନୁହେଁ । ସେ ସେଦିନ ଫିଲିପ୍‌କୁ ସଫା ପଚାରିଲେ, "ଫିଲିପ୍ କାମ ନ କରୁଥିଲା ବେଳେ ତୁ ସହରରେ କେମିତି ସମୟ କଟାଉଛୁ ।"

ଫିଲିପ୍ ଉତ୍ତର ଦେଲା, "କାମ ନକରୁଛି କେତେବେଳେ ମୁଁ ଜାଣିପାରୁ ନାହିଁ । ନ୍ୟୁୟର୍କ ପରି ସହରରେ ସବୁବେଳେ କାମ ଅଛି ।" ଫିଲିପ୍‌ର ପାଟଳ ଆଖି ପଡ଼ିଲା ମା'ଙ୍କ ଆଖିରେ; ଫିଲିପ୍ ହସି ପକାଇଲା; କହିଲା, "ମା, ତୁ କ'ଣ ଚିନ୍ତୁଛୁ କି ମୁଁ ଅବାଟରେ ଯାଉଛି ବୋଲି ? ତା' ମୁଁ କରୁନାହିଁ ।"

ତରତର ହୋଇ ମିସେସ୍ କମ୍ପି କହି ପକାଇଥିଲେ, "ମୁଁ ତା' ଚିନ୍ତିଲି କାହିଁକି ମ ?" କହିଦେଲେ ସିନା, ସେଇପରି କିଛି ଆଶଙ୍କା କରି ସେ କଥାଟା ପଚାରିଥିଲେ । ଫିଲିପ୍ ତାଙ୍କ ପେଟ ଭିତରର କଥା ଠିକ୍ ଠଉରେଇଛି ।

ତା' ପରେ ଫିଲିପ୍ ବୁଝେଇଦେଲା, "ଏଇ ରେଡ଼ିଓ କାମରେ ମୋର ଖୁବ୍ ମନ ଲାଗିଛି । ଏଥିରେ ବହୁତ ପ୍ରକାର ଉନ୍ନତି କରାଯାଇ-

ପାରେ । ମୁଁ ଖାଲିବେଳେ କ'ଣ କରୁଛି ବୋଲି ଯାହା ପଚାରୁଥିଲୁ, କହୁଛି ଶୁଣୁ । ରେଡ଼ିଓ ବିଷୟରେ ଅଧିକ ଜାଣିବା ପାଇଁ ମୁଁ ଷ୍ଟୁଡ଼ିଓମାନଙ୍କରେ ବୁଲାବୁଲି କରୁଛି । ମନେ ମନେ କେତେଗୁଡ଼ିଏ ଯୋଜନା କରୁଛି – କେବେ ଦିନେ ହୁଏତ, ସେ ଯୋଜନାଗୁଡ଼ିକ ଫଳବତୀ ହୋଇପାରେ ।"

ମନର ସନ୍ଦେହ ପୂରା ଦୂର ହେଲା ନାହିଁ, ତଥାପି ସେ କହିଲେ, "ଭଲ, ଭଲ, ତୁ ନିଶ୍ଚୟ ଭଲ ଯୋଜନା କିଛି କରିବୁ । ମୋ ପୁଅ ସୁନା ବୋଲି ମୋର ପୂରା ବିଶ୍ବାସ ବି ଅଛି ।" ବଡ଼ିଲା ପୁଅକୁ ଏମିତି କହିବା ଉଚିତ ବୋଲି ମିସେସ୍ କର୍ମ୍ମିଙ୍କୁ ଲାଗିଲା ।

ଫିଲିପ୍ ତାଙ୍କୁ ଉତ୍ତର ଦେଲା, "ଏଇ ଯେଉଁ ବିଶ୍ବାସ ଅଛି, ତୋ ମନରେ ସବୁବେଳେ ସେଇ ବିଶ୍ବାସ ଦୃଢ଼ ଭାବେ ରଖିଥା ।"

ସେ ଦିନର ସେଇ କଥା ମନରେ ପଡ଼ିବାରୁ ସେ ଆଜି ଭାବିଲେ, "ସେ ଦିନ ତା' ସ୍ବର ବାସ୍ତବିକ୍ ବଡ଼ ତୀକ୍ଷ୍ଣ ଜଣା ପଡ଼ୁଥିଲା – କିନ୍ତୁ କାହିଁକି ?"

ଏତିକି ବେଳେ ମିଷ୍ଟର୍ କର୍ମ୍ମି ବଡ଼ ପାଟିରେ ହାଇ ମାଇଲେ ଓ ଦୀର୍ଘ ନିଃଶ୍ବାସ ପକାଇ କହିଲେ, "ଆଉ, ଏକଥାଗୁଡ଼ାକ ! ଯାହା ହୋଇଚି, ହୋଇଚି । ଭଲେ ତ ଆଉ ତାହା ବଦଳିଯିବ ନାହିଁ । ମୁଁ ଭାବୁଛି, ଅସଲ କଥାଟା ଏଇ ଯେ, ଯାହା ହୋଇଥିଲେ ବି ଆମେ କୌଣସି ଅବସ୍ଥାରେ ପୂରା ସନ୍ତୁଷ୍ଟ ହୋଇ ନଥାନ୍ତେ । ଆଜି ପିଲାଙ୍କ କଥା ଭାବିଭାବି ଦୁଃଖ କରୁଥାଇଁ, ପିଲା ନଥିଲେ କ'ଣ ଦୁଃଖ କରି ନଥାନ୍ତେ ? ଚାଲ, ଶୋଇବାକୁ ଯିବା ।"

... ... ...

ତେଣେ, ବାଟରେ, ପିଲାମାନେ 'ମାଳ ଶୁକର' ହୋଟେଲରେ, ଖାଇ କରି ରାତି କଟାଇବାକୁ ଥାକଥାନ୍ତି । ଜୋଆନା ଆସିଲା ବେଳେ ଅବଶ୍ୟ କହିଥିଲେ, "ମୋର ଆଜି ରାତିରେ କିଛି ଖାଇବା ଏକାବେଳକେ ନିଷ୍ପ୍ରୟୋଜନ । ମୁଁ ଘରେ ଏଥର ଯେତେ ଖାଇଛି, ତାହା ମୋର କେତେ ମାସକୁ ଯଥେଷ୍ଟ ହୋଇଛି ବୋଲି ଏତେଗୁଡ଼ାଏ ସାରବାନ୍ ଖାଦ୍ୟ ପ୍ରସ୍ତୁତ କରି ବାଢ଼ୁଛି କାହିଁକି କହିଲ ଦେଖି । ଖୁଆଇ ଖୁଆଇ ସେ ବାପାଙ୍କୁ ମାରିଦେବାକୁ ବସିଛି ବୋଲି ମୋତେ ଜଣାପଡ଼ୁଛି ।"

ଖାଇବାକୁ କାହାର ସେମିତି ଇଚ୍ଛା ନଥିଲେ ବି ସେମାନେ ହୋଟେଲରେ ରହିଲେ, କାରଣ ଏତେ ବାଟ ସିଧା ମଠରେ ଚଳେଇବାକୁ କଷ୍ଟ ହୋଇଥାନ୍ତା ।

ଫିଲିପ୍ ଜୋଆନାଙ୍କ କଥା ଶୁଣି କହିଲେ, "ବାପା ତ ଅଦ୍ୟାପି ଖୁବ୍ ଟଗରା ଅଛନ୍ତି । ତାଙ୍କ କଥା ଯାହା ହେଉ, ତୁ, ଜୋ, ଏଥର ଘରେ ଖୁବ୍ ଚଳେଇଛୁ, ମାନିବାକୁ ହେବ ।"

ଜୋଆନା ସଂକ୍ଷେପରେ ଉତ୍ତର ଦେଲେ, "ନ ଖାଇଲେ ମା' ଭାରି ମନଦୁଃଖ କରେ । ତା' ମନ ଦୁଃଖ ନହେଉ, ଏଥି ପାଇଁ ମୁଁ ସବୁ କିଛି କରିପାରେ ।"

ଆନଙ୍କୁ ଛାଡ଼ି ଆଉ ସମସ୍ତେ ଖୁବ୍ ହସିଲେ, ଆନ ଟିକିଏ ମୁରୁକି ହସିଲେ ମାତ୍ର । ଜୋଆନା ଟିକିଏ ଚିଡ଼ିଯାଇ କହିଲେ, "ମୁଁ ଯାହା କହିଲି, ତାହାହିଁ ମୋର ମନର କଥା ।"

ଟିମଥି କହିଲେ, "ଖୁବ୍ ମନର କଥା କହୁଛ, ଥାଉ ଥାଉ । ବର୍ତ୍ତମାନ ସବୁ ଶାନ୍ତ କରି ମଠରରୁ ଓହ୍ଲାଅ ଭଲା । ତୁମର ମନେ ଅଛି ବୋଧ ହୁଏ, ବାପ ଘରେ ତୁମେ ଖାଲି ସର ଓ ଗରମ ବିସ୍କୁଟ୍‌ର କାଦୁଅରେ ଲଟର ପଟର ହେଉଥିଲ ।"

ସମସ୍ତେ ଗାଡ଼ିରୁ ଓହ୍ଲେଇଲେ । ଭଲ ବି ହେଲା, ଟିକିଏ ଆରାମ କରି ବାକୁ ମିଳିଲା । ଧୁଆଧୋଇ ହୋଇ ସମସ୍ତେ ବସିଲେ, ହଟଗୋଳ ନଥିବା ଭୋଜନାଳୟରେ । ଖାଦ୍ୟ ସାମଗ୍ରୀର ତାଲିକା ଦେଖି ଜୋଆନାଙ୍କର ଖାଇବାକୁ ଆଗ୍ରହ ହେଲା । ଯାହାହେଉ, ସେ ଆଗ୍ରହ ଦାବିଦେଇ,ଜୋଆନା ଖାଲି ଟିକିଏ ମାଂସ ଝୋଳ ଓ ପିଅର୍ ଫଳର ସିଲୁକା ବରାଦ କଲେ ।

ଟିମଥି ଆଖି ମିଟିମିଟି କରି ଟିପ୍ପଣୀ କଲେ, "ଯାହାହେଉ, ବିବେକର ତାଡ଼ନା ମାନିବାରୁ ଆତ୍ମସନ୍ତୋଷ ଆସୁଥିବ ନିଶ୍ଚୟ ? ମୋର କିନ୍ତୁ ବିବେକ ହୋଇ ଲେଶମାତ୍ର ନାହିଁ । ମୁଁ ଖାଇବି ବିଧିମୁତାବକ୍ ଖାନା—ମୋତେ ଗୋ ମାଂସର କଟ୍‌ଲେଟ୍ ଓ ଛତୁତରକାରି ଦିଅ ।"

ଛନଛନ ଲଗାଏତ ଏକାଠି ରହିଥିବାରୁ ସେମାନଙ୍କର ଗପ ସବୁ ସରିଯାଇଥିଲା, ତେଣୁ କେହି ବିଶେଷ କିଛି କଥାବାର୍ତ୍ତା ନକରିହିଁ ଖାଇ

ବସିଲେ; କେବଳ ଟିମ୍ଥି ଓ ହବାର୍ଟଙ୍କର କଳ୍ପିତ ଚିକିତ୍ସାଳୟ ବିଷୟରେ ଟିକିଏ ଆଲୋଚନା ଚାଲିଥାଏ ।

ଟିମ୍ଥି କହିଲେ, "ମୁଁ କହୁଛି, ବାର୍ଟ, ତୁମେ ଅନନ୍ତ କାଳ ଯାଏଁ ଲାଗିଥିବା ଏ ଟେନ୍‌ଟରୁ ବାହାରିଲେ, ଚାଲ ଆମର ମୋର ଗୋଟିଏ ଚିକିତ୍ସାଳୟ ଖୋଲିବା – ତା'ର ନାମ ହେବ 'ଡକ୍ଟର ଆଲବ୍ରିଜ୍ ଓ ଡକ୍ଟର୍ କର୍ଣ୍ଣି'—ତୁମେ ଔଷଧ ବ୍ୟବସ୍ଥା କରିବ ଓ ମୁଁ କରିବି ମନ-ସ୍ତାତ୍ତ୍ୱିକ ଚିକିତ୍ସା ।"

ହବାର୍ଟ ନୈରାଶ୍ୟରେ କହିଲେ, "ସେଥିପାଇଁ ତ ଗୁଡ଼ାଏ ଟଙ୍କା ଦରକାର"! ହବାର୍ଟ ମୋଟାସୋଟା ହୋଇ ସୁନ୍ଦର ଯୁବକ; ହାତ ଦୁଇଟି ମୋଟା ଓ ଚ୍ଯାପ୍ଟା ହେଲେ ହେଁ ଆଙ୍ଗୁଠିଗୁଡ଼ିକ କାର୍ଯ୍ୟରେ ଚଞ୍ଚଳ, ପ୍ରତ୍ୟେକ କାର୍ଯ୍ୟରେ ସେ ଖୁବ୍ ଯତ୍ନ ନଅନ୍ତି ଓ ଖାଟନ୍ତି । ଏପରିକି, ଖାଦ୍ୟ ତାଲିକାଟା ହାତରେ ଧରି ନିବିଷ୍ଟ ଭାବରେ ସବୁ ଜିନିଷର ମୂଲ୍ୟ ଓ ଉପାଦେୟତା ଓ ସ୍ୱାଦ କଳନା କରିବାରେ ସେ ବହୁତ ସମୟ ନେଉଥାନ୍ତି । ତାହା ଦେଖି ବିରକ୍ତିରେ ଆନ କହିଲେ, "ଟିକିଏ ତରତର ହୁଅ, ବାର୍ଟ ! ତୁମେ ଯେମିତି ଆରମ୍ଭ କଲଣି, ଖାଦ୍ୟସାମଗ୍ରୀ ଠିକ୍ କରି, ଖାଇ ସାରି ଉଠିଲା ବେଳକୁ ଅଧରାତି ହୋଇଯିବ । ମୋତେ ଭାରି ହାଲିଆ ଲାଗିଲଣି ।" ବାର୍ଟ କିନ୍ତୁ ଖାଦ୍ୟତାଲିକାରୁ ସାମଗ୍ରୀ ବାଛିବାରେ ସମୟ ନେଲେ କଣ ହେଲା, ସିଦ୍ଧାନ୍ତ କରି ସାରିବା ପରେ ପଟା ପଟ୍ ବରାଦ କରି ଦେଲେ ମୂଳରୁ ଶେଷ ଯାଏଁ—ଆରମ୍ଭରେ ଖାଇବା ସୁରୁଆଠାରୁ ଶେଷରେ ଖାଇବା ଖିରି ପର୍ଯ୍ୟନ୍ତ । ଆଖିରି, ଆନଙ୍କୁ ହିଁ ଲାଗିଲା ବେଶୀ ସମୟ – ଆଗ ତାଲିକାରୁ ଗୋଟାଏ ସାମଗ୍ରୀ ବାଛି, ସାଙ୍ଗେ ସାଙ୍ଗେ ତାହିଁକି ମନ ନହେବାରୁ ବଦଳାଉ ବଦଳାଉ— "ନା,ନା, କହିଲି ପିନା, ମୋର ସେ ସରପଡ଼ିଥିବା ସୁରୁଆ ଦରକାର ନାହିଁ"—ପୁଣି, 'ଖାଲି ବୁଲନ୍ ଦିଅ – ନା, ନା, ଫଳ ପାଚେଡ୍ ନେବି— ଓଃ, କ'ଣ ଖାଇବି କିଛି ଠିକ୍ କରିପାରୁନାହିଁ ।"

ହବାର୍ଟ କିଛି କହୁ ନଥାନ୍ତି; ତାଙ୍କ ମୁହଁରୁ ଜଣା ପଡ଼ୁଥାଏ, ଆନଙ୍କର ଏ ବାଉଳାପଣ ତାଙ୍କର ଦେହସୁହା ହୋଇ ସାରିଲାଣି—ସେ ଏଥିରେ ବିବ୍ରତ ନହୋଇ ଅନ୍ୟ ବିଷୟରେ ଚିନ୍ତା ଚଳାଇବାକୁ ମନ ଟାଣ କରି ସାରିଥାନ୍ତି ।

ଫିଲିପ୍ ଆନଙ୍କୁ କହିଲେ, "ଇଂରେଜ ମହିଳା ମହୋଦୟା, ପାଉଁରୁଟି ଓ ଘିଅ ଆପଣଙ୍କ ପକ୍ଷେ ଉତ୍କୃଷ୍ଟ ଖାଦ୍ୟ ।"

ଆନ କହିଲେ, "ହଁ, ସେଇଆ ହେଉ । ତା ସାଙ୍ଗକୁ ମେଣ୍ଢା ମାଉଁସ କିଛି ।"

ହବାର୍ଟ ସେଇ ଚିକିତ୍ସାଳୟ ବିଷୟ ଚିନ୍ତା କରୁଥାନ୍ତି । ସେ ଟିମଥିଙ୍କୁ କହିଲେ, "ଚିକିତ୍ସାଳୟ ପାଇଁ ମୂଳଧନ କାହିଁ ପାଇବା, ମୋତେ ଦିଶୁ ନାହିଁ ।"

ଟିମଥି କହିଲେ, "ମୋ ବାପା କିଛି ଦେଇ ପାରନ୍ତି । ତୁମ ବାପାଙ୍କ କଥା କ'ଣ ?"

ହବାର୍ଟ କହିଲେ, "ତାଙ୍କ ବିଷୟରେ ମୁଁ କିଛି କହି ପାରିବି-ନାହିଁ ।" ଏତିକି ବେଳକୁ ତାଙ୍କ ସୁରୁଆ ଆସିଲା ; ସେ ନିରାଲମ୍ବ ଭାବେ ଚାମଚ ଧରିଲେ ।

ଜୋଆନା ନିଷ୍କରୁଣ ଭାବେ କହିଲେ, "ବାପାଙ୍କ ପାଖେ ପଇସା ନଷ୍ଟପ୍ରାୟ ଥିବ ବୋଲି ମୁଁ ବିଚାରୁଛି । ଏବେ ତ ଆଉ ତାଙ୍କ ଦୁଇଜଣଙ୍କ ବ୍ୟତୀତ ଆଉ କାହା ପାଇଁ ତାଙ୍କୁ ମୁଣ୍ଡ ଘୂରାଇବାକୁ ପଡ଼ୁନାହିଁ । ହବାର୍ଟଙ୍କ ଆଡ଼କୁ ବୁଲି ସେ ପଚାରିଲେ, "ବାର୍ଟ, ବାପାଙ୍କୁ ଦେଖି କ'ଣ ବିଚାରୁଛ ? ସେ ସୁସ୍ଥ ଜଣା ଯାଉଛନ୍ତି ଠିକ ?"

ହବାର୍ଟ ଜଗି ଜଗି ଉତ୍ତର ଦେଲେ, ସାମାନ୍ୟ ରକ୍ତ ଚାପ ଥିଲେ ଥିବ ।"

ଫିଲିପ୍ କହିଲେ, "ସେ ତ ସବୁ ଦିନେ ଯେମିତି ଏବେ ବି ସେଇପରି ଦିଶୁଛନ୍ତି । ମୁଁ ବିଚାରୁଛି, ସେ ବେଶ୍ ତାଜା ଅଛନ୍ତି ।"

ସମସ୍ତେ ଖାଇବାରେ ଲାଗି କିଛି ସମୟ ତୁନି ରହିଲେ । ତା' ପରେ ହବାର୍ଟ ତାଙ୍କ ଗୋମାଂସ କବାବ୍‌ରୁ ମୁହଁ ଟେକି କହିଲେ, "ମୁଁ ବିଚାରୁଛି, ବାପାଙ୍କୁ ଏଥିପାଇଁ କିଛି ମାଗିବା ଠିକ୍ ହେବ ନାହିଁ । ତାଙ୍କ ପାଖେ ଟଙ୍କା ଥାଉ ପଛେ, ମୂଳରୁ ଶେଷ ଯାଏ ସେ ଦୁହେଁ ମୋ ପିଛା ବହୁତ ଖର୍ଚ୍ଚ କରି ସାରିଲେଣି ।"

ଆନ ଶେଷ ନିଷ୍ପତ୍ତି କଲା ପରି କହିଲେ, "ତାଙ୍କୁ ଏଥିପାଇଁ କିଛି ମାଗିବା ମୋର ଇଚ୍ଛା ନୁହେଁ, ଏବେ ତାଙ୍କଠାରୁ ଯେଉଁ ଅଳ୍ପ ଟଙ୍କାତକ ଆଣିବାକୁ ପଡ଼ୁଛି – ତାହା ମୋତେ ଆଦୌ ସୁଖ ଲାଗୁନାହିଁ ।"

ହଠାତ୍ ଫିଲିପ୍ କହି ଉଠିଲେ, "ତୁମେ ଠିକ୍ କହୁଛ । ମୁଁ ନିଜେ ତାଙ୍କୁ ହାତ ପତେଇ ରହି ରହି ବିରକ୍ତ ହୋଇ ପଡ଼ିଲି । ତାଙ୍କୁ ଚାହିଁଲେ ମୋର ମନେହୁଏ, ସେ ସବୁବେଳେ ବିଗିଡ଼ୁଥାନ୍ତି, "ଧେତ୍ ! ଏଇମାନଙ୍କ ଯୋଗୁଁ ମୁଁ ବୋଧହୁଏ କେବେହେଁ ଚଇସାଟିଏ ସଞ୍ଚିପାରିବି ନାହିଁ ।"

ଜୋଆନା କହିଲେ, "ମୋର ମତ, ବାପ ମା ନିଜ ପିଲାଙ୍କପାଇଁ ଖର୍ଚ୍ଚ କରିବାରେ କୁଣ୍ଠିତ ହେବା ଉଚିତ ନୁହେଁ ।"

ଟିମଥି ସାଙ୍ଗେ ସାଙ୍ଗେ ପ୍ରତିବାଦ କଲେ, "ଆମେ ତ ଆଉ ଆଜଯାଏଁ ପିଲା ହୋଇ ରହିଥାଇଁ ବୋଲି କହି ହେବନାହିଁ ।" ତା'ପରେ ତାଙ୍କର ସ୍ୱାଭାବିକ ଭାବନାମଗ୍ନ ଢଙ୍ଗରେ ସେ କହିଲେ, "ଗୋଟାଏ ପିଢ଼ିର ପରପିଢ଼ି ପ୍ରତି ଏ ମମତା ବଡ଼ ବିଚିତ୍ର କଥା । ଏ ମମତା ମୂଳରେ କୋଉ ସ୍ୱାର୍ଥ ଅଛି ? ନିଜ ଜୀବନର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ନିଜର ସମସ୍ତ ଶକ୍ତି ବ୍ୟୟ ନକରିବି କିଆଁ ? ତା ନକରି ଜଣେ ବ୍ୟକ୍ତି ବୟଃପ୍ରାପ୍ତ ହେବା ମାତ୍ରେ ପ୍ରୟୋଜନ ହେଉଛି, ଅନନ୍ତ ମାନବ ଶୃଙ୍ଖଳରେ ଆଉ ଗୋଟିଏ ପଗ ତିଆରି କରି ଯୋଡ଼ି ଦେବାକୁ—ସତେ ଯେପରି ମଣିଷର ଦରକାର, ଗୋଟିଏ ହାତ ଅତୀତକୁ ବଢ଼ାଇ ଆରହାତରେ ଭବିଷ୍ୟତ୍‌କୁ ଧରି ରଖିବାକୁ ।"

ଟିମଥି ଜଣେ ଅଦ୍ଭୁତ ରକମର ଲୋକ । ସମସ୍ତେ ତାଙ୍କର ଆଡ଼କୁ ଚାହିଁ ରହି ତାଙ୍କର କଥା ଶୁଣୁଥାନ୍ତି । ଟିମଥିଙ୍କ କଥା ସରିଲା ପରେ ହବାର୍ଟ୍ ଆନିଙ୍କ ଆଡ଼କୁ ଚାହିଁଲେ ଓ ଆନି, ମୁଣ୍ଡ ହୁଙ୍କାରିବାରେ ସେ ନ ବିଗିଡ଼ି କହିଲାପରି କହିଲେ, "ଆମର ତ ସେଥିରୁ ଗୋଟିଏ ପିଲା ହେବାର ଅଛି ।"

ଜୋଆନା ଦୋଷ ଦେଇ କହିଲେ, "ଆନି ! ତୁମେ ତ ଆମକୁ ଏକଥା କହିନାହଁ !"

ଆନି କହିଲେ, "କହି ହେବାକୁ ସାହସ ହେଲାନାହିଁ—ବିଶେଷ କରି ଶଶୁରଙ୍କ ଘରେ । ବାର୍ଟ୍ ଏପର୍ଯ୍ୟନ୍ତ ରୋଜଗାର କରିନାହାନ୍ତି—ଏପରି ସ୍ଥଳେ ସେ ତ ଦୁଃଖର କଥା । କିନ୍ତୁ କରିବୁଁ କ'ଣ ? ହେଲ ତ ଗଲା—କାହା ହାତର କଥା ।"

ଜୋଆନା ଚିତ୍କାର କଲେ, "ଏଥିପାଇଁ ମନଦୁଃଖ କରୁନାହଁ ତ ?"

ଆନଙ୍କର ପାତଳା ଇଂରେଜ ଚମଡ଼ା ଲାଜରେ ରଙ୍ଗ ପଡ଼ିଗଲା ; ସେ ମୁଣ୍ଡ ହଲାଇ ଦୁଃଖିତ ନୁହନ୍ତି ବୋଲି ଜଣାଇଦେଲେ ।

ଜୋଆନା ଅଭିଯୋଗ କଲେ, "ଟିମଥି ! ମୁଁ ଆଉ ଗୋଟିଏ ମାତ୍ର ବର୍ଷ ଅପେକ୍ଷା କରିବି । ତା' ପରେ ଗୋଟିଏ ପୋଷିଆଁ ପିଲା ଖୋଜି ନେବାକୁ ହେବ ।"

ଟିମଥି କହିଲେ, "ଏଥର ବୁଝିଲ, ମୁଁ କ'ଣ କହୁଥିଲି ? ପୂର୍ବ ପିଢ଼ିର ବେଡ଼ି ଭିତରୁ ମୁକ୍ତି ପାଇବା ସାଙ୍ଗେ ସାଙ୍ଗେ ତୁମର ମନ, ନିଜକୁ କେନ୍ଦ୍ର କରି ପୁଣି ଗୋଟିଏ ବେଡ଼ି ନିଜ ଚାରିପାଖେ ଘେରେଇବା ।" ହିବାର୍ଟ୍ ଓ ଆନଙ୍କୁ ଚାହିଁ ସେ ତା'ପରେ କହିଲେ, "ଆଚ୍ଛା, ପିଲେ, କହିଲ ଦେଖି, ବର୍ତ୍ତମାନ ତୁମେମାନେ ନିଜ ସୁଖସ୍ୱାଚ୍ଛନ୍ଦ୍ୟ କଥା ଭାବୁଛ, ନା ସମସ୍ତ ଚିନ୍ତା ଗର୍ଭଗତ ସନ୍ତାନ ଉପରେ ଢାଳି ଦେଇଛ ?"

ସେ ଦୁହେଁ ସାଙ୍ଗେ ସାଙ୍ଗେ କିଛି ଉତ୍ତର ନଦେଇ, ପରସ୍ପର ଆଡ଼କୁ ଚୁହାଁଚୁହିଁ ହେଲେ, ମନକୁ ମନ ଭାବିହେଲେ । ତା'ପରେ ଆନ କହିଲେ, "ବାସ୍ତବରେ ମୁଁ କିଛି ଭାବୁନାହିଁ—ତା' କଥା ନୁହେଁ କି ଆମକଥା ନୁହେ । ମୋ'ମନରେ ଗୋଟାଏ ଏଇ ଅଦ୍ଭୁତ ଭାବ ଜାତ ହୋଇଛି ଯେ, ମୁଁ ଜୀବନର ସ୍ୱାଭାବିକ ଗତିରେ ଜୀବନର ସାର୍ଥକତା ଦିଗରେ ଅଗ୍ରସର ହେଉଛି ମାତ୍ର—ନିଜକୁ କେନ୍ଦ୍ର କରି ଏପରି ଭାବୁଥିବାରୁ ଏଭଳି ଚିନ୍ତା ପୂରା ସ୍ୱାର୍ଥପର ବୋଲି ମୁଁ ସ୍ୱୀକାର କରୁଛି । ତୁମେ ବୋଧହୁଏ ସେହିପରି ଭାବୁଛ, ବାର୍ଟ୍ ?"

ଖୁବ୍ ବୁଝି ବିଚାରି କହୁଥିଲା ଭଳି ଆସ୍ତେ ଆସ୍ତେ ବାର୍ଟ୍ କହିଲେ, "ମୂଳତଃ, ମୁଁ ମଧ୍ୟ ସେହିପରି ଭାବୁଛି । ତେବେ, ତା' ସାଙ୍ଗେ ସାଙ୍ଗେ ପିଲା ପାଇଁ ମଧ୍ୟ ଗୁଡ଼ାଏ ଭାବିବାକୁ ହେଉଛି—ସେ କିଭଳି ଶିକ୍ଷା ପାଇବ, କିମିତି ଚଳିବ ଇତ୍ୟାଦି । ତା'ପାଇଁ ଖାଟି ଖାଟି କର୍ମୀ ହେବାକୁ ପ୍ରସ୍ତୁତ ହେଉଛି ।"

ଜୋଆନା କହିଲେ, "ସେ କଥା ସତ । ଆଜିକାଲି ସମୟରେ ପିଲାର ବାପମା'ଙ୍କୁ ବହୁ ତ୍ୟାଗ ସ୍ୱୀକାର କରିବାକୁ ହେବ—ମୁଁ ମନେ କରୁଛି, ଆମ ବାପ ମା ଯେତେ ତ୍ୟାଗ ସ୍ୱୀକାର କରିଥିଲେ ତାହିଁରୁ ତେଣି, ତେଣି ବେଶୀ । ଗୋଟିଏ କାରଣ ଦେଖାଯାଉ—ମୋ'ର ବିଶ୍ୱାସ, ଆମ

ମା'ବାପ ଯେଉଁ ଘରେ ରହୁଛନ୍ତି, ପିଲା ଜନ୍ମ ନ ହୋଇଥିଲେ ବି ସେ ସେଇଠାରେ ଏଇପରି ରହିଥାନ୍ତେ । ସେମାନେ ଆହୁରି ସୁଖସ୍ୱାଚ୍ଛନ୍ଦ୍ୟ ଆଶାରେ ଆଜି କୌଣସିଠାରେ ଯାଇ ରହିବାକୁ ବାହାରିଥାନ୍ତେ ବୋଲି ମୋର ମନେ ହେଉ ନାହିଁ—ନା, କଣ ? କିନ୍ତୁ ଏ ଯୁଗରେ, ସେଭଳି ଘରେ ଜୀବନ କଟାଇବାକୁ—? ପ୍ରଥମତଃ, ସେ ଗେଞ୍ଜାଘରେ ପିଲାଟିଏ ଧରି ଚଳିହେବ କିମିତି କହିଲ ଦେଖି, ଆନ ?"

ଆନ କହିଲେ, "କୌଣସି ମତେ ଚଳାଇ ନେବାକୁ ହେବ ।"

ଫିଲିପ୍ ହଠାତ୍ ହସି ପକାଇଲେ ।

ସେ କହିଲେ, "ବେଶ୍, ବେଶ୍ ! ଆରେ, କୋଡ଼ପୋଛା ପିଲା ହୋଇଥିବାରୁ ତୁମମାନଙ୍କଠାରୁ ଏ ବିଷୟରେ ମୁଁ ଅଧିକ ଶୁଣିଛି । 'କୋନମତେ ଚଳାଇନେବା'—ଏକଥା ମା'ଙ୍କଠାରୁ ମୁଁ ଥରେ ଶୁଣିଲେ, ଅନୁମାନ କରନ୍ତୁ, ଜୋଆନା, ତୋ' ପାଇଁ ଓ ବାନ୍ଦ୍ ପାଇଁ ମା' ଲକ୍ଷେ ଥର ଏଇପରି କହିଥିବେ । ସବୁବେଳେ ମା'ବାପା ଦୁହିଙ୍କ ମୁହଁରେ ଏଇ କଥା—'କୌଣସିମତେ ଚଳାଇନେବା ।' ମୁଁ ତ ସେମାନଙ୍କ ଢଙ୍ଗ ଦେଖି ବାହାରେ, ତାଙ୍କୁ ମୋର ଖୋରାକ ପାଇଁ ଖର୍ଚ୍ଚ କରିବାକୁ ନ ପଡ଼ନ୍ତା ହେଲେ ! ଅବଶ୍ୟ, ମୋର ଏ ବିଷୟରେ ଲଗା ନାହିଁ କି ପଢ଼ା ନାହିଁ ; ତଥାପି—" ଫିଲିପ୍ ସେମାନଙ୍କ ଆଡ଼କୁ, ମୁହଁରେ ହସ ଉକୁଟାଇ ଉପସଂହାର କଲେ, "—ମୋର ଏତିକି ମାତ୍ର କହିବାର କଥା ଯେ, ତୁମମାନଙ୍କ ଭିତରୁ କେହି ଏ ବିଷୟରେ କୌଣସି ନୂତନ ତଥ୍ୟ ଉଦ୍‌ଘାଟନ କରୁନାହଁ ।"

ଟିମଥି କହିଲେ, "କ୍ଷାନ୍ତ ହୁଅ, ଯୁବକବର ! ଆମର ଏତିକିମାତ୍ର କହିବାର କଥା ଯେ, ଯେଉଁ ତତ୍ତ୍ୱର ବିଷୟ ବୁଝିଛ ସେ ବିଷୟରେ ତୁମର ତିଳେ ମାତ୍ର ବାସ୍ତବ ଜ୍ଞାନ ନାହିଁ ।"

ଫିଲିପ୍ କହିଲେ, "ଓହୋ ! କିଏ ଜାଣେ, ଏଇ ଗତାନୁଗତିକ ପ୍ରବୃତ୍ତି ମୋ'ମନରେ କେବେ ନା କେବେ ଉଙ୍କି ମାରି ପାରେ । କେବେ ନା କେବେ, ହୁଏତ, ମୋ'ର ବି ମନେହେବ, ମୋ ମଲାବେଳକୁ ମୋ'ର ଗୋଟିଏ କ୍ଷୁଦ୍ର ପ୍ରତିକୃତି ବଞ୍ଚିରହିବାର ବ୍ୟବସ୍ଥା କରି ନଯିବା ଘୋର ଲଜ୍ଜାର ବିଷୟ ।"

ସମସ୍ତେ ଫିଲିପ୍‌କୁ ବଦ୍ଧରୂପ କରି ଏଣୁତେଣୁ ଅନେକ କଥା କହିଲେ —ସମସ୍ତଙ୍କ ମୁହଁରେ ଏକ ଘୋଷା, ଭବିଷ୍ୟତ୍ ପାଇଁ ପ୍ରସ୍ତୁତ ନରଖି ସେ ଇହଧାମ ତ୍ୟାଗ କରିବା ହିଁ ଜଗତ୍ ପକ୍ଷରେ ମଙ୍ଗଳ ।

ଗମ୍ଭୀର ସ୍ୱରରେ, କିନ୍ତୁ ଆଖି ମିଟ୍‌ମିଟ୍ କରି ହବାର୍ଟ କହିଲେ· ''ତୋ'ପରି ଶ୍ୱାନଶାବକ ଗୋଟିକୁ ବି ସମ୍ଭାଳିବା ମୁଷ୍କିଲ୍ ।''

ଆନ ଗୁଣୁଗୁଣୁ କରି କହିଲେ, "ବାସ୍ତବିକ୍ ।"

ଜୋଆନା ଯୋଗଦେଲେ, ''ଏଭଳି ଗୋଟିଏ ପ୍ରାଣୀ ବି ପ୍ରୟୋଜନାତିରିକ୍ତ ।"

ଟିମଥି ଫିଲିପ୍ ପିଠିଆ ବାହାରି ଆଶ୍ୱାସନା ଦେଇସାରି କହିଲେ, "ଧୀର ହୁଅ, ଫିଲ୍, ଭୟର କାରଣ ନାହିଁ ! ତୁମକୁ ତୁମ ଜୀବନ ନିର୍ଭୟରେ ସାଙ୍ଗ କରିବାକୁ ଦେବୁଁ ।"

ଫିଲିପ୍ ରେଡ଼ିଓରେ ଯେପରି ସ୍ୱର କରି କହନ୍ତି ତାହାରି ପରାକାଷ୍ଠା ଦେଖାଇ ଆରମ୍ଭ କଲେ, "ଭଦ୍ରମହିଳା ଓ ଭଦ୍ରମହୋଦୟଗଣ !"

ହଠାତ୍ ହୋଟେଲ୍‌ର ପରିଚାଳକ ଧାଇଁ ଆସି ପଚାରିଲା, "ଆଜ୍ଞା ! ମୋତେ ଡାକିଲେ କି ? କ'ଣ ଦରକାର ।"

ଫିଲିପ୍ କାତର ସ୍ୱରରେ ନିବେଦନ କଲେ, "ମାତ୍ର ଏତିକି ! ଜୀଇ ରହିବା ଓ ବଂଶ ବୃଦ୍ଧି କରିବା ।"

ତଟସ୍ଥ ହୋଇ ପରିଚାରକ କହି ପକାଇଲା, "ହଉ ଆଜ୍ଞା !" ହତବୁଦ୍ଧି ହେଲାପରି ଆଖି କରି ସେ ପଛେଇ ପଛେଇ ଘରୁ ବାହାରିଗଲା । ଦୁଆର ଆର ପାଖେ ସେ ହୋଟେଲ-ମାଲିକଙ୍କୁ କହିବାର ଶୁଣାଗଲା— ପେଟେ ପେଟେ ପିଇଛନ୍ତି—ସାଥିରେ ମାଲପାଣି ନିଜେ ଆଣିଥିଲେ ନିଶ୍ଚୟ !"

ଜୋଆନା ଫୁସ୍‌ଫୁସ୍ କରି କହିଲେ, "କେଡ଼େ ନିର୍ବୋଧ ତୁ ଫିଲିପ୍ ।" ମୁହଁଟାମାନ ଗମ୍ଭୀର କରିଥାନ୍ତି ସିନା' ଆଖିରୁ ପେଟଭିତରର ଆମୋଦ ଫୁଟି ପଡ଼ୁଥାଏ । ସେମାନଙ୍କ ନିଜ ନିଜ ଭିତରେ ବେଶ୍ ସମଝାସି । ଅନ୍ୟମାନେ ତାଙ୍କୁ ଠିକ୍ ବୁଝି ନପାରି ଭ୍ରାନ୍ତ ଧାରଣା କରୁଥିବାରୁ ସତେ ଯେମିତି ସେମାନେ ଖୁସୀ ।

ଶେଷରେ ଜୋଆନା ଉଠିଲେ; "ଟିମଥି ! ମୁଁ ଯାଉଛି ଉପର ମହଲାକୁ ଶୋଇବାକୁ । ତୁମର ଯାହା ଇଚ୍ଛା, ମୋର ସେଥିକି ଚିନ୍ତା ନାହିଁ ।"

ଆନ କହିଲେ, "ମୋ'ର ବି ସେଇ ମତ—ବିଦାୟ" ।

ପ୍ରତ୍ୟେକେ ବିଦାୟ ସମ୍ଭାଷଣ କଲେ—ଏପରି ସବୁଥିରେ ଯେ ନଜାଣିବା ଲୋକ କହିବ; ଏମାନଙ୍କର ପୂର୍ବରୁ ଦେଖାଚାହାଁ ନଥିଲା ।

... ... ... ...

ତତ୍ ପର ଦିନ ସକାଳେ—ନ'ଟା ବାଜିବାର କିଛି ସମୟ ପରେ ଜୋଆନାଙ୍କର ନିଦ ଭାଙ୍ଗିଲା ବେଳକୁ, ତାଙ୍କ କାନପାଖରେ ଟେଲିଫୋନ୍‌ର କର୍କଶ ଶବ୍ଦ ହେଉଥାଏ । ସେ ଟେଲିଫୋନ୍ ଚୁଙ୍ଗା ଟେକୁ ଟେକୁ ଆର ଖଟରେ ଶୋଇଥିବା ଟିମଥିଙ୍କୁ ଡାକ ଛାଡ଼ିଲେ, "ଟିମ୍ ! ଭୀଷଣ ଡେରି ହୋଇଗଲାଣି । ନ'ଟା ଯେ ବାଜି ସାରିଲାଣି···ହେଲୋ ! ହେଲୋ ! ମୁଁ ମିସେସ୍ ଏଲ୍‌ଡ୍ରିଜ୍ କହୁଛି ।···ଟିମଥି, ଉଠ ! କେତେବେଳୁଁ ଆମେ ଯାତ୍ରା ଆରମ୍ଭ କରିବା ଉଚିତ ଥିଲା···ଏଁ, କ'ଣ ହେଲା ? ମା ! ମା' କହୁଛ ? କ'ଣ ? ବାପା ! ଏଁ, କଣ ହେଲା ?···ଟିମଥି ଉଠ, ଉଠ ! ଘରେ କେଉଁଣେ ଦୁର୍ଘଟଣା ଘଟିଛି ?···ଏଁ, ବୋଉ ? ହଁ, ନିଶ୍ଚୟ—ସାଙ୍ଗେ ସାଙ୍ଗେ···ଯେତେ ଶୀଘ୍ର ପାରୁଁ ଆମେ ସମସ୍ତେ ଯାଇ···ନାଃ, ଏତେ-ବେଳେ ନିଶ୍ଚୟ ଜୋରରେ ଗାଡ଼ି ଚଳାଇବାକୁ ହେବ ।"

ଟେଲିଫୋନ୍ ଚୁଙ୍ଗାଟା ସେ ଧଡ଼୍ କିନା ଥୋଇଦେଲେ । ଟିମଥି ଖଡ଼୍‌କିନା ଖଟରୁ ଉଠିପଡ଼ିଲେ । ଜୋଆନା କହିଲେ, "ଟିମ୍ ! ଦୋକାନରେ ବାପା ନିଶୁଣିରୁ ଖସି ପଡ଼ିଛନ୍ତି !"

ଟିମଥି ଆଖି ମଳି ମଳି ଭାଲୁଚପି କହିଲେ, "ବଡ଼ସକାଳଟାରୁ ସେ ଦୋକାନରେ କରୁଥିଲେ କ'ଣ ମ ?"

ଜୋଆନା ସେତେବେଳକୁ ପୁଣି ଟେଲିଫୋନ୍ ଉଠାଉଥାନ୍ତି— "ମୁଁ ଟୋକା ଢ଼'ଟାକୁ ଡାକଉଁ । ଏତେବେଳେ ଆମ ଘରେ ସିନ୍ଦୁରି ଫାଟୁନାହିଁ ଗୋ ! ଢ଼'ପହର ହୋଇ ଗଲାଣି ।···କିଏ ବାର୍ଟ୍ ! ବାପା ଜଖମ୍ ହୋଇଛନ୍ତି— ଦୋକାନରେ ନିଶୁଣିରୁ ଖସି ପଡ଼ି—ହଁ, ସେ କଥା ସତ—ଏମିତି ଦିନେ ହେବ ବୋଲି ତ ସମସ୍ତେ ଆଶଂକା କରୁଥିଲେ ।

ଯାତ୍ରା ହେବାର ହେଇଗଲାଣି—ନିଶ୍ଚୟ, ପନ୍ଦର ମିନଟ୍ ଭିତରେ ଆମେ ବାହାରିବାକୁ ପ୍ରସ୍ତୁତ ହୋଇପିବୁ । ତୁ ଟିକଏ ଫିଲିପ୍‌କୁ ଡାକଦେବୁ । ଏଁ ।"

ଟିମଥି ଗାଧୁଆଘର ଭିତରେ ପଶିବା ସାଙ୍ଗେ ସାଙ୍ଗେ ବାହାରିଲେ; ସେ ବି ଗଲେ, ଅଇଲେ । ନୀରବରେ ଦୁହେଁ ଲୁଗାପଟା ପିନ୍ଧିଲେ—ଓ ପନ୍ଦର ମିନଟ୍‌ରେ ନୀରବରେ ସମସ୍ତେ ମଟର ଧଇଲେ ।

ଟିମଥି ଜୋଆନାଙ୍କୁ କହିଲେ, "ଏ ଝୋକ ? ପଛ ଆଡ଼କୁ ନଜର ରଖିଥା । ପୁଲିସ୍ ପିଚ୍ଛା ଧରିପାରେ । ମୁଁ ଜୋର୍‌ରେ ଗାଡ଼ି ଛୁଡ଼ିବି ! ଆଗରେ ମୁଁ ଆଖି ରଖିଛି, ପୁଲିସ୍ ଉପରେ ।"

ଆଗ ଗାଡ଼ିର ପଛପାଖେ କାଚ ବାଟେ ଜୋଆନା ଆନଙ୍କ ବିମର୍ଷ ମୁହଁ ଦେଖିଲେ—ସେ ବି ସତର୍କଭାବେ ସଡ଼କରେ ଆଖି ବୁଲଉ ଥାନ୍ତି, ପୁଲିସ୍ ଭୟରେ । ଫିଲିପ୍ ଥାନ୍ତି ସେଇ ଆଗ ଗାଡ଼ିରେ ।

ଫିଲିପ୍ ବାହାରିବା ବେଳେ କହିଥିଲେ, "ମୁଁ ଅନର୍ଥକ ଗାଡ଼ିଟାଏ ନେଇ କାହିଁକି ଖର୍ଚ୍ଚାନ୍ତ ହେବି । ମୋ ଧଚଡ଼ା ଗାଡ଼ିଟା ଏଇଠାରେ ପଡ଼ିଥାଉ; ଫେରିବା ବେଳେ ଏଇଠାରୁ ନେବି ।"

ଦ୍ରୁତ ଗତିରେ ଗାଡ଼ି ଦୁଇଟା ଧାଇଁଥାଏ । ଦୁଇପାଖେ ଗଛ ବୃକ୍ଷ, ଘରଦ୍ୱାର, ଓ ରାସ୍ତା କଡ଼ର ମାଂସରପ୍ ଓ ବଡ଼ା ଦୋକାନ ସବୁ ଏତେ ଜୋରରେ ପଛକୁ ଧାଇଁଥାନ୍ତି ଯେ ଠିକ୍ ବାରି ହେଉନଥାଏ ।

... ... ... ...

ଘରେ, ଦି-ଜଣିଆ ବଡ଼ ଖଟ ଉପରେ ମିଷ୍ଟର୍ କମ୍ପି ପଡ଼ିଥାନ୍ତି— ଅସ୍ପଷ୍ଟ ଭାବରେ କୁନ୍ଥାଉଥାନ୍ତି । ଏତେବେଳକୁ କେତୋଟା ବିଷୟରେ ତାଙ୍କର ସ୍ପଷ୍ଟ ଧାରଣା ହେବାକୁ ଆରମ୍ଭ କରୁଥାଏ—ପ୍ରଥମ କଥା, ସେ ଜାଣୁଥାନ୍ତି ଯେ, ମାଗି ତାଙ୍କ ହାତକୁ ଧରିଛନ୍ତି, ଆଉ, ସେ ଜାଣୁଥାନ୍ତି ଯେ, ନିଜ ଘରେ ନିଜ ଶେଯ ଉପରେ ସେ ଶୋଇଛନ୍ତି ।

ଗୁଁ ଗୁଁ ହୋଇ ଅସ୍ପଷ୍ଟଭାବେ ସେ କହିଲେ, "ଏତେବେଳେ— ଦୋକାନରେ—ରହିବା—ଉଚିତ ଥିଲା ।"

ଜଣେ କିଏ ତାଙ୍କ ଖଟ ଉପରକୁ ଲଇଁ ପଡ଼ି କହିଲେ, "ମିସେସ୍ କମ୍ପି ! ସେ ବୋଧହୁଏ ଅଜ୍ଞାନରେ ବାଉଳିରାଉଳି ହେଉଛନ୍ତି ।"

ମିଷ୍ଟର୍ ବିରକ୍ତି ପ୍ରକାଶ କରି କହିଲେ, "ଏ, ବେଃ— ବୁଡ଼୍‌ବକ୍ !"

ମିସେସ୍ କମ୍ପି କହିଲେ, "ଚେତା ହୋଇଆସୁଛି, ବୋଧ ହୁଏ।"

ପୁରା ଚେତା ହୋଇ ନଥାଏ । ଅନେକ ସମୟ ଯାଏ ଏତିକ ବ୍ୟଗତ ଆଉ କିଛି ସେ କହିଲେ ନାହିଁ । ତାଙ୍କ ମୁଣ୍ଡରୁ ଭୀଷଣ ଯନ୍ତ୍ରଣା, ଗୋଟାଏ ଲୁହା ଟୋପି ପରି, ଆବୋରି ରହିଥାଏ । କେତେ କଥା କହିବେ ବୋଲି ସେ ମନେ ମନେ ଭାବିବାକୁ ଚେଷ୍ଟା କରୁଥାନ୍ତି; କିନ୍ତୁ ଭାବନା ଆରମ୍ଭ ହେଉ ହେଉ ଲୀନ ହୋଇଯାଏ, କଥାରେ ପ୍ରକାଶ ହେବା ପର୍ଯ୍ୟନ୍ତ ଯାଇପାରେ ନାହିଁ । ତାଙ୍କୁ ଜଣାପଡ଼ୁଥାଏ, ସେ ଠାଏ କେଉଁଠି, ପାଣିରେ ବୁଡ଼ି ଯାଇଛନ୍ତି । ହଠାତ୍ ପୀଡ଼ା ବଢ଼ିଲା, ବାନ୍ତି ହୋଇଗଲା । ସେ ଅସ୍ଥିର ହେଲେ । ଆଖି ଖୋଲିବାକୁ ଚେଷ୍ଟା କଲେ, କିନ୍ତୁ ଖୋଲି ପାରିଲେ ନାହିଁ । ତା'ପରେ ସେ ଶୁଣି ପାରିଲେ, ତାଙ୍କ ପୁଅ ହର୍ବାର୍ଟ୍ ପରିଷ୍କାର ଗଳାରେ କହୁଛନ୍ତି, "ମୁଁ କିନ୍ତୁ ଏଭଳି ଟିକସ୍ରା ବ୍ୟବସ୍ଥା କରିବାକୁ ଏକାବେଳକେ ନାରାଜ । ମୋର ବିଶ୍ୱାସ, ଏଭଳି ବ୍ୟବସ୍ଥା କଲେ ଭଲ—"

ଲମ୍ବା ଲମ୍ବା ଶବ୍ଦ—ବୁଝିବା ଅସଂଭବ । କିନ୍ତୁ ବାର୍ଟ୍‌ର ସ୍ୱରରେ ଦୃଢ଼ତା ଲକ୍ଷ୍ୟ କରି ସେ ଆଶ୍ୱସ୍ତ ହେଲେ । ଯେତେହେଲେ, ମାଗି—ମାଇପିଟେ ନା; ମଣିଷର ନିର୍ଭର, ପୁଅଠାରେ—ମଣିଷର ମଣିଷଠାରେ ।

ସେ ଗୁଣୁ ଗୁଣୁ ହୋଇ କହିଲେ, "ବାର୍ଟ୍ ?"

"ହଁ ବାପା ! ମୁଁ ପରା ଏଠି ଠିଆ ହୋଇଛି !"—ଏ ନିଶ୍ଚୟ ବାର୍ଟ୍‌ର ସ୍ୱର !

ମିଷ୍ଟର୍ କମ୍ପି ମନେ ମନେ ବିଚାରିଲେ, ପାରିଲେ ଆଉ କିଛି କହିବେ । ହୁଏତ—ସମସ୍ତଙ୍କୁ କହିବେ ।—ମନ ହେଲା, ପାରିଲେ ବାର୍ଟ୍‌ର ହାତକୁ ଧରି ପକାନ୍ତେ—କିନ୍ତୁ ଏପରି କରିବା ବୋଧହୁଏ ଅତି ପିଲାଳିଆ କଥା ହେବ ।

ପୁଣି ସେ ଡାକିଲେ, "ବାର୍ଟ୍ !"

"ହଁ ବାପା, ମୁଁ ପରା ଏଇଠି ଅଛି । ମୁଁ କୁଆଡ଼େ ଯାଉନାହିଁ, ତୁମକୁ ଛାଡ଼ି ।"

"ନା, ଯା'ନା । ମୋତେ ଆଜ କାହା—" ସ୍ୱର ପରେ ଅନେକ ସମୟ ତୁନି ରହି, ପରେ କହିଲେ—"ହାତରେ ଛୁଉ—" ।

“ନା, ମୁଁ ତା’ କରିବି ନାହିଁ, ବାପା !” ସ୍ପେ ତ ବାର୍ଟର ସ୍ୱର !

ତେବେ ତ ସେ ଯାହା ଭାବୁଥିଲେ ସେତକ କହି ପକାଇଲେ— ହଉ, ପୁଅକୁ ତ କହିଲେ— ।

... ... ... ...

ଶେଷରେ ମିସେସ୍ କମ୍ପି ମିଷ୍ଟର୍ କମ୍ପିଙ୍କ ହାତ ଗୁଡ଼ିବାକୁ ରାଜି-ହେଲେ । ପ୍ରଥମେ ଯେତେବେଳେ ସେମାନେ ମିଷ୍ଟର୍ କମ୍ପିଙ୍କୁ ଟେକି ଟେକି ଘରକୁ ଆଣିଲେ, ସେତିକବେଳୁ ପ୍ରତିମିନଟ୍ ମିଷ୍ଟର୍ କମ୍ପି ପାର୍ଥି-କରୁଥାନ୍ତି, “ମାଗି, ସବୁବେଳେ ମୋ ପାଖରେ ଥା ।” ମିଷ୍ଟର୍ କମ୍ପି କେତେ ଯନ୍ତ୍ରଣା ଅନୁଭବ କରୁଛନ୍ତି, କେତେ ଦୂର ତାଙ୍କର ଚେତା ଅଛି—ଏ ବିଷୟରେ ଡାକ୍ତର ଭଲକରି କିଛି ଜାଣି ପାରୁ ନଥାନ୍ତି । ତଥାପି ସେ ତାଙ୍କ କାମରେ ଲାଗିଥାନ୍ତି ଓ ମିସେସ୍ କମ୍ପି ଟିକିଏ ହଲଚଲ ନହୋଇ ସ୍ଥିରଭାବେ ଶଯ୍ୟାପାଖେ ବସି ରହିଥାନ୍ତି । ଯାହାହେଉ ପିଲେ ବର୍ତ୍ତମାନ ଘର ମୁହାଁ ଛୁଟୁଛନ୍ତି । ଭଗବାନ କରନ୍ତୁ, ବାଟରେ ସେମାନଙ୍କର କିଛି ଦୁର୍ଘଟଣା ନହେଉ ! ସେ ଏଭଳି କାତର ହୋଇ ପିଲଙ୍କୁ ଫେରାଇ ଆଣି ନଥାନ୍ତେ । କିନ୍ତୁ ଡାକ୍ତର ଯେ ନିର୍ଭର ଦେଇ କିଛି କହି ପାରିଲେ ନାହିଁ—ତାଙ୍କ ବାପାର ଯଦି ଭଲ ମନ୍ଦ କିଛି ହୁଏ ? ପିଲେ ପାଖରେ ଥିବା ଉଚିତ । ଦୋକାନରେ ସେଇ ଦଦରା ପୁରୁଣା ଲସୁଣିହାରେ ନ ଚଢ଼ିବାକୁ ରବ୍‌ଙ୍କୁ ସେ କେତେ ମିନତି ନକରିଛନ୍ତି—ଦରକାର ଥାଲା କି ? ଯୋଡ଼ାଏ ଟୋକା ଦୋକାନରେ ଥାଉ ଥାଉ ସ୍ପୁ ଚଢ଼ିବା କି ଦରକାର—ତାଙ୍କ ନିଜ ପିଲା ଦୁହିଁଙ୍କ ଭିତରୁ କେହି ଜଣେ ଦୋକାନରେ ରହିବାକୁ ମନ କରିଥିଲେ, ହୁଏତ ରବ୍‌ଙ୍କର ଆଜି ଏ ଦୁର୍ଦ୍ଦଶା ହୋଇନଥାନ୍ତା । ଏତେବେଳେ ଆଉ ପିଲେ ଆସିଲେ କ’ଣ ହା କରି ପକେଇବେ ? ତାଙ୍କ ପାଇଁ ପୁଞ୍ଜି ସାଧିଦେବାକୁ ବି କେହି ନାହିଁ — ସେ ତ ରବର୍ଟ୍‌ଙ୍କ ପାଖରୁ ଦଣ୍ଡେ ଅନ୍ତର ହୋଇ ପାରିବେ ନାହିଁ— ପିଲଙ୍କ କଥା ବୁଝିବ କିଏ ? ମଣିଷ କମିତି ବେମାର ହୁଅନ୍ତି ଏ ବିଷୟରେ ଏମାନଙ୍କର ତ ବାସ୍ତବ ଜ୍ଞାନ ଆଦୌ ନାହିଁ । ଜୋଆନା ବଡ଼ ଯେ, ରୋଗୀ ଲୋକଙ୍କ ପାଖ ପଶିବାକୁ ତା’କୁ ଖରାପ ଲାଗେ !

ମିସେସ୍ କମ୍ବି ଏଇମିତ ଭାବୁଥିବାବେଳେ ବାର୍ଟ୍ ହଠାତ୍ ସେଇ ଘର ଭିତରକୁ ପଶି ଆସିଲେ । ଏମିତି ବେଶରେ ମିସେସ୍ କମ୍ବି ପୁଅକୁ କେବେ ଦେଖି ନଥିଲେ । ସେ ତ ଆଗ ତା'କୁ ଡାକ୍ତର ବୋଲି ଭାବିଥିଲେ, ପଛରେ ଆଖି ଟେକି ମୁହଁକୁ ଚାହିଁବାରୁ ଜାଣିଲେ, ନିଜ ପୁଅ ବୋଲି । ବାର୍ଟ୍ ପଦେ କହିଲେ ନାହିଁ କି ଟିକିଏ ହସିଲେ ନାହିଁ— ଖାଲି ମୁଣ୍ଡ ଟୁଙ୍ଗାରି ଦେଲେ । ତା ପରେ ସେ ଫୁସ୍‌ଫୁସ୍ କରି ତାଙ୍କ ଟାଁ ଡାକ୍ତରଙ୍କୁ କ'ଣ କ'ଣ କହିଲେ ।

''ଆପଣଙ୍କର ମତ କ'ଣ ? ମସ୍ତିଷ୍କର ରୋଗ ନା, ମାଡ଼ ବାଜି ମସ୍ତିଷ୍କ ସ୍ପନ୍ଦନ ହୋଇଛି ?

ଡକ୍ଟର୍ ଲେନ କହିଲେ, "ମୁଁ ଭାବୁଛି, ମାଡ଼ବାଜି ଏପରି ହୋଇଛି । "ଠିକ୍ ଏଇ ଘରେ, ଏଇ ଖଟରେ ଡକ୍ଟର ଲେନ, ବାର୍ଟ୍‌କୁ ଜନ୍ମ କରାଇଥିଲେ ।

ବାର୍ଟ୍ କହିଲେ, "ମୁଁ ଯଦି ଟିକିଏ ପରୀକ୍ଷା କରେ, ଆପଣଙ୍କର—"

"ନା, ନା, ଆପତ୍ତି କାହିଁକି କରିବି । ତୁମେ ପରୀକ୍ଷା କର ।"

ତା'ପରେ ବାର୍ଟ୍ ପରୀକ୍ଷା କରିବାକୁ ଆରମ୍ଭ କଲେ । ଏତିକି-ବେଳେ ମିସେସ୍ କମ୍ବିଙ୍କର ମନ ହେଲା କହନ୍ତେ, "ବାର୍ଟ୍ ! ସାବଧାନ ! ତୁ ପିଲା ଲୋକ ।" କିନ୍ତୁ କିଛି କହିଲେ ନାହିଁ, ଚୁପ୍ ରହିଲେ । ଏତିକି-ବେଳେ ଉବ୍ ଅସ୍ପଷ୍ଟ ସ୍ୱରେ ଡାକିଲେ—

"ବାର୍ଟ୍ !"

ବାର୍ଟ୍ କହିଲେ, "ହଁ, ବାପା ! ମୁଁ ପରା ଏଇଠି ଅଛି ।"

ମିସେସ୍ କମ୍ବି ଭାବିଲେ, "ପୁଅ ତ ଆଉ ବାଳୁତ ପିଲା ନୁହେଁ— ମଣିଷ ହୋଇଗଲାଣି—ଯାହା କରୁଛି ନିଶ୍ଚୟ ଜାଣି ବୁଝି କରୁଛି ।" ସେଇ ମୁହୂର୍ତ୍ତରେ ମିସେସ୍ କମ୍ବିଙ୍କର ସମସ୍ତ ଧୈର୍ଯ୍ୟ ନିଃଶେଷ ହେଲା ପରି ଲାଗିଲା, ତାଙ୍କୁ କାନ୍ଦ ମାଡ଼ିଲା । ଯଦି ଉବର୍ଟ୍‌ଙ୍କର କ'ଣ ହୁଏ, ତେବେ ତାଙ୍କର ବି ମରଣ ହେବା ଦରକାର । କେବଳ ସେଇ କାରଣରେ ସେ ଏକା-ବେଳକେ କମ୍ପୁଥାନ୍ତି ।

ବାର୍ଟିକୁ ଫୁସ୍ ଫୁସ୍ କରି ସେ କହିଲେ । "ସେଇ ଦାଦାଙ୍କ ପୁରୁଣା ଲଣ୍ଠନଟା ।"

ବାର୍ଟି କହିଲେ, "ହଁ, ମୁଁ ଶୁଣିଛି । ଏଥର, ବୋଉ, ତମେ ଯାଇ ଟିକିଏ ବିଶ୍ରାମ କର ।"

ମିସେସ୍ କମ୍ବି ମୁଣ୍ଡ ହଲାଇ କହିଲେ, "ହାତ ଧରି ଥା ବୋଲି ସିଏ ତାଙ୍କର ମନ ।"

"ମୁଁ ତାଙ୍କ ହାତକୁ ମୋ ହାତରେ ଧରିବି—ତାଙ୍କୁ କିଛି ଫରକ୍ ଜଣା ପଡ଼ିବ ନାହିଁ—ତୁମେ ଯା'ଅ !" ବାର୍ଟି କହିଲେ । ଆଗ ଯିବାକୁ ଭରସା ପାଉନଥିଲା, କିନ୍ତୁ ମିସେସ୍ କମ୍ବି ଦେଖିଲେ, ରବ୍ ହବାର୍ଟିର ହାତକୁ ଜାବୁଡ଼ି ଧରି ସନ୍ତୋଷ ହୋଇପରି ବିଶୁଛନ୍ତି ।

ତା'ପରେ ହବାର୍ଟ କମିଶକା ଗାଉନ୍ଦା ସ୍ୱରରେ—ସେ ସ୍ୱର ଶୁଣି ଡର ମାଡୁଥାଏ—ଡାକିଲେ, "ବାର୍ଟି !"

"ହଁ, ବାପା ! ମୁଁ ସିଏ ଏଇଠି ଅଛି । ମୁଁ ତୁମକୁ ଛାଡ଼ି କୁଆଡ଼େ ଯାଉନାହିଁ ।"—ବାର୍ଟି କହିଲେ ।

ଏହା ଶୁଣି ରବ୍‌ଙ୍କ ମୁହଁରେ ଶାନ୍ତଭାବ ଆସିବାର ମିସେସ୍ କମ୍ବି ଲକ୍ଷ୍ୟ କରି ଆଶ୍ୱସ୍ତ ହେଲେ; ଭାବିଲେ, ହଉ, ମିନିଟିଏ ଖଣ୍ଡେ ଯାଇ ବୁଲି ଆସିବେ ଘରେ ତ ଟିକିଏ ବୋଲି କିଛି ନାହିଁ ଖାଇବାକୁ । ଯିବା ପୂର୍ବରୁ ଆଉ ପଦେ ପଚାରିବାକୁ ମନ କରୁଥାନ୍ତି—କିନ୍ତୁ ତୁଣ୍ଡରୁ କଥା ବାହାରୁ ନଥାଏ । ବାର୍ଟି ତାଙ୍କ ଆଡ଼କୁ ଚାହିଁ କହିଲେ, "ବୋଉ, ଯାଅ—କିଛି ଭୟ ନାହିଁ । ମୁଁ ବିଚାରୁଛି—ତାଙ୍କର ଅବସ୍ଥା ଭଲ ଅଛି—ହେଲେ ହ' ଦିନ ଦୁଇତ ଟିକିଏ ବେଶୀ ଯନ୍ତ୍ରଣା ହେବ—କିନ୍ତୁ ତା' ପରେ ସେ ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇଯିବେ ।"

ବାର୍ଟି ତ ତାଙ୍କ ମନର କଥା ବୁଝି ପାରିଲା । ବାର୍ଟି ଉପରେ କେତେ ଆସ୍ଥା ରଖାଯାଇପାରେ ! ସେ ସେଇଠୁ ବାହାରିଗଲେ ଓ ଧୀରେ ସିଡ଼ିରେ ଓହ୍ଲାଇ ରୋଷେଇ ଘରକୁ ଗଲେ । ଅନ୍ୟ ପିଲେ ଗଲେ କୁଆଡ଼େ ? ସେମାନଙ୍କ ପାଇଁ କିଛି ଖାଦ୍ୟ ମଗାଇ ଆଣିବା ଯେ ତାଙ୍କର ପ୍ରଥମ କର୍ତ୍ତବ୍ୟ ! କିନ୍ତୁ ରୋଷେଇ ଘରେ ପଶି ସେ ଦେଖିଲେ, ହ'ଟା ଦ୍ୱାକ ଲୋକ ସେଇଠି କାମରେ ଲାଗିଛନ୍ତି । ଜୋଆନା ଚୁଲ୍ଲୀ ଉପରେ

କ'ଣ ଘାଣ୍ଟୁଛି; ଆନା ଟେବୁଲ ପାଖେ ବରଫ୍ ଗୁଣ୍ଡା କରୁଛି । ଟିମଥି ଓ ଫିଲପ୍ ସେତିକିବେଳେ ଗ୍ରୋଷେଇ ସରଞ୍ଜାମ ଧରି ଆସି ପହଞ୍ଚି ଫିଟାଫିଟି ଆରମ୍ଭ କଲେ । ଫିଲପ୍‌ର ଦୃଷ୍ଟି ତାଙ୍କ ଉପରେ ଆଗ ପଡ଼ିଲା ।

ସେ କହିଲା, "ଧେତ୍ । ତୁ ଏଠି ଆସି କ'ଣ କରୁଛୁ କହିଲୁ, ବୋଉ ! ତୁ' ତ ବାସି ମଡ଼ା ପରି ଦିଶିଲୁଣି ! ଏମିତି ଲଡ଼ବଡ଼ ହେଲେ ଆପେ ବେମାର ପଡ଼ିବୁ !"

ସାଙ୍ଗେ ସାଙ୍ଗେ ଜୋଆନା ତାଙ୍କୁ ଧରି ଗ୍ରୋଷେଇ ଘର ବାହାରକୁ ନେଇ ନେଇ କହିଲା, "ବୋଉ ମ ! ତମେ ଟିକଏ ଯାଇ ଶୋଇପଡ଼ । ମୁଁ ଆମ ସମସ୍ତଙ୍କ ପାଇଁ ବାହାର ଘର ସଜାଡ଼ି ଦେଇଛି । ତମେ ତ ଉପରେ କିଛି ଖାଇନାହଁ, ମୁଁ ଜାଣୁଛି । ଆନ ଏଇଲେ ତୁମ ପାଇଁ କିଛି ଟିକିଏ ଖାଇବାକୁ ନେଇ ପହଞ୍ଚିବ ।"

ପୁଣି ମିସେସ୍ କମ୍ବି ସିଡ଼ି ଚଢ଼ି ଆସ୍ତେ ଆସ୍ତେ ଉପର ମହଲାକୁ ଗଲେ—ଚେଷ୍ଟା କରି କାନ୍ଦ ଗ୍ରେକୁଥାନ୍ତି—କାନ୍ଦିଲେ, ପିଲେ— ।

ଜୋଆନା ତାଙ୍କ ଦେହରୁ ଲୁଗାପଟା କାଢ଼ି, ଶୋଇବା ଘାଘରା ତାଙ୍କ ମୁଣ୍ଡରେ ଗଳାଇ ଦେଉଥାଏ । ଶେଯ ଝଡ଼ାଝଡ଼ି ହୋଇ ସଫା ଚଦର ଉପରେ ପଡ଼ିଥାଏ; ତାଙ୍କ ଦରକାର ପ୍ରୟୋଜନ ଜିନିଷ ସବୁ ଶେଯ ପାଖ ଥାକରେ ଥୁଆ ହୋଇଥାଏ ।

ମିସେସ୍ କମ୍ବି କହିଲେ, "ଆଜି ସକାଳେ ଶେଯ ଝଡ଼ାଝଡ଼ି କରିବାକୁ ମୋତେ ଆଉ ବେଳ ମିଳି ନଥିଲା । ମତେ ତ ମନେ ହେଲା, ସେ ଘରୁ ବାହାରିଛନ୍ତି କି ନାହିଁ, ତାଙ୍କୁ ଟେକିଟାକି ଘରକୁ ଆଣିଲୁଁ—

ଜୋଆନା କହିଲେ, "ହଁ, ମ ! ସେକଥା ତମଠାରୁ ଶୁଣି— ହଉ, ସେକଥା ଏଥର ପାସୋରି ଦିଅ । ସବୁ ଠିକ୍ ହୋଇଯିବ । ବାପାଙ୍କର ଏଡ଼େ ସୁନ୍ଦର ସ୍ୱାସ୍ଥ୍ୟ—ସେ ଅତିଶୀଘ୍ର ଉଠି ବସିବେ ।"

ତାଙ୍କ ଝିଅ—ଏଇ ପରିବାର ଯୁବକଟି—ସବୁ କଥା ସଜଡ଼ା ସଜଡ଼ି କରି ଦେବାର ଦେଖି ମିସେସ୍ କମ୍ବିଙ୍କର ଅନିର୍ବଚନୀୟ ଆନନ୍ଦ ହେଉଥାଏ—ଝିଅ ଝରକା ମେଲେଇ ପରଦା ଟାଣି ଦେଲା—ତା' ହାତ ବାଜି ଘରଟିରେ କେଡ଼େ ନବପଲ୍ଲବର ଆଭା ଖେଳି ଯାଉଥାଏ—ତାଙ୍କର କେତେ ବଳ ଆସୁଥାଏ, ନିଶ୍ଚିନ୍ତ ଲାଗୁଥାଏ ! ସେ ଓ ରବର୍ଟ୍ ବାସ୍ତବିକ୍ ବୁଢ଼ା ବୁଢ଼ୀ ହୋଇଗଲେଣି—ଏତେବେଳେ—"

ଦୁଆର ମେଲିଲା । ଆନ ଥାଳଟିଏ ଧରି ଆସିଲା ଓ ଥାଳଟି ତାଙ୍କ ଆଗରେ ଟେବୁଲ ଉପରେ ଥୋଇଲା ।

ଆନ କହିଲା, "ପେଟ ପୂରେଇ ଖାଅ । ଖାଇଲେ ଭଲ ନିଦ ହେବ ।" ଦି'ହେଁଯାକ ତଳକୁ ଗୁଲିଗଲେ । ଯେମିତି ଧୀର ଧୀର ହୋଇ ଆସିଥିଲେ, ସେମିତି ଧୀରେ ଧୀରେ ଗୁଲିଗଲେ । ସୁପ୍ ବଡ଼ ଭଲ କଥା । ଏ ଦୁହିଁଙ୍କ ଗତିବିଧି ଦେଖି ମନେ ହେଉଥାଏ, ଦେଖେଇ ହୋଇ କାମ କରୁନାହାନ୍ତି—ଏତେ ଟିକଏ ବୋଲି ବଢ଼େଇ ନାହିଁ । ସେ ସୁପ୍‌ରୁ ଟିକଏ ଖାଇଲେ ଓ ସାଲାଡ଼୍‌ତକ ପ୍ରାୟ ସାରିଦେଲେ । ସାଲାଡ଼୍ ବେଶ୍ ଭଲ ହୋଇଥାଏ—ଯେଉଁ ଶାକସବ୍‌ଜି ଏଥିରେ ପଡ଼ିଛି ସେ ସବୁ ଅବଶ୍ୟ ସେ ଏକାଠି ମିଶେଇ ନଥାନ୍ତେ । ଖାଇ ସାରି ଥାଳଟି ଅଣଆଡ଼ଆ କରି ଟେବୁଲ୍‌ରେ ରଖିସାରି ସେ ଭାବୁଥିଲେ—"ମୋ ଆଖିକି ଏତେବେଳେ ତ ଟିକଏ ହେଲେ ନିଦ ଆସିବ ନାହିଁ—ରବ୍ ତେଣେ—" କିନ୍ତୁ ଘରଟି ନିଃଶବ୍ଦ, ତେଣେ ବାର୍ଟ୍ ବାପାଙ୍କ ପାଖେ ଜଗି ରହିଛି । ତଳ-ମହଲାରେ—ଗ୍ରେଷେଇ ଘରେ ତାଙ୍କ ପାଇଁ କାମ କରୁଛି ନାହିଁ—ଦୁଇ ମିନିଟ୍ ଭିତରେ ତାଙ୍କୁ ନଘୋଡ଼ ନିଦ ହୋଇଗଲା—ନିଦ ହେଲା ବୋଲି ଜାଣି ବି ପାରିଲେ ନାହିଁ ।

... ... ... ...

ଜୋଆନା ପଗ୍ଭରିଲା, "ଏଥର ତମ ଦୁହିଙ୍କର ସବୁ ଭଲ ତ—ନା, ଆଉ କ'ଣ ଚିନ୍ତା ଅଛି ?"

ପିଲେ ସମସ୍ତେ କୋଟ୍, ଟୋପି ପିନ୍ଧି ଯିବାକୁ ପ୍ରସ୍ତୁତ ହୋଇ ବାହାରିଥାନ୍ତି । ଦିନ ଦିନ ଅନ୍ତର୍ହାନ୍ତ ହୋଇଥାଏ । ରବ୍ ପୁଣି ସ୍ୱାସ୍ଥ୍ୟ ଫେରିପାଇଥାନ୍ତି—ପୂରା ନୁହଁ, ତଥାପି ସୁସ୍ଥ ହୋଇଥାନ୍ତି ବୋଲି କହିବାକୁ ହେବ—ବାର୍ଟ୍ ଆଜି ସକାଳେ କହିଥାଏ, "ମା ! ବର୍ତ୍ତମାନ କିଛିଦିନ ତାଙ୍କୁ ଅଳ୍ପ ଅଳ୍ପ ଖାଇବାକୁ ଦେବ । ତମେ ଏତେ ବଢ଼ିଆ ରାନ୍ଧ ଯେ ନଖାଇବା ଲୋକ ବି ଲୋଭରେ ଖାଇଦେବ ।"

ବାର୍ଟ୍‌କୁ ଦେଖି ତାଙ୍କ ଗ୍ରୀବା କୁଣ୍ଢେ ମୋଟ ହୋଇଯାଉଥାଏ । ସେ ଉତ୍ତର ଦେଲେ, "ସେ ବିଷୟରେ ମୁଁ ସାବଧାନ ହେବି ।" କାଲି ଡକ୍ଟର୍ ଲେନ ତାଙ୍କୁ କହିଥାନ୍ତି, "ମିସେସ୍ କର୍ନି ! ଏ ଟୋକା ମୋର ସହକାରୀ

ହୋଇ ମୋ ସାଙ୍ଗେ ରହିଲେ ମୋର ଆପତ୍ତି ନାହିଁ । ସେ ହମେ ବେଶ୍ ଭଲ ଡାକ୍ତର ହେବ – ଦେଖୁଛି, ତା'ର ବେଶ୍ ବିଷୟବୁଦ୍ଧି ଅଛି । ତେବେ ବର୍ତ୍ତମାନ ତା'କୁ ଏ ବିଷୟରେ କିଛି କହନାହିଁ—ପରେ ତା'ର ଟ୍ରେନିଂ ସରିଲେ ଦେଖିବା ।" ତେଣୁ ସେ ବାର୍ଟ୍‌କୁ ଏକଥା କହିନାହାନ୍ତି । ବାର୍ଟ୍ ଓ ଆନ ଯଦି ଏଇ ଘରେ ଆସି ସବୁଦିନପାଇଁ ରହନ୍ତେ ତେବେ ତାଙ୍କର ସୁଖର ସୀମା ରହନ୍ତା ନାହିଁ; ବିଶେଷ କରି ଆନ ଯାହା କହୁଛି, ସେ ଦୃଷ୍ଟେ –"

ଜୋଆନା ବାପାଙ୍କୁ କହିଲା, "ବାପା ! ତମକୁ ଭଗବାନ୍‌ଙ୍କ ହାହି, ତୁମେ ସେ ଲଶୁଣିରେ ଆଉ କେବେ ଚଢ଼ିବ ନାହିଁ ।" ସେତେବେଳେ ସମସ୍ତେ ବାପାଙ୍କ ପାଖେ ଶୋଇବାଘରେ ଠିଆ ହୋଇଥାନ୍ତି । ମିଷ୍ଟର୍ କମ୍ପି ତକିଆମାନଙ୍କ ଉପରେ ଭର ଦେଇ ଆଉଜିଥାନ୍ତି ।

ମିଷ୍ଟର୍ କମ୍ପିଙ୍କର ବଡ଼ ପାଟି କରିବାକୁ ବଳ ଆସି ନଥାଏ – ଧୀରେ ହେଲେ ବି, ବିଦ୍ରୋହ କରିବା ଢଙ୍ଗରେ ସେ କହିଲେ, "ଧେତ୍, ଆକସ୍ମିକ କଥା—ଦୈବାତ୍ ଯାହାର ବୋଇଲେ ତା'ର ଗୋଡ଼ କ'ଣ ଏମିତି ଖସେ ନାହିଁ ?"

ଫିଲିପ୍ କହିଲା, "ଆଉ ଡେରି କରନାହିଁ । ଆଜି ରାତିରେ ମୋର ନ୍ୟୁୟର୍କରେ ପହଞ୍ଚିବାର କଥା । ତେଣୁ ଖଣ୍ଡେଦମ ବାହାରିବା ଦରକାର । ବାପା ! ବିଦାୟ ! ଆଉ, ନକଟରେ ମୋଟେ ଭୟରେ ମରଣାନ୍ତକ କର ନାହିଁ ।"

ମିସେସ୍ କମ୍ପି ପିଲଙ୍କ ସାଙ୍ଗେ ତଳକୁ ଆସି, ସେମାନେ ଧଡ଼ପଡ଼ ହୋଇ ମଟରରେ ବସିବାର ଦେଖିଲେ ।

ସେମାନେ ମଟର ଷ୍ଟାର୍ଟ୍ କଲାବେଳେ କହିଲେ, "ପିଲେ ! ବେଶି ଜୋରରେ ମଟର ଛୁଡ଼ିବ ନାହିଁ ଟି !"

ମଟର ଇଞ୍ଜିନ୍ ଗର୍ଜନ କରି ଚାଲିଲା ବେଳକୁ ସମସ୍ତେ ହସି ହସି ହାତ ହଲାଇ ମିସେସ୍ କମ୍ପିଙ୍କଠାରୁ ବିଦାୟ ନେଲେ । ମିସେସ୍ କମ୍ପି ଘରଭିତରେ ପସୁପସୁ ବିଚ୍ଛରିଲେ, ଏଗୁଡ଼ାକ ମନା ନମାନି ନିଶ୍ଚୟ ଜୋରରେ ମଟର ଛୁଡ଼ିବେ । ସ୍ତ୍ରୀଙ୍କୁ କହିବା ଯାହା, ପବନକୁ କହିବା ସେଇଆ ।

ଘର ପୁଣି ଶୂନ୍‌ଶାନ୍ ହୋଇଗଲା । ଉପରମହଲାରେ ରବର୍ଟ୍‌ଙ୍କ ଘରେ ସେ ଜିନିଷପତ୍ର ଟିକିଏ ସଜଡ଼ାସଜଡ଼ି କରିଦେଲେ – ତଳେ ପଡ଼ିଥିବା

ସିଗ୍ରେଟ୍ ଥୁଣି ଗୋଟେ ଯୋଡେ ଗୋଟାଇ ଫୋପାଡ଼ ଦେଲେ ଓ ଟେବୁଲର ଗୋଟାଏ କଣରେ ପଡ଼ିଥିବା ମେଞ୍ଚାଏ ସିଗ୍ରେଟ୍ ପାଉଁଶ ସଫା କରିଦେଲେ । ତରତର ହେବାର କୌଣସି ପ୍ରୟୋଜନ ନଥାଏ । ଜୋଆନା ଗୁଡ଼ାଏ ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ କରି ରଖିଯାଇଛି । ଜୋଆନା ଏଡ଼େ ସୁନ୍ଦର ରାନ୍ଧି ଜାଣେ ବୋଲି ତାଙ୍କୁ ଆଗରୁ ଜଣାନଥିଲା ।

ମିଷ୍ଟର୍ କମ୍ବି କହିଲେ, "ଟିକିଏ ଶୋଇ ପଡ଼ିବାକୁ ମନ ହେଉଛି । ଏବେ ବି କମିତି ଦୁର୍ବଳ ଲାଗୁଛି ।"

ମିସେସ୍ କମ୍ବି କହିଲେ, "ଶୋଇ ପଡ଼ିଲେ ତୁମ ପକ୍ଷରେ ଖୁବ୍ ହିତ ହେବ ।" ସେ ଝରକାମାନଙ୍କର ପରଦା ଟାଣି ଦେଲେ ଏବଂ ରବର୍ଟଙ୍କ ଶଯ୍ୟା ପାଖକୁ ଆସି ତାଙ୍କୁ ଚୁମ୍ବନ ଦେବାକୁ ଲଇଁ ପଡ଼ିଲେ । ସେତିକ-ବେଳେ ମିଷ୍ଟର୍ କମ୍ବି ହାତ ବଢ଼ାଇ ସ୍ତ୍ରୀଙ୍କ ହାତ ଧଇଲେ ।

ମିଷ୍ଟର୍ କମ୍ବି ପଚାରିଲେ, "ଜୋରରେ ମଟର ନଚଳାଇବାକୁ ପିଲାଙ୍କୁ ତାଗିଦ୍ କରିଛ କି ?"

ମିସେସ୍ କମ୍ବି କହିଲେ, "ହଁ, କହିଛି ।"

ମିଷ୍ଟର୍ କମ୍ବି କହିଲେ, "ତା' ସତ୍ତ୍ୱେ, ଏଇ ମୁହୂର୍ତ୍ତରେ ନିଶ୍ଚୟ ଜୋରରେ ମଟର ଚଳଉଥିବେ, ବୋଧହୁଏ ।"

ମିସେସ୍ କମ୍ବି କିଛି କହିଲେ ନାହିଁ । ମିଷ୍ଟର୍ କମ୍ବିଙ୍କ ଆଖି ମୁଜି ହୋଇ ଯାଇଥାଏ । ମିସେସ୍ କମ୍ବି ଆସ୍ତେ ଆସ୍ତେ ନିଜ ହାତ ଖସାଇବାକୁ ବସିଲେ । କିନ୍ତୁ ମିଷ୍ଟର୍ କମ୍ବି ପୁଣି ତାକୁ ଟାଣି ଧଇଲେ ।

ସାଙ୍ଗେ ସାଙ୍ଗେ ଆଖି ମେଲାଇ ସେ କହିଲେ, "ମାଗି, ପିଲାଙ୍କ ବିଷୟରେ କେଡ଼େ ଭୁଲ ଧାରଣା କରି ନଥିଲ ? ସତ ନା ନୁହେଁ, କହିଲ !"

"ତାଙ୍କର କେଉଁ ବିଷୟରେ ?"

ମିଷ୍ଟର୍ କମ୍ବି ଉତ୍ତର ଦେଲେ, "ଯାହା କହୁଥିଲ, ସେମାନଙ୍କର ପରସ୍ପର ପ୍ରତି ସ୍ନେହ ନାହିଁ ବୋଲି । ମୁଁ ତ ଜାଣୁଛି, ବାର୍ଟ ଓ ଆନିଙ୍କ ଭିତରେ ଖୁବ୍ ସ୍ନେହ ଅଛି । ସ୍ନେହ ନଥିଲେ କ'ଣ ପିଲା ହେବା ସମ୍ଭବ ?"

ମିସେସ୍ କମ୍ବି କହିଲେ, "ହଁ, ମାନୁଛି, ମୋର ଭୁଲ୍ ହୋଇ-ଥିଲା ।" କାଲି ରାତିରେ ତଳମହଲର ବୈଠକଖାନାକୁ ସେ ଗଲାବେଳକୁ, ଜୋଆନା ଓ ଟିମଥି ସେ ଘରେ ଏକୁଟିଆ ଥା'ନ୍ତି । ସୋଫାରେ ବସିଥାନ୍ତି ସେ, ଜୋଆନା ଜାକଜୁକ ହୋଇ ଟିମଥିଙ୍କ କୋଳରେ ଡେରମାରିଥାଏ ।

"ଓଃ ! ଅଭଦ୍ରତା ମାଫ୍ କରିବେ" ବୋଲି ତାଙ୍କ ମୁହଁରୁ ବାହାରି ପଡ଼ିଲା, ସତେ ଯେମିତି ଏ ଦୁହେଁ ତାଙ୍କର ପିଲେ ନହୋଇ ଅନ୍ୟ କିଏ ଅଚିହ୍ନା ଲୋକ । ବାସ୍ତବିକ୍ ସେ ବଡ଼ ବିସ୍ମିତ ହୋଇ ଯାଇଥିଲେ । ଜୋଆନା ତାଙ୍କୁ ଦେଖି ହସି ପକାଇ ଉଠିପଡ଼ିବାକୁ ଚେଷ୍ଟା କଲା ।

ଟିମଥି ବାରଣ କରି କହିଲେ, "ଉଁ ! ତୁମର ଉପଯୁକ୍ତ ସ୍ଥାନକୁ ଫେରି ଆସ । ମୋର ବିଶ୍ୱାସ, ତୁମ ମାଙ୍କୁ ତୁମର ଏତେ ଭୟ କରିବାର କିଛି ନାହିଁ ।"

କିନ୍ତୁ ମିସେସ୍ କମ୍ବିଙ୍କୁ ସ୍ୱାମୀଙ୍କ ନବରଙ୍ଗ ଦେଖି କମିତ କମିତ ଲାଗିଥିଲା । ସେ ମିଛରେ ଟେବୁଲ ଉପରୁ ଗୋଟାଏ ବହି ଧରି ଘରୁ ବାହାରିଯିବାକୁ ବସିଲେ ।

ଜୋଆନା ତାଙ୍କୁ ପଛରୁ ଡାକି କହିଲା, "ଦେଖିଲ, ମା ! ମୁଁ କାହାରି ଗଣ୍ଡିମୋଟା ହେବା ବିରୁଦ୍ଧରେ ଲଢ଼ୁଛି ।" ସେ ଫେରି ଚାହିଁଲେ, ସେତେବେଳକୁ ଜୋଆନା ପୁଣି ଟିମଥିଙ୍କ କୋଡ଼ରେ କୃଷ୍ଣବେଣୀ ସାନ ପିଲାଟି ପରି ଲଦିହୋଇ ପଡ଼ିଛି ।

ସେଇ କଥା ମନେ ପକାଇ ମିସେସ୍ କମ୍ବି ସ୍ୱାମୀଙ୍କୁ କହିଲେ, "ମୁଁ ବିଶ୍ୱାସ କରୁଛି, ପିଲେ ସମସ୍ତେ ଭଲରେ ଚଳୁଛନ୍ତି ।"

ମିଷ୍ଟର୍ କମ୍ବି କିନ୍ତୁ କହିଲେ, "ଖାଲି ସେଇ ଫିଲିପ୍ଟା —।"

ମିସେସ୍ କମ୍ବି ପ୍ରତିବାଦ କଲେ, "ନା, ନା, ଫିଲିପ୍ର ଆଚରଣ ବି ଖୁବ୍ ଭଲ ।"

ଠିକ୍ ସେହି ମୁହୂର୍ତ୍ତରେ ଦ୍ୱାର ମୁହଁରେ ଫିଲିପ୍ ତାଙ୍କ ମୁଣ୍ଡ ବାଳରେ ହାତ ଭରି କରି ଅଡ଼ୁଆ କରୁ କରୁ କହିଲା, "ମା ! ବାପାଙ୍କୁ କହିବୁ, ଆଉ, ରେଡ଼ିଓ ଆଣିବା ଦରକାର ନାହିଁ । ମୁଁ ଆଉ ରେଡ଼ିଓରେ ଭାଷଣ ଦେବା କାମ ନକରି—ରେଡ଼ିଓ ତିଆରି କରିବା କାମରେ ଲାଗିବି ବୋଲି ସ୍ଥିର କଲିଣି ।"

ସେ ବିସ୍ମିତ ହୋଇ କହିଲେ, "ଏଁ, କ'ଣ କହୁଛୁ ରେ, ପୁଅ ?"

ଫିଲିପ୍ ଜବାବ ଦେଲା, "ନାଃ, ରେଡ଼ିଓରେ କହିବା କିଛି ଭଲ କାମ ନୁହେଁ; ଔଷଧ ଖାଇ ଝାଡ଼ା ସଫାକର ବୋଲି ଖାଲି କହିବ ! ଛି !—ମାଇକ ! ମୋତେ ଏକାମ ବଡ଼ ବିଜାଡ଼ ଲାଗିଲାଣି । ମୁଁ ଏମିତ

ଗୋଟାଏ ନୂଆ ଉଦ୍ଭାବନ କଲଣି, ଯାହା ଫଳରେ—କହୁ ସମସ୍ତ ଅପେକ୍ଷା କର, ଦେଖିବ । ମୁଁ ଶଠି ଲେଖିବ ଯେ !”

ସବୁ ପିଲେ ଏହା ଶୁଣି ଫିଲିପ୍‌ଙ୍କୁ ନାନା ପ୍ରକାର ଟୁଚ୍ଛ ତାଚ୍ଛିଲ୍ୟ କଲେ—ସେମାନେ ଯାହା କହୁଲେ, ତା'ର ଅର୍ଥ ମିସେସ୍ କମ୍ବି ଭଲ କରି ସମଜ ପାରିଲେ ନାହିଁ ।

ଜଣେ କହିଲା, “ଏଁ, ବାହାବା, ମହାପୁରୁଷଙ୍କ ପ୍ରତିଭା କଡ଼ ଧରୁଛି !”

ଆଉ ଜଣେ କହିଲା, “ଉଦ୍ଭାବନରେ ଭୁ ମାଡିଲେ ରେଡ଼ିଓ ଯନ୍ତ୍ର – ”

ମିସେସ୍ କମ୍ବି ଫିଲିପ୍ ପଟିଆ ବାହାର ସ୍ନେହରେ କହି ପକାଇଲେ, “ମୋର ବିଶ୍ୱାସ, ଫିଲିପ୍ ଯାହା କହୁଛି, ସେ ବିଷୟରେ ସେ ଭଲ କରି ବୁଝିଛି ଓ ବିଗ୍ଭର କରି କହୁଛି ।” ତାଙ୍କ ଓକାଲତି ଶୁଣି ସମସ୍ତେ ଆହୁରି ବଡ଼ ପାଟିରେ ହସିବାକୁ ଲଗିଲେ—ଫିଲିପ୍ ବି ।

ମିସେସ୍ କମ୍ବିଙ୍କର ଅସ୍ପଷ୍ଟ ଧାରଣା ହେଉଥାଏ ଯେ, ପିଲେ ତାଙ୍କର କଥାକୁ ହସୁଛନ୍ତି—କିନ୍ତୁ କାହିଁକି ? ସେ ତ ହସ କଥା କିଛି କହୁ ନାହାନ୍ତି ! ଯାହା ହେଉ, ପିଲମାନେ ତ ଖୁସ୍ ମେଜାଜ୍‌ରେ ଅଛନ୍ତି, ତାଙ୍କୁ ହସିଲେ କ'ଣଟାଏ ହୋଇଗଲ ?

ମିଷ୍ଟର୍ କମ୍ବି କହିଲେ, “ଯାହାହେଉ, ମୋଟ ଉପରେ ପିଲ-ଗୁଡ଼ିକ ଭଲ ଜଣାଯାଉଛନ୍ତି ।”

ମିସେସ୍ କମ୍ବି ତେଜରେ କହି ଉଠିଲେ, “ଯାହା ହେଉ କାହିଁକି, ସବୁଗୁଡ଼ିକ ଖୁବ୍ ଭଲ; ତାଙ୍କ ପାଇଁ ଆମେ ଗର୍ବ କରିବାର କଥା । କେଡ଼େ ଲଜ୍ଜାର କଥା, ରବ୍ ! ଏପରି ପିଲଙ୍କ ନାମରେ ଆମେ ସେ ଦିନ କ'ଣ ଗୁଡ଼ାଏ କଥାବାର୍ତ୍ତା ହେଉଥିଲେ ଟି ?”

ମିଷ୍ଟର୍ କମ୍ବି କିଛି ବାଜୁବାଜୁ ହୋଇ ଅସ୍ପଷ୍ଟଭାବେ କହିଲେ, “କ'ଣ ଏତେ ଭଲ, ମୁଁ କହୁ ଜାଣି ପାରୁ ନାହିଁ ; ଯେତେ ଯାହା କହ ପଛେ, ଆମ ପିଲେ ଦେଶର ଅନ୍ୟ ପାଞ୍ଚଜଣଙ୍କ ସଙ୍ଗେ ସମାନ—ଅଧିକ ନୁହନ୍ତି କି ଊଣା ନୁହନ୍ତି ।”

———

ମୁଦ୍ରାକର ଶ୍ରୀ ଚିନ୍ତାମଣି ମିଶ୍ର, ନବଜୀବନ ପ୍ରେସ, କଟକ—୨



[ ପାର୍ଲ୍ ଏସ୍. ବକ୍ ]

ପାର୍ଲ୍ ଏସ୍. ବକ୍ ହେଉଛନ୍ତି ଏକମାତ୍ର ସ୍ତ୍ରୀଲୋକ ଯେ ସାହିତ୍ୟରେ ନୋବେଲ ପୁରସ୍କାର ଏବଂ ଉପନ୍ୟାସ (ଗୁଡ୍ ଆର୍ଥ)ରେ ପୁଲିଜର ପୁରସ୍କାର ପାଇଛନ୍ତି । ସାହିତ୍ୟ ସୃଷ୍ଟିକରିବାରେ ସେ ଅଦ୍ଭୁତ ସଫଳତା ଲାଭକରିଛନ୍ତି ; ସେ ଲେଖିଥିବା ଲୋକପ୍ରିୟ ଉପନ୍ୟାସ, ଶିଶୁସାହିତ୍ୟ, କ୍ଷୁଦ୍ରଗଳ୍ପ ଓ ପ୍ରବନ୍ଧମାନଙ୍କର ସଂଖ୍ୟା ଏତେ ବେଶୀ ଯେ ତାହା ଦେଖି ବିସ୍ମିତ ହେବାକୁ ହୁଏ । ତାଙ୍କର ବହୁତ ଗଳ୍ପ ଓ ଉପନ୍ୟାସର ବିଷୟବସ୍ତୁ, ଚୀନଦେଶରେ ସେ ବହୁକାଳ ରହିବାରୁ ଚୀନାମାନଙ୍କ ପ୍ରତି ତାଙ୍କର ଯେଉଁ ଆଗ୍ରହ ଓ ସହାନୁଭୂତି ଥିଲା ସେଥିରୁ ଉତ୍ପନ୍ନ । "ନଣିଥେ ନାସ୍ତାର ଓ ଅନ୍ୟାନ୍ୟ ଗଳ୍ପ" ପରି ଅନ୍ୟବହିଗୁଡ଼ିକ ପାଠକକୁ ଧାନକ୍ଷେତ ଏବଂ କୃଷକରୂଥିବା ମହିଷଠାରୁ ଜେଟ୍ ବିମାନର ଯୁଗକୁ ନେଇଯାଏ ।

---